# ଅନ୍ଧମୁହାଁଣୀ

*


ଲେଖକ :
ଦେବ୍ରାଜ ଲେଙ୍କା
କୁଣପଙ୍ଗୀ, ବାଙ୍କୀ


*


ପ୍ରକାଶକ :
ଗୋବିନ୍ଦଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

*

ନୂତନ ପ୍ରକାଶ : ୧୯୬୭
ପୁନର୍ମୁଦ୍ରଣ : ୧୯୮୨

*

ଚିତ୍ର ଶିଳ୍ପୀ :
ଅସିତ ମୁଖାର୍ଜୀ

*





*

ମୁଦ୍ରାକର :
ପାୟୋନିଅର ପ୍ରେସ
କଟକ-୮

*

ମୂଲ୍ୟ :
ସାଧାରଣ—ଟ ୧[illegible]-୦୦
ଶୋଭନ—ଟ ୧୬-୦୦


**Andha Munhani (Novel)**


By
**Debraj Lenka**

Published by :
**G. C. Patro**
Orissa Book Store
Cuttack - 753002

Printed at :
**Pioneer Press**
Cuttack - 8

**Price :**
**Deluxe : Rs. Sixteen**

ମୋର ଦୁଇ ଦେଈଙ୍କୁ......,
ଯାହାଙ୍କର ସ୍ନେହ ମୋ ପାଇଁ ଭରା ଶ୍ରାବଣର
ଅକଳନ ସୁଧା ଧାରା ପରି ।

ଉପନ୍ୟାସ 'ଅନ୍ଧମୁହାଁଣୀ'ର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରି ଆମେ ଆଜ ଆତ୍ମତୃପ୍ତି ଲାଭ କରୁଛୁ ।

ଏହା ଏକ ବହୁଳ ଜନପ୍ରିୟ ଉପନ୍ୟାସ । ଏହା ପ୍ରକାଶ ପାଇବା ସାଙ୍ଗେ ସାଙ୍ଗେ ପାଠକ ମହଲରେ ଏକ ଝଡ଼ ସୃଷ୍ଟି କରିଥିଲା ଏବଂ ଦେବ୍ରାଜବାବୁଙ୍କୁ ସଫଳ କାହାଣୀକାର ରୂପେ ସ୍ୱୀକୃତି ଦେଇଥିଲା ।

ଓଡ଼ିଆ ସାହିତ୍ୟରେ ଗନୁ ଏକ ଅବିସ୍ମରଣୀୟ ଚରିତ୍ର । ଏହା କହିବା ପାଇଁ ଆମେ କୁଣ୍ଠାବୋଧ କରୁନାହୁଁ, କାରଣ ଗନୁ କେତେବେଳେ ବହିରୁ ଖସି ଆସି ଆମ ହୃଦୟର ଗଭୀରତମ ପ୍ରଦେଶରେ ନିବିଡ଼ ଭାବେ ପବିତ୍ର କୁଟୀରଟିଏ ତା'ର ନିଜ ପାଇଁ ତୋଳି ବସିଛି, ସେ କଥା ଆମେ ମର୍ମେ ମର୍ମେ ଉପଲବ୍ଧି ଏବଂ ଅନୁଭବ କରୁଛୁ । କଲ୍ୟାଣୀ ଗନୁକୁ ଘରୁ ବାହାର କରି ଆମ ସମସ୍ତଙ୍କର ହୃଦୟକୁ ତା' ପାଖରେ ବନ୍ଧା ପକାଇ ଦେଇଛନ୍ତି, —ଏହା ହିଁ ଏ ବହିର ପରିସମାପ୍ତିରେ ସୀମାହୀନ ଆବେଗର କରୁଣାତ୍ମକ ଲୁହଲିପି ।

ମାନବୀୟ ହୃଦୟ ତଥା ସାମାଜିକ ସ୍ଥିତିକୁ ପୁରାପୁରି ଆଖି ଆଗରେ ରଖି କାହାଣୀକାର ଦେବ୍ରାଜବାବୁ ସିଦ୍ଧହସ୍ତତାର ପରିଚୟ ଏଠାରେ ଦେଇଛନ୍ତି । ସୁସଂଯତ ଶବ୍ଦ ସଂଯୋଗ କରି ଭାଷାର କମନୀୟତା ଏତେ ସରଳ ଅଥଚ ସୁନ୍ଦର ଭାବେ ଫୁଟାଇଛନ୍ତି ଯେ, ଏକ ଅପୂର୍ବ ଛନ୍ଦର ଗୁଞ୍ଜନରେ ବହିଟିର ପ୍ରତ୍ୟେକ ବାକ୍ୟ ମୁଖରିତ ଏବଂ ଏହା ହିଁ ତାଙ୍କର ଲେଖନୀର ବିଶେଷତ୍ୱ । ଏଥିପାଇଁ ବହିଟି ଅପ୍ରତିହତ ବେଗର ଗତି ନେଇ ଆଗେଇ ଚାଲିଛି । ବହିଟିର କଥାବସ୍ତୁ, ପରିବେଶ ଏବଂ ସଂଯୋଜନା ଏତେ ଆନ୍ତରିକ ଯେ ବହିଟି

ହୃଦୟକୁ ଗଭୀର ଭାବରେ ଦ୍ରବୀଭୂତ କରେ ଏବଂ ଏକ ଅବାଙ୍ଗ ମୋହମାୟାରେ ଆଚ୍ଛନ୍ନ ରଖେ ।

ବହୁ ଶ୍ରେଣୀର ପାଠକ ପାଠିକାମାନଙ୍କଠାରୁ ଅଜସ୍ର ପ୍ରଶଂସା-ପୂର୍ଣ୍ଣ ଚିଠିର ଭାଗୀଦାର ଏ ବହି ବର୍ତ୍ତମାନ ସୁଦ୍ଧା ବହୁ ଚଳଚ୍ଚିତ୍ର ପ୍ରଯୋଜକଙ୍କର ଆଗ୍ରହଭାଜନ ହୋଇଛି; ଏକଥା ଆମେ ଜାଣୁ ଏବଂ ଏଥିପାଇଁ ଶ୍ରଦ୍ଧା ସହକାରେ ଏହାର ନୂତନ ସଂସ୍କରଣ ପ୍ରକାଶ କରୁଛୁ ।

### ତୃତୀୟ ସଂସ୍କରଣ ସଂପର୍କରେ :

ଦେବ୍ରାଜ ବାବୁଙ୍କ 'ଅନ୍ଧମୁହାଁଣୀ'ର ତୃତୀୟ ସଂସ୍କରଣ ପ୍ରକାଶନରେ ବିଳମ୍ବ ଘଟିଛି । ଏଥିପାଇଁ ଆମେ ଆମର ସହୃଦୟ ପାଠକ ପାଠିକାଙ୍କ ନିକଟରେ କ୍ଷମାଭିକ୍ଷା କରୁଛୁ ଏବଂ ଆଶା କରୁଛୁ ଯେ ଆମ୍ଭ ସଂସ୍କରଣ ଅନ୍ଧମୁହାଁଣୀ ମଧ୍ୟ ପୂର୍ବଭଳି ସମସ୍ତଙ୍କ ଆଦର ଲାଭ କରିବ ।

ପ୍ରକାଶକ

ଫିଟି ପଡ଼ିଥିବା ମୁକୁଳା କେଶକୁ ଏକାଠି ଗୋଟେଇ ମଥା ଉପରେ ଅଣ୍ଟ ଗଣ୍ଠିଟିଏ ପକାଇ ଦମ୍ ମାରିଲା ରନୁ ।

କେଶର ଝରଣା ।

କେଶ କେଶ ଶ୍ରାବଣୀ ବନ ଝରଣା ।

ତା'ର କେବଳହିଁ ନିଃଶଙ୍କ ଝୁମାର ଗତି । ନାହିଁ କେଉଁଠି ଟିକେ ହେଲେ ଖ୍ୟାନ୍ତ, ସୌନ୍ଦର୍ଯ୍ୟର ଅନୁବନ୍ଧ ଯେଉଁଠି ଉଠିଯାଏ ଯାବତ୍ ପ୍ରଶସ୍ତି । ଅନେକ ସ୍ୱସ୍ତି ।

ଝରଣାରେ ପହଁରିଯାଉଥିବା କଳାକଜଳ ଜଳବେଣୀ ପରି ଯେଉଁ କେଶ ରନୁର ପିଠି ଉପରେ ସାତ ଲହଡ଼ି ଭାଙ୍ଗି ଜଙ୍ଘତଳେ ନାଚି ଉଠୁଥିଲା ଏପାଖ ସେପାଖ ଦୋଳି ଖେଳ ସେ ପୁଣି ଖଜୁରି ବଢ଼ି ଖୋଷାଟିଏ ହେଇ ତା'ର ଶଙ୍ଖଧବଳ ମନୋହର ଗ୍ରୀବା ତଳେ ଧୂମର ଥମ୍ ଥମ୍ ମେଘ ଖଣ୍ଡ-ପରି ଠୁଳ ହୋଇଗଲା । ରନୁର କିନ୍ତୁ ତା'ର କେଶ କଳାପ ପ୍ରତି ଆଦୌ ନିଘା ନାହିଁ । ନିଘା ବି ନାହିଁ ତାହା ସୁନ୍ଦର କି ଅସୁନ୍ଦର, କୁଞ୍ଚିକଳା କି ରୁକ୍ଷଧୂସର । ଏକଥା ବି ସେ କେବେ ଜାଣିବାକୁ ମନ ବଳେଇନି ତାହା କୁଞ୍ଚିତ କି ସରଳ । ଦୀର୍ଘ କି ହ୍ରସ୍ୱ । ବେଳେବେଳେ ତା'ର ଦର୍ପଣ ଚିକ୍କଣ ଗୋରା ଗୋରା ଗାଲର ବାଁ ପାଖରେ ମଝାମଝି କଳାଜାଇ ଉପରେ ଭଅଁର ପରି ଦବୁରଣ୍ଠା କେଶବଲ୍ଲରୀ ଯଦି ଅତି ଦୁଷ୍ଟଭାବେ ଉଡ଼ିବୁଲେ, ତେବେ ରନୁ ଚିଢ଼ି ଉଠି ତାହାକୁ ଗାଲ ଉପରୁ ସାଉଁଟି ନେଇ ସଜାଡ଼ି ଦିଏ । ହାତରେ ମଥାଟିକୁ ଆଉଁସି ସାଉଁଳି ଦେଇ କାନ ପାଖରେ ଅଳୁରିକେଶକୁ ବାଗେଇ ନିଏ ।

ଲୁଗା ଖୋଷଣୀକୁ ଅଣ୍ଟାରେ ଭଲଭାବେ ଖୋଷି ଦେଇ ରାମୁ ବସିପଡ଼ିଲା ପାଣି ପାଇପ ପାଖରେ । ଗୁଡ଼ାଏ ପ୍ଲେଟ କପ୍ ଅଛି । କଳା ପଡ଼ିଥିବା ଡେକ୍‌ଚି ଅଛି । ସସ୍‌ପ୍ୟାନ୍ ଅଛି । ସବୁଗୁଡ଼ାକୁ ଧୋଇ ସଫା କରିବାକୁ ପଡ଼ିବ । ସାବୁନ୍ ଲଗାଇବାକୁ ପଡ଼ିବ । ପାଉଁଶ ଦେଇ ମାଜି ଟକ୍ ଟକ୍ କରିବାକୁ ପଡ଼ିବ । ବାସନକୁସନଗୁଡ଼ାକୁ ସଫା କରି ନୂଆ ପରି ସୁନ୍ଦର କରିବା ତାହାର ଗୋଟାଏ ଧରାବନ୍ଧା କଥା । କେଉଁଠି ବାସନ କୁସନରେ ଦେବାକୁ ଅଇଁଠା ଶଙ୍ଖୁଡ଼ିଟିଏ ଦେଖିଲେ ତା'ର ଦେହ ସହେ ନାହିଁ । ଏଇଟା ତା'ର ନିଜସ୍ୱ ଗୁଣ । ସେମିତି ଫାଇଲ୍ ପତ୍ରରେ କିଛି ଖୁଣ ଦେଖିଲେ ବାବୁମାନଙ୍କ ମନରେ ଲାଗିଯାଏ ବିରକ୍ତିର ଘୃଣା ।

ସେ ମାଇପି ଝିଅ । ଘରକୁ ଛବି ପରି ସୁନ୍ଦର ନକଲେ କରିବ କିଏ ? ରାମୁକୁ ଭାରି ଖୁସି ଲାଗେ ଏ ଘରର ପ୍ରତି ଜିନିଷକୁ ଟିକିନିଖି ସଜାଡ଼ି ରଖିବାକୁ । ଏ ଘରର ସମସ୍ତେ ଭୋଳାମଣିଷ । କେଉଁଠି ଖାତା ପଡ଼ିଛି ତ, କେଉଁଠି ପେନ୍‌ସିଲ ପଡ଼ିଛି—କଲମ ପଡ଼ିଛି । କେଉଁଠି ବହିପତ୍ର ଛିନ୍ନଛତର ହୋଇ ପଡ଼ିଛି । ଏମିତିକି ବର୍ଷାରେ ଯଦି ବାହାର ଅଗଣାରେ ଲୁଗାଟିଏ ଓଦା ହୋଇ ଯାଉଥିବ, ତାକୁ ଉଠାଇବାକୁ କେହି ନାହିଁ । ସାବୁନ୍‌ଟାଏ ଭିଜି ମାଟି ହୋଇଯାଉଥିବ, ତାକୁ କେହି ଦେଖିବେ ନାହିଁ । କୁକୁର କି ଗାଈ ବାଛୁରି ଯଦି ପାଣିରେ ଭିଜି ବୋବାଳି ଛାଡ଼ୁଥିବେ ତାକୁ କେହି ଖୋଲି ଘରକୁ ନେବେନି ।

ଗୁହାଳରେ ରାମୁ । ରୋଷାଇ ଘରେ ରାମୁ । ବଗିଚାରେ ରାମୁ । ଠାକୁର ଘରେ ରାମୁ ।

ସବୁଠି ରାମୁ । ସବୁଠି ରାମୁ ।

ସେ ନଥିଲେ ଏ କାମ ବା କରିବ କିଏ ? କାହାର ବା ସମୟ ଅଛି ?

ଆଣ୍ଠୁ ଉପରେ ମୁହଁକୁ ଥାପି ଓଠ ଚିପି ରାମୁ କଳା ଡେକ୍‌ଚିକୁ ସଫା କରିବାକୁ ଲାଗିଲା । ଇସ୍... କେତେ ଯେ କଳା ! ଏତେ କଳା ହେଲେ ଜିନିଷଗୁଡ଼ାକ କଣ ବେଶୀଦିନ ଟିକିବ ?

ଘୁଡ ଉପରୁ ନମି ଅପା ଡାକ ଛାଡ଼ିଲେଣି—ଜଲଦି ରାନୁ, କ'ଣ ଗୋଡ଼ରେ ଚେର ଲାଗିଗଲା କି ? ଜଳଖିଆ ଆଣିଲୁ !

ନମିତାର କଥାହିଁ ସଦାବେଳେ ସେମିତି ।

ଯାଉଛି ଅପା, ଏଇ କଳାଟା ଛଡ଼ାଇ ଦିଏ ।

ନମି ଅପାଟା ନିର୍ଦ୍ଦୋଷ ବାଃଘୁଣୀଟାଏ ! ଘୁଡ ଉପରେ ତା'ର ସାଙ୍ଗସାଥୀଙ୍କ ମେଳରେ କ'ଣ ଗପୁଛି । ବୋଉ ବି ଉପରେ । ଏଇନା ଯଦି ଟିକେ ବି ଜଳଖିଆ ନେବାରେ ଡେରି ହୋଇଯାଏ, ତେବେ ସିଧା ସଲଖ ପ୍ଲେଟଗୁଡ଼ାକୁ ରାଗରେ କଚାଡ଼ି ଭାଙ୍ଗିଦେବ । ଦାମିକା କାଚ ବାସନ ଗୁଡ଼ାଏ, ସେଥିପ୍ରତି ଲୋଭ ରଖିବ ନାହିଁ । ବୋଉ ବି ବାପୁଣୀ ପଣ୍ଡ ରାନୁ ଉପରେ ଝାମ୍ପି ପଡ଼ିବେ । ନମି ଅପା ତାଙ୍କର ବଡ଼ ଝିଅ କନା ! ସେଥିପାଇଁ ବଡ଼ ଅଝଟ । କମ୍ ରାଗି କି ! ବେଲବସଣ୍ଡ । ହଳଦି ପାଣିକ ଗୋଡ଼ ବଢ଼ାଏ ନାହିଁ । କଥା କଥାକେ କାନ୍ଦ । ରାଗ । ଅଳି ଅଭିମାନ । ଫୋପଡ଼ା ଫିଙ୍ଗା । ଏତେ ବଡ଼ ଝିଅଟାଏ ହେଲାଣି ଆସି, ହେଲେ ସବୁବେଳେ ମାରି ଦେବ - ଭାଙ୍ଗି ଦେବ—ଛୁଞ୍ଚି ଦେବ ।

ମୁହଁ ଉପରେ ଝଳ ଉଠିଥିବା ବିନ୍ଦୁ ବିନ୍ଦୁ ଝାଳକୁ କହୁଣୀରେ ପୋଛି ରାନୁ କହିଲା—ଟିକିଏ ଅପେକ୍ଷା କର ଲୋ ଅପା, ଏଇ ସାଙ୍ଗେ ସାଙ୍ଗେ ଯାଉଛି ।

ଡେକ୍ଚିକୁ ସଫାକରି କପ୍, ପ୍ଲେଟ୍ ଉପରେ ସାବୁନ୍ କନା ବୁଲେଇ ଆଣିଲା ରାନୁ । ହାତ ତା'ର ଚଳୁଛି । ଆଉ କୁଆଡ଼େ ତା'ର ମନ ନାହିଁ । ନିବିଷ୍ଟ ଚିତ୍ତରେ ସେ ତର ତର ହୋଇ ବାସନ ସଫା କରୁଛି । ମୁହଁଟା ଯାକ କଳା ହୋଇ ଗଲାଣି, ସେ ଖବର ଜାଣିପାରୁନି । ଲୁଗାପଟା ସବୁ କଳା । ଏଇ ନମିଅପାଟା କ'ଣ ଟିକେ ନିଃଶ୍ୱାସ ମାରିବା ପାଇଁ ଉଣେଇ ଥୋଇ ଦଉଛି ? ତା'ର ଲୁଗାପଟା କଳା ଦେଖିବାକୁ ସମୟ କାହିଁ । ଆଖି ତ ଯାଉଛି କପ୍, ପ୍ଲେଟ୍ ଉପରେ, ପାଣିପାଇପ୍ ଉପରେ, ସାବୁନ୍ ଉପରେ ।

ରାନୁ ଅପା, ମୋ ମଟରଟା କୁଆଡ଼େ ଗଲା ?

କଏ ? ବୁଢ଼ା ବାବୁ କି ?

ହଁ, ମୋ ମଟରଟା କୁଆଡ଼େ ଗଲା ?

କାହିଁକି ? ର୍‍ୟାକ୍ ଉପରେ ତୁମ ମଟରଟା ମୁଁ ସଜାଡ଼ି ରଖି ଦେଇଛି ତ !

କିନ୍ତୁ ମୁଁ ତ ତାକୁ ନେଇ ବାପାଙ୍କ ଗ୍ୟାରେଜ୍ ଭିତରେ ରଖି ଦେଇଛି । ମୋ ମଟର କଅଣ ବାପାଙ୍କ ଗ୍ୟାରେଜ୍ ଭିତରେ ରହିବନି, ରିନ୍ଟୁ ଅପା ?

ନିଶ୍ଚୟ ରହିବ—ନିଶ୍ଚୟ ରହିବ ।

କିନ୍ତୁ ମୁଁ ଏଇନା କଅଣ କରିବି ?

କ'ଣ କରିବ ?

ମୁଁ ଏଇନା ଖେଳିବି ଯେ ! ତୁ ଯାଇ ଚଞ୍ଚଳ ଆଣ । ନଇଲେ କାନ୍ଦିବି ।

ବାସନ ଉପରୁ ହଠାତ୍ ହାତ ବନ୍ଦ କରି ଉସ୍ୱରେ ରିନ୍ଟୁ କହିଲା—କ'ଣ କହିଲ, ତମେ କାନ୍ଦିବ ?

ହୁଁ··· ! ମୁହଁକୁ ଭରି କରି ବୁଢ଼ା ଉତ୍ତର ଦେଲା ।

ଏ ମା···, କି ବେଧଡ଼କ୍ ସ୍ୱେଚ୍ଛାଚାରୀ ସମ୍ରାଟ ପରି କଠୋର ସିଦ୍ଧାନ୍ତରେ ଉପନୀତ ହୋଇ ଏଇ ବୁଢ଼ାଟା କହୁଛି—ହୁଁ ··· ! ଥରେ ଯଦି କାନ୍ଦିବାକୁ ଆରମ୍ଭ କରିବ ନା, ତେବେ ଚଞ୍ଚଳ ବନ୍ଦ ହେବାର ସୂଚନା ତାହାଠାରୁ ଆଦୌ ମିଳିବ ନାହିଁ । କାନ୍ଦଟା ଯେପରି ତା'ର ନିଜର—ଏକାନ୍ତ ଭାବରେ ନିଜର । ଏଥିରେ କାହାର ଆପତ୍ତି ଅଭିଯୋଗ କରିବାର ଅଧିକାର ନାହିଁ ।

ଗଳାକୁ ଅସମ୍ଭବ ଭାବେ ମିଠା କରି ରିନ୍ଟୁ କହିଲା—ଛିଃ··, ସୁନାଟା ଛୁଆ, କାନ୍ଦନ୍ତି ? ଉପରେ ଛୁଆ ନମିଅପାର ସାଙ୍ଗ ଅଛନ୍ତି । ସେମାନେ ଯଦି

ତୁମ କାନ୍ଦ ଶୁଣିବେ ତେବେ ତୁମକୁ ଦୁଷ୍ଟ ବୋଲି କହିବେ । ତୁମକୁ ଗାଳି ଦେବେ । ତୁମେ ଗାଳି ଖାଇଲେ, ମତେ କେତେ କଷ୍ଟ ହୁଏ ଜାଣ ? ମୁଁ ତ ତୁମକୁ ଖୁବ୍...ଖୁଉବ୍ ଭଲପାଏ ।

ବୁଢ଼ା ଟିକେ ଅସୁବିଧାରେ ପଡ଼ିଗଲା । ଦଣ୍ଡେ ଚୁପ୍ ରହିଲା । ଆଖି ମିଟି ମିଟି କରି ଉପରକୁ ଚାହିଁ କ'ଣ ଭାବିଲା । ତା'ପରେ କହିଲା—ତାହା ହେଲେ ମୁଁ ଏଇନା କ'ଣ କାନ୍ଦିବିନି ?

ରାନୁ ହସି ହସି ହ ତ ହଲେଇ କହିଲା -- ନା, ଆଦୌ ନା ।

ତେବେ ଠିକ୍ ଅଛି । ଏଇନା ଯଦି ନମି ଅପାର ସାଙ୍ଗ ଅଛନ୍ତି ତେବେ କାନ୍ଦିବିନି । କିନ୍ତୁ ପରେ ଖୁବ୍ କାନ୍ଦିବି । ବଡ଼ ପାଟିରେ କାନ୍ଦିବି । କାହା କଥା ଶୁଣିବିନି ।

ରାନୁ ହସି ଉଠିଲା ।

ବୁଢ଼ା ବାବୁ, ସୁନାପିଲାଏ ଜମା କାନ୍ଦନ୍ତି ନାହିଁ । ଖେଳନ୍ତି । ବୁଲନ୍ତି । ଖାଇ ପିଇ ଖୁସିମନରେ ଚୁପ୍ ଚୁପ୍ ଶୋଇ ପଡ଼ନ୍ତି । ତମେ ଯାଆତ ଶୋଇ ପଡ଼ିବ ।

ଶୋଇ ପଡ଼ିବି ?

ହିଁ... ।

ଯୋଉ ଉଦ୍ୟାନରେ ଖେଳିବ ବୋଲି ରାନୁ ପାଖକୁ ମଟର ପାଇଁ ବୁଢ଼ା ଆସିଥିଲା, ସେ ଉଦ୍ୟାନ, ସେ ସବୁଗ ତା'ର ଲୁଆଣ୍ଡେ କେତେବେଳୁ ହଜିଗଲାଣି । ସେ ସମସ୍ତଙ୍କ ପାଖରେ କାନ୍ଦିବ । ବାପା ବୋଉ, ଅପା ପାଖରେ କାନ୍ଦିବ । ନିର୍ବିକାର ଭାବରେ ଘଣ୍ଟା ଘଣ୍ଟା ଧରି ସମସ୍ତଙ୍କୁ ହଇରାଣ କରି କାହା କଥା ନଶୁଣି କାନ୍ଦିବ ସ୍ୱର ଲହରୀକୁ ଉଚ୍ଚନ୍ନ ପର୍ଦ୍ଦାରେ-ଚଢ଼ାଇ, ହେଲେ ଏଇ ରାନୁଅପାଟା—ଏଇ ରାନୁଅପାଟା ପାଖରେ କାନ୍ଦି-ବାକୁ ତାକୁ କାହିଁକି ଭାରି ଅସହଜ ଲାଗେ । ଭୟ ବି ଲାଗେ ଯଦି ଟିକେ ବେଶୀ ରାଗିଯିବ ଏଇ ରାନୁ ଅପାଟା, ତାହାହେଲେ ବୁଢ଼ାକୁ କହିବ, ହେଇଟି ବୁଢ଼ା, ତୁ ଯଦି କାନ୍ଦ ବନ୍ଦ୍ ନକରିବୁନା, ତାହାହେଲେ ଭଲହବେ

ଜାଣି ଥା', ଏଇ କୋଠା ଉପରୁ ମୁଁ ଶୂନ୍ୟେ ଶୂନ୍ୟେ ତଳକୁ ଡେଇଁ ପଡ଼ିବ । ମରିଯିବୁ ଲୋ, ମରିଯିବୁ ।

ଆଜ କ'ଣ [illegible] ? ଆଜ ରାନୁ ଅପା ଛୋଟ ଥିବ ଯେ, ଛୋଟେ ପୁଣି ସବୁଦିନ ଖେଳ କରିବ, କୋଳ କରିବ, ପଶୁ ପଇଜର କାହାଣୀ ଶୁଣାଇବ ।

ବୁଢ଼ା ହବାକବକା ହୋଇଯାଏ । ରାନୁର ହସ ଚହଟ ମୁହଁକୁ ଜଳଜଳ କରି ଚାହିଁ ରହେ । କାନ୍ଦିବାକୁ ପାହା ପାଟି ମେଲା କରିଥାଏ, ପାଟି ସେହିପରି ଅସ୍ପୃଶ୍ୟ ହୋଇ ମେଲା ରହିଥାଏ, ଅଥଚ କାହାରେନା କାନ୍ଦ ! ଉଃ...ଏଇ ରାନୁ ଅପାଟା କି ଚଗଲି ! କହୁଛି କୋ'ଠା ଉପରୁ ଡେଇଁ ପଡ଼ି ମରିଯିବ ।

କିନ୍ତୁ ସେ ରାନୁ ଅପାକୁ କେତେ ଯେ ଭଲ ପାଏ !

ରାନୁ ଅପା ଲୋ, ନା ନା ନା, ମୁଁ ଆଉ କାନ୍ଦିବିନି । ଜମା କାନ୍ଦିବିନି । କୌଣସି ମତେ କାନ୍ଦକୁ ଚାପି, ଆଖିରୁ ଲୁହକୁ ପୋଛି ବୁଢ଼ା କହେ—ତୁ ଯଦି ମରିଯିବୁ, ମୁଁ ତାହାହେଲେ ମରିଯିବି ଲୋ ରାନୁ ଅପା । ତୁ କୋଠା ଉପରୁ ତଳକୁ ଡେଇଁ ପଡ଼ନା ।

ରାନୁ ବୁଢ଼ାକୁ ଛାତି ଉପରେ ଚାପି ଧରି ହସି ହସି କହେ—ତାହାହେଲେ ତୁମକୁ ହସିବାକୁ ପଡ଼ିବ ବୁଢ଼ା ସୁନା । ହସତ ଟିକେ, ହିଁ...ହିଁ... ହସ । ହସ ।

ଶୁଖିଲା ମୁହଁରେ କୌଣସିମତେ ହସର ରେଖାଟାଣି ବୁଢ଼ା କହିଉଠେ—ଏଇ ଦେଖୁନୁ ଅପା, ମୁଁ ହସୁନି କି ?

ବୁଢ଼ା ରାନୁର ଛାତିରେ କଟ୍‌କରି ହସି ଲେଉଟିଯାଏ ।

ସେଇ ବୁଢ଼ା । ଏକରେ - ଏକୋଇର ବଳା । ଦୁଇରେ—ଦୁଇଟି ନସୁନର ମହାର୍ଘ ପିଲୁକା ରାନୁ ଆଗରେ ମାଟିକୁ ହାମୁଡ଼ି ଠିଆ ହୋଇଛି । ଜନ୍ମରୁ ଟଙ୍କି । ପାଦ ଦୁଇଟି ଚାଲେନା । କେବଳ ଘୁଷୁରେ । ଦୁଃଖୀ ।

ଜନ୍ମବେଳେ ଷଠୀ ଠାକୁରାଣୀ ତା' ମୁଣ୍ଡରେ ଗୁଡ଼ାଏ ଦୁଃଖର ବୋଝ ଲଦି ଦେଇଛନ୍ତି ।

ଗନୁ ବୁଢ଼ାର ପିଠିକୁ ଆଉଁସି ଦେଲା ।

ବୁଢ଼ା କେବଳ ଟିକେ ହସଟିଏ ହସି ଘୁଷୁରି ଘୁଷୁରି ବାରଣ୍ଡାରେ ଚାଲିଗଲା ।

ଗନୁ ବୁଢ଼ାର ଯିବା ବାଟକୁ ହେଇ—ହେଇରେ ଚାହିଁ ଚାହିଁ ରହିଥିଲା । ବାରଣ୍ଡାରେ ଘୁଷୁରି ଘୁଷୁରି ବୁଢ଼ା ଚାଲିଛି । ପିଲାଟିବେଳୁ ତା'ର ଜୀବନ ପଥରେ ହିଁ ସେ ଘୁଷୁରିବାରେ ଲାଗିଛି—ଠିଆ ହେବାକୁ ଶକ୍ତି ନାହିଁତ, ଚାଲିବାକୁ ଶକ୍ତି ନାହିଁ; ହସି, ଖେଳି, ଉଚ୍ଛୁଳି ପଡ଼ି ଦଉଡ଼ିବାର ଶକ୍ତି ନାହିଁ, ସେ ସେଇମିତି ଘୁଷୁରୁଛି—ଆଣ୍ଠେଇ, ହାମୁଡ଼ି, ମୁହଁ ତଳକୁ କରି । ଅଣ୍ଟା ତା'ର ବଙ୍କା, ଗୋଡ଼ ତା'ର ବଙ୍କା, ଭବିଷ୍ୟତ ତା'ର ବଙ୍କା । ଭାଗ୍ୟ ତା'ର ବଙ୍କା ।

ବଙ୍କା ଭାବେ ଚାଲି ଚାଲି ସିଧା ଭାବରେ ଗନୁର ଠିକ୍ ମଝି ଛାତିରେ ସବୁଦିନ ଭାବେ ଲାଗି ରହିଛି ।

ଆହା, ସେଦିନ ବୁଢ଼ା ମନରେ ବର୍ତ୍ତମାନ ମଟରରେ ଖେଳିବା ପାଇଁ ଖୁବ୍ ଜିଦ୍ ଧରିଥିଲା । କିନ୍ତୁ ସେ କିପରି ଜାଣିବ ଯେ ଗନୁ ପାଇଁ ବର୍ତ୍ତମାନ ସମୟର ଅଭାବ କେତେ ! ଉପରେ ବସିଛନ୍ତି ବୋଉ ଓ ନମି ଅପାର ସାଙ୍ଗମାନେ । ଖୁବ୍ ବଡ଼ଲୋକର ଝିଅ ସେମାନେ । ସେମାନଙ୍କୁ ଚର୍ଚ୍ଚା ନକରି ବର୍ତ୍ତମାନ ବୁଢ଼ାର କଥା ଶୁଣିବାକୁ ଗନୁର ସମୟ ଆଦୌ ନାହିଁ । କୌଣସି-ମତେ ବୁଢ଼ାକୁ ଭୁଲେଇ ପାରିଛି ବୋଲି ଗନୁ ଆଶ୍ୱସ୍ତ ହେଲା ଏବଂ କପ୍ ପ୍ଲେଟକୁ ସଫା କରି ରୋଷେଇ ଘରକୁ ଚାଲିଗଲା ।

ଶାରଦୀୟ ସନ୍ଧ୍ୟା ।

ବାଦଲ ଉଡ଼ାଳରୁ ସପ୍ତମୀ ତିଥିର ବଙ୍କା ଚନ୍ଦ୍ର କେତେବେଳୁ ବାହାରି ଆସି ଗୁଆ ଗଛରୁ ପତ୍ର ଗହଳ ଡାଳରେ ନେହୁରାବାନ୍ଧ ଉଜ୍ଜଳ ଉଠିଲାଣି । କମନୀୟ ଜୋଚ୍ଛନା । ଜୋଚ୍ଛନା ରୂପସୀ ପୂର୍ଣ୍ଣଚନ୍ଦ୍ରମାର କୁଆଁରଆଭର ଯୌବନର ସ୍ୱପ୍ନ-ସମ୍ଭାର ନେଇ ଆସିନି ରୂପ-ଉନ୍ମାଦିନୀ ହୋଇ, ଆସିଛି ତା'ର ପ୍ରତି କଇଣରେ ଗୁଡ଼ାଏ ବ୍ରୀଡ଼ା ଭରି, ଆଜ ମାନିନୀ ଷୋଡ଼ଶୀ ପରି ଧୀରୁ ଧୀରେ ଶଂକିତ ଧୀର-ମନ୍ଥର ଗତିରେ, ଗୁରୁଆଡ଼େ ରୂପା ଜରିଦିଆ କ୍ଷୀରୋଦଶୀ ଉଡ଼ଣୀ ଉଡ଼ାଇ ଚକାଭଉଁରୀ ଦେଇ ବୁଲି ବୁଲି ନାଚିବାରେ ଲାଗିଛି । ଅଳସ ନାଚ । ସ୍ନିଗ୍ଧ-ସ୍ୱଚ୍ଛ । ସରମରେ କୋଉଠି ପତ୍ର ଫାଙ୍କରେ, ଝରକା—ଦୁଆରବନ୍ଧ କନ୍ଦରେ, ଅଗଣା ମଝିରେ, କୁଞ୍ଜ ବୃନ୍ଦନ୍ତରେ, ପ୍ରତିକଳିତ ଚଗଣର ପ୍ରତି ପାଖୁଡ଼ାରେ ଠିଆ ହୋଇ ମୁଠା ମୁଠା ଗୁରୁବା ଉଡ଼ାଇ ଫିକ୍ ଫିକ୍ ହସି ଚାହୁଁଛି— ଆକାଶକୁ, ଭସାଣିଆ ମେଘମାଳାକୁ, ନଈ ପଠାର କାଶତଣ୍ଡୀକୁ, ଫୁଲ ଉପବନର ଫୁଲ ସବୁକୁ । ସ୍ୱପ୍ନମୟୀ ଅଳସୀ ଜୋଚ୍ଛନା । ଶୁଭ୍ର ଗୌରବର୍ଣ୍ଣା । ଯାହାର ସାମାନ୍ୟତମ ମୃଦୁ ମଧୁର ହାସରେ କେବଳ ଝରୁଛି ପାରଦ ଝରଣା । ବିଶୁଦ୍ଧ ପାରଦ ଝରଣା ।

କଲ୍ୟାଣୀ କୋଠା ଉପରେ କହିଲେ—ଆଚ୍ଛା ସୁବର୍ଣ୍ଣା, ତମେ ଏ ବର୍ଷା ଶୀତ ପୂର୍ବରୁ କ'ଣ ସିଲେଇ ଆରମ୍ଭ କରିଛ ?

ସୁବର୍ଣ୍ଣା କହିଲା—ସମୟ କାହିଁ ଯେ ମାଉସୀ ? ଏଇ ଦେଖନ୍ତୁ, ସକାଳୁ ସନ୍ଧ୍ୟାଯାଏ ତ କଲେଜ । ତା'ପରେ ପୁଣି ଘରେ ପଡ଼ାପଢ଼ିରେ ବ୍ୟସ୍ତ ।

ଅନ୍ତତଃ ଗୋଟାଏ ସୋଏଟାର ବୁଣିତ କରି ପାରନ୍ତ ।

ହଁ, ଗୋଟାଏ ସୋଏଟାର ଆରମ୍ଭ କରିଛି ଯେ ପ୍ରାୟ ମାସେ ଲାଗିଲାଣି । କେଉଁଦିନ ସରୁଛି କେଜାଣି ?

ଏ ତ ହେବ୍ ଅଳମୁଆମୀ ! ହାତ ଘୁଞ୍ଚିକରି ଯଦି ସୋଏଟାର ବୁଣାଯାଏ, ତେବେ ସୋଏଟାରଟି ପ୍ରାୟ ଦୁଇତିନ ଦିନରେ ସରିଯିବ । ଆମେମାନେ ଯେତେବେଳେ ଠିକ୍ ତୁମରି ପରି ହୋଇଥିଲୁ, ମୋର ମନେ-ଅଛି ମୋର ସାଙ୍ଗମାନେ ମତେ ଏଇ ସିଲେଇ ବିଷୟରେ ଆଦୌ ପାରୁ-ନଥିଲେ । ମୋ ହାତ ତ ହାତ ନୁହେଁ । ସତେ ଯେପରି ବିଜୁଳି । ଆଜି ସବୁଠାରୁ ଭଲ ମଜା କଥା ଜାଣ, ହଠାତ୍ ଦିନେ ଦେଖିଲି, ଗୋଟାଏ ବଡ଼ ସିଲାଇ କଂପିଟିସନରେ ମୁଁ ଫାଷ୍ଟ ହୋଇ ଗୋଟାଏ ସୁନା ମେଡ଼ଲର ଅଧିକାରିଣୀ ହୋଇଛି । ପ୍ରକୃତରେ ଆଶ୍ଚର୍ଯ୍ୟ ଘଟଣା ।

ମମତା ଆଶ୍ଚର୍ଯ୍ୟ ହୋଇ କହିଲା —ସିଲାଇ କମ୍ପିଟେସନ୍ ? ଆଗ ବେଳେ ବୋଧହୁଏ ସିଲାଇ କମ୍ପିଟେସନ ହଉଥିଲା, କିନ୍ତୁ ଏବେ ତ ସେ ସବୁ କିଛି ନାହିଁ ।

କଲ୍ୟାଣୀ ମୁହଁକୁ ବିକୃତ କରି କହିଲେ—ଏବେ, ସିଲାଇ ଦା ଫିଲାଇ ? ଏବେ ସିଲାଇ ବଦଳରେ ହଉଛି କ'ଣ ଜାଣ ?

ସବୁ ଝିଅମାନେ ଆଶ୍ଚର୍ଯ୍ୟ ହୋଇ କହିଉଠିଲେ—କଅଣ ? କଅଣ ?

କଲ୍ୟାଣୀଙ୍କର ବିରକ୍ତି ଚୂଡ଼ାନ୍ତ ଅତିକ୍ରମ କଲା । ସେ କହି ଉଠିଲେ, ଛିଃ ··· !

କଲ୍ୟାଣୀଙ୍କ ମୁହଁରୁ ଏଇ ଶବ୍ଦଟା ଯେତେବେଳେ ବାହାରିପଡ଼ିଲା ଠିକ୍ ଗୋଟାଏ ଆଟମ ବମ୍ ପରି, ସବୁ ଝିଅଙ୍କର କାନ ଏଇ ଛିଃ ଉଚ୍ଚାରଣରେ ତାବ୍ଦା ହୋଇଗଲା, ଆଉ ମେଞ୍ଚାଏ କଳା କଟିକଟି ପାନପିକ ତାଙ୍କ ପାଟିରୁ ବାହାରି ସମସ୍ତଙ୍କର ଅଲକ୍ଷ୍ୟରେ ପଡ଼ିଗଲା ଅନୁପମାର ମୁହଁରେ ।

ଅନୁପମାକୁ ଅଶ୍ୱସ୍ତି ଲାଗୁଥିଲା । କିନ୍ତୁ ଏପରି ପାନପିକ ପୋଛି-ବାରେ ତା'ର କାଳେ ଅସୌଜନ୍ୟ, ଅସନ୍ତୁଷ୍ଟି ତା ପ୍ରକାଶ ପାଇବ, ସେ ତେଣୁ ପୋଛୁଲାନ । ଚୁପ୍‌ଚାପ୍ ସେହିପରି ବସିରହିଲା କଲ୍ୟାଣୀଙ୍କର ମୁହଁକୁ ଚାହିଁ । ଅଥଚ ସେଇ କଦର୍ଯ୍ୟ ପାନପିକ ତା'ର ଗାଲ ଉପରେ ରଙ୍ଗ ନିଆଁ ପରି ତାତି ଉଠୁଥିଲା । ସବୁ ସମ୍ଭାଳି ସେ ଚୁପ୍ ରହିଗଲା ।

ପୁଲପିଟ୍ ଉପରୁ କୌଣସି ଏକ ମହାନ୍ ସତ୍ୟସନ୍ଧାନୀ, ପରମହଂସ ସନ୍ନ୍ୟାସୀ ବକ୍ତୃତା ଦେଲାପରି କଲ୍ୟାଣୀ ଦେବୀ ତାଙ୍କର ମେଦବହୁଳ ବପୁଟିକୁ ବିଭିନ୍ନ ପ୍ରକାରେ ହଲାଇ ବକି ଚାଲିଥାନ୍ତି ତାଙ୍କ ଅତୀତର କଥା ସିଲଭରରେ ମୁଁ ଯେପରି ଧୁରନ୍ଧର, ପାଠରେ କ'ଣ କମ୍ କି ? ଏକଦମ୍ ଫାଷ୍ଟ୍ । ସେକେଣ୍ଡ୍ ତ କେବେ ହୋଇନି । ଅବଶ୍ୟ ଆମ ବେଳେ ଏତେ ଟିଉସନ ଇସ୍କୁଲ୍ ନଥିଲା । ସେ ଯାହାହେଉ ମୁଁ ଦଶକ୍ଲାସ୍ ଯାଏ ଫାଷ୍ଟ୍ ହୋଇ ହୋଇ ମିଛ ରହିଲି । ଆମ କ୍ଲାସର ଟୁଆଙ୍କ କଥା ଛାଡ଼..., ପୁଅ ପିଲାମାନେ ମତେ ଡରି କି ଥରହର । ହାଃ...ହାଃ...

ନମିତା କହି ଉଠିଲା—କିନ୍ତୁ ସେତେବେଳେ ବୋଉ ପୁଅ ଝିଅ ଏକାଠି ପଢ଼ୁ ନଥିଲେ ।

ଚୁପ୍ ! ତୁ କ'ଣ ଜାଣିଛୁ ? ହିଃ...କହିଦେଲା ପଢ଼ୁ ନଥିଲେ । ମୁହଁକୁ ବିକୃତ କରି କଲ୍ୟାଣୀ ଦେବୀ ପାଟି କରି ଉଠିଲେ ।

ନମିତା ସଙ୍କୁଚିତ ହୋଇଗଲା ।

ହାୟ, ହାୟ, ସେଇ ଦଶକ୍ଲାସରୁ ବାପା ମତେ ଇସ୍କୁଲରୁ ଉଠାଇ ଆଣିଲେ, ଆଉ ବାହା କରିଦେଲେ ଏଇ ନମିତା ବାପାଙ୍କ ସାଥିରେ । ଯଦି ଏଇ ବାହାଘରଟା ନ ହୋଇଥାନ୍ତା......ଯଦି ନ ହୋଇଥାନ୍ତା, ତେବେ ସତ କହୁଛି, ମୁଁ ନିଶ୍ଚୟ ମାଟ୍ରିକ୍ ପରୀକ୍ଷାରେ...ମାଟ୍ରିକ୍ ପରୀକ୍ଷାରେ, ଏଇ ମାନେ, ହୋଇଥାନ୍ତି...ହୋଇଥାନ୍ତି...

ଫାଷ୍ଟ୍ । ତାଙ୍କୁ କହିପାରୁ ନଥିବା ଦେଖି ସୁବର୍ଣ୍ଣା ବାକ୍ୟ ପୂରଣ କଲା ।

ହଁ ଫାଷ୍ଟ୍ । ଗର୍ବବିହ୍ୱଳା କଲ୍ୟାଣୀ ଦେବୀ ସ୍ୱପ୍ନ ଦେଖିଲା ପରି କହି ଉଠିଲେ ।

ସବୁ ଝିଅଗୁଡ଼ା କଲ୍ୟାଣୀଙ୍କର ବିପୁଳ କଳା ମୁହଁଟିକୁ ଚାହିଁଥିଲେ । ଅସମ୍ଭବ ମୁହଁ । ନୂଆ ଟଇଁଆ ଆକାରର ଗୋଟାଏ ଖୁବ୍ ବଡ଼ ସିନ୍ଦୂର

ଚୌଡ଼ା କପାଳରେ । ମୁଣ୍ଡର ବାଳ ଖୁବ୍ ସଯତ୍ନରେ କୁଣ୍ଡା ହୋଇଛି । ବଡ଼ ଜୁଡ଼ା । ଜୁଡ଼ା ଉପରେ ଗୋଟାଏ ରଜନୀଗନ୍ଧା । ଆଖିରେ ସୁନା ଚଷମା । ଆଖି ଉପରେ ଚଷମା ଥିଲା ବୋଲି ନା କ'ଣ, ନଇଲେ ଗାଲ ଦୁଇଟିର ମାଂସର ଆଧିକ୍ୟ ଯୋଗୁଁ ତାଙ୍କର ଛୋଟ ଛୋଟ ଆଖି ଦୁଇଟିକୁ ଆଦୌ ବାରି ହଉ ନଥିଲା । କେଜାଣି ସେତେବେଳେ ସେ ଆଖି ଦୁଇଟି କି ଅର୍ଥ ପ୍ରକାଶ କରୁଥିଲେ ? ଉପର ଓଠଟା ଟିକେ ମୋଟା ତଳ ଓଠ ଅପେକ୍ଷା । ସମ୍ମୁଖ ଦାନ୍ତ ଦୁଇଟି ଅନ୍ୟଦାନ୍ତ ତୁଳନାରେ ବଡ଼ ଥିଲେ । କିନ୍ତୁ ଖୁବ୍ କଳା, ପ୍ରଚୁର ପାନ ଖାଇବା ଯୋଗୁଁ । ବେକ ତ ପ୍ରାୟ ନଥିଲା । ଗାଲ ଦୁଇଟି ତଳକୁ ଏତେ ଓହଳି ପଡ଼ିଥିଲା ଆଉ କାନ୍ଧ ଦୁଇଟି ଏତେ ଫୁଲି ଉଠିଥିଲା ଯେ ଏହି ଦୁଇଟି ପ୍ରତ୍ୟଙ୍ଗ ଭିତରେ ଅଛି ଗୋଟିଏ ବେକ, ତାହା ସହଜରେ ଅନୁମାନ କରି ହେବ ନାହିଁ ହଠାତ୍ ଦେଖିଲେ । ସେ ବୋଧହୁଏ ଆଧୁନିକତାକୁ ପସନ୍ଦ କରୁଥିଲେ । ସ୍ଥୂଳତା ଅପେକ୍ଷା ଗୁଡ଼ାଏ ଚର୍ବି—ଗୁଡ଼ାଏ ଦୃଷ୍ଟିକଟୁ ଚର୍ବି ସେହି ହାତ ଦୁଇଟିରେ ଅଙ୍ଗୁଳିଠାରୁ ବାହୁମୂଳ ଯାଏ ପୂରି ରହିଥିଲା ବନ୍ୟାସ୍ରୋତ ପରି, ସେହି ହାତ ଦୁଇଟି ଅର୍ଥାତ୍ ବାଁ ହାତରେ ଥିଲା ଗୋଛାଏ ଚୂଡ଼ି ସାଥିରେ ଗୋଟାଏ ରିଷ୍ଟୱାଚ୍ । ବାଁ ହାତରୁ ଚୂଡ଼ି କାଢ଼ିବାର ଦୁଃସାହସ ସେ କରି ନାହାନ୍ତି, ଆଉ ଡାହାଣ ହାତରେ ସେହି ଚୂଡ଼ି ମଧ୍ୟ । ହାତ ଦୁଇଟି ସ୍ଲିଭଲେସ୍ ବ୍ଲାଉଜରୁ ତଳକୁ ଖସି ଆସିଥିଲେ – ବୋଧହୁଏ ଦୁଇଟି କୃଷ୍ଣ ଅଜଗର । ଗୋଟାଏ ଦାମିକା ପ୍ରିଣ୍ଟ ଶାଢ଼ୀ ପିନ୍ଧି ଚକାମାରି ସେ ବସିଥିଲେ, ଗପୁଥିଲେ, ଆଉ ହାତ ହଲାଇ ସୁନା ଚୂଡ଼ୀର ଝମ୍ ଝମ୍ ଶବ୍ଦ ସୃଷ୍ଟି କରୁଥିଲେ ।

ମୋ ନମିତାଟା ସିଲେଇ କରିବାରେ କିନ୍ତୁ ଏକସ୍‌ପାର୍ଟ । ସେ ଗୋଟାଏ ସୋଏଟର ତା' ବାପାଙ୍କ ଏମିତି କରିଛି ଯେ ତୁମେ ଦେଖିଲେ ଆଶ୍ଚର୍ଯ୍ୟ ହୋଇଯିବ । ଏକଦମ୍ ନୂଆ ଡିଜାଇନର । ଦି' ଦିନରେ କାନ୍ଧ ଉଠିଗଲାଣି ।

ନମିତା କିନ୍ତୁ ବ୍ୟସ୍ତ ହୋଇ ଉଠିଲା । କୋଉ ସୋଏଟର୍ ? କାହା କଥା କହୁଛ ନୋଇ ବୋଉ ?

କଲ୍ୟାଣୀ ଆତ୍ମତୃପ୍ତିର ହସ ହସି କହିଲେ—ସୋଏଟାରକୁ ଦେଖିଲେ ତୁମେ ଭାବିବନି ଯେ ସେଇଟା ହାତବୁଣା; ସତେ ଯେପରି ଗୋଟାର ବଡ଼ କୁମ୍ପାନୀ ଖୁବ୍ ବୁଦ୍ଧି କୌଶଳରେ ମିସିନ୍‌ରେ ଗାଫ୍‌କରି ବୁଣି ପକାଇଛନ୍ତି। ଅଚ୍ଛା ମା, କହିଲୁ ସେଇଟା କେତେ ଘର ନେଇ କରିଛୁ ? କେତେ ସିଧା, କେତେ ଓଲଟା।

ନମିତା ହଡ଼ବଡ଼େଇ ଗଲା। କୋଉ ସୋଏଟାର କଥା ବୋଉ କହୁଛି ସେ ଆଦୌ ବୁଝିପାରୁ ନଥିଲା।

କଲ୍ୟାଣୀ ଉଦ୍ଭ୍ରାନ୍ତ ହୋଇ କହିଲେ—ଏଇ ଦେଖ, ମୋ ଝିଅ-ଟାର ଏମିତ ଗୋଟାଏ ଗୁଣ ଯେ, ପଚାରିଲେ କିଛି କହିବନି।

କୋଉ ସୋଏଟର କଥା ବୋଉ ତୁ କହୁଛୁ ?

କାହିଁକି ? ସେଇ ଯୋଉ ସୋଏଟର୍‌ଟା ଆଜ ତୁ ଦେଖିଥିଲୁ।

ଓଃ। ସେ ସୋଏଟାରଟା ?

ହଁ — ହଁ। ସେଇ ସୋଏଟାରଟା। ଖୁବ୍ ଭଲ। ଖୁବ୍ ସୁନ୍ଦର।

ହେଁ... ହେଁ...

ହଁ କହିଲୁ ମା, କେତେ ଘର ?

ଏଇମାନେ—ମାନେ—

ହଁ, କହ। କହ।

ମାନେ—ସୋଏଟାରଟା—

ହଁ, ମୁଁ ତ କହୁଛି ଏକେଦମ ଫାଷ୍ଟେ କ୍ଲାସ। ବାପାଙ୍କୁ ଖୁବ୍ ସୁନ୍ଦର ମାନିବ।

କଲୁ—କଲୁ, ମୁଁ ସେ ସୋଏଟାର୍‌ଟା, ଏଇ ମାନେ—ମାନେ—

କ'ଣ ଏତେ ମାନେ—ମାନେ ?

ବୋଉ... !

ବଡ଼ ଲାଜକୁଳୀ ମୋ ଝିଅଟା !

ସୁବର୍ଣ୍ଣା, ମମତା ଆଉ ଅନୁପମା ଏ ସବୁର ଅର୍ଥ କିଛି ବୁଝିପାରୁ ନଥିଲେ । ଅନୁପମା ଆଗ୍ରହରେ ପଚାରିଲା···କହନ୍ତୁ ନମି, ସେ ସୋଏଟାର୍‌ଟା କେମିତି ବୁଣିବୁ ?

ନମି ଝାଉଁଳି ପଡ଼ିଥିଲା ।

ନମି ! ଆଲୋ କହନ୍ତୁ କାହିଁକି ? ଚେଚେନ୍ଦେଇ ହୋଇ କଲ୍ୟାଣୀ କହିଲେ ।

ମୁଁ ତ ତାକୁ ବୁଣିନି ବୋଉ ।

ଏଁ··· ? ମାନେ କ'ଣ କହିଲୁ ?

ମାନେ, ତାକୁ ରାନୁ ବୁଣିଛି । ରାନୁ ତ ରାତିସାରା ଅନିଦ୍ରା ହୋଇ ତାକୁ ବାପାଙ୍କ ପାଇଁ ବୁଣିଛି ।

କଲ୍ୟାଣୀ ହଡ଼ବଡ଼େଇ ଗଲେ । ତାଙ୍କର ଚକ୍ଷୁ ବୋଧହୁଏ ବିସ୍ଫାରିତ ହୋଇଗଲା । ଏଇ ନମିଟାଟା ତାଙ୍କୁ ଏତେ ଜଣଙ୍କ ଆଗରେ ଧରା ପକେଇ ଦେଇଛି । ସେ ଝିଅର କେତେ ପ୍ରଶଂସା କରି ନଥିଲେ ! କିନ୍ତୁ ସବୁ ମାଟି । ସେ ଏ ପରିସ୍ଥିତିକୁ କିପରି ସହଜ କରିବେ, ଆଉ ନିଜକୁ କିପରି ଏ ହାସ୍ୟାସ୍ପଦ ଅବସ୍ଥାରୁ ବଞ୍ଚାଇବେ, ଏଥିପାଇଁ କହିଲେ · ଦୁର୍—ବୋକି ! ମୁଁ କ'ଣ ସେ ସୋଏଟାର୍ କଥା କହୁଛି ? ହୁଁଃ···ରାନୁ ଗୋଟାଏ ଝିଅ, ସେ ପୁଣି ବୁଣିବ ସୋଏଟାର ? ମୁଁ ତ କହୁଛି ସେଇ ନାଲି—ନାଲି, ନାଇଁ—ନାଇଁ, ନେଳୀ ସୋଏଟାର କଥା !

ନେଳୀ ସୋଏଟାର କଥା ?

ଆରେ ନାଃ···, ସେଇ ଚକଲଟ୍ ସୋଏଟାର କଥା ।

କଲ୍ୟାଣୀ ମ୍ଳାନ ହସିଲେ । ଏକଦମ୍‌ଇ ମ୍ଳାନ । ଯନ୍ତ୍ରଣାର, ଅପ୍ରସ୍ତୁତତାର ହସ । ହଠାତ୍ ଉଠିପଡ଼ି ଗ୍ଲାସର ପାପରୱେଟ୍ ଉପରେ ନିଜର ବିପୁଳ ବପୁଟିକୁ ଖସେଇଦେଇ ଚିତ୍କାର କଲେ—ଆଲୋ ଏ ରାନୁ, ଏ ରାଜଦୁହିତା ରାନୁ, କ'ଣ ଜଳଖିଆ ଆଣିଲୁ, ନା ମଲୁଣି ?

କଲ୍ୟାଣୀ ରାନୁ ପାଖକୁ ତଳକୁ ଚାଲିଗଲେ ।

କଲ୍ୟାଣୀଙ୍କର ତଳକୁ ଯିବାରେ ନମିତା ଓ ତାର ସାଙ୍ଗମାନେ ଆଶ୍ୱସ୍ତ ହେଲେ । ଗୁଡ଼ାଏ ବୋର୍‌ଡ଼ମ୍ ସୃଷ୍ଟି କରଥିଲେ ଏଇ କଲ୍ୟାଣୀ ।

ବଳୁଲବଂଶର ପ୍ରଖର ଆଲୁଅରେ ହଉ ବା କୋମଳ ନୀଳ ଆଲୁଅରେ ହଉ ଏ ଝିଅ ସ୍ୱରେଟି ପନ୍ଦ ବସି ମଧୁର ଆସର ଜମାଇଥା'ନ୍ତେ ତେବେ ଏତେଟା ସୁନ୍ଦର ଆଦୌ ଦଶିନଥାନ୍ତେ । ବଳୁଲୀବଂଶର କୃତ୍ରିମ ଆଲୋକ ତାଙ୍କର ମୁଖମଣ୍ଡଳର ସୌନ୍ଦର୍ଯ୍ୟକୁ ଆଦୌ ଉକୁଟାଇ ପାରନଥାନ୍ତା । କେବଳ ତାଙ୍କର ଏଇ ଭବ୍ୟ ରୂପ ସାଥୀରେ ତାଳଦେଇ ଯେମିତି ଆଜର ଏଇ ଜୋଛନା ସ୍ନିଗ୍ଧ ହସୁଛି । ସପ୍ତମୀ ଜହ୍ନର ମଧୁ ମାଦକଭରା କଅଁଳ କିରଣ ତାଙ୍କର ଗାଲରେ, ମୁହଁରେ ନେସି ହେଇ ଗୁଡ଼'ଏ ଛନଛନ ଫୁଲର ଭରା ମହୋତ୍ସବ ଥାଟ ବସ୍ତ୍ରାଡ଼ ପକାଇ ଦାଉ ଦାଉ ହେଉଛି ।

ନମି, ଏଇ ନମିତା ମେଡ଼ିକାଲ୍ କଲେଜର ତୃତୀୟ ବର୍ଷର ଛାତ୍ରୀ । ବୟସ କୋଡ଼ିଏ, ଏକୋଇଶ । ଅଟୁଟ ସ୍ୱାସ୍ଥ୍ୟ । କୁନ୍ଦକରା, ଖୋଦେଇ ସ୍ୱାସ୍ଥ୍ୟ । ଦୀର୍ଘାଙ୍ଗୀ । ଉଜ୍ଜ୍ୱଳ ଶ୍ୟାମଳ ରୂପଶ୍ରୀ । କିନ୍ତୁ ମନୋହର । ବର୍ଷା-ଜଳ ପଖଳା ଫୁଲ ଫଳଭରା ଏକ ନିଖୁଣ ବନସ୍ପତି ପରି ଯାହା ଲୋଟି ପଡ଼ୁଥିଲା, ହସୁଥିଲା; କିନ୍ତୁ ଏଇ ଯୋଏଟାର୍ କଥାରେ ବର୍ତ୍ତମାନ ନୀରବ ହୋଇଯାଇଛି ।

ସମସ୍ତେ ଚୁପ୍‌ଚାପ୍ ।

ଶାରଦୀୟ ସନ୍ଧ୍ୟାକୁ କିଛି ମଉଜରେ, କିଛି ଫୂର୍ତ୍ତିରେ, ଥଟ୍ଟା ମଜ୍ଜାରେ ଭରପୂର କରିବା ପାଇଁ ନମିତା ତାର ବନ୍ଧୁମାନଙ୍କୁ ଡାକିଥିଲା, ଏଇ ଅନୁପମାକୁ, ମମତାକୁ ଆଉ ସୁବର୍ଣ୍ଣାକୁ ।

ମମତା ଓ ସୁବର୍ଣ୍ଣା ନମିତାର ସହପାଠିନୀ । କିନ୍ତୁ ଅନୁପମା ମାଟ୍ରିକ ପରଠାରୁ ବେତାର ଶିଳ୍ପୀ ରୂପେ ସଙ୍ଗୀତର ଚର୍ଚ୍ଚା କରୁଛି ।

ନୀରବତାକୁ ଭଙ୍ଗକରି ସୁବର୍ଣ୍ଣ କହିଲା—ଅନୁ, କାଲି ଯେଉଁ ଆଧୁନିକତା ବୋଲିଲୁ, ସେଇଟା କାହାପାଇଁ କଲୁ ? ମୁଁ ଅନୁଭବ

କରୁଛୁ ତୋର ଗୀତଗୁଡ଼ାକ ଯେପରି ଜଣକ ପାଇଁ । କିନ୍ତୁ ସେ ଭାଗ୍ୟବାନଟି କିଏ ?

ଏଇ ସେଇ ଗୀତଟା ନା—ସପନରାଇଜ ରାଜାପୁଅ ଆସେ, ଯେନ ମୋ ଲୁହର ମାଳା···? ମମତା କହିଲା—ଆହା କି ନିଷ୍ଠୁର ନିର୍ମମ ସେ ରାଜପୁଅ ! ଛାତି କଣ ତାର ପାଷାଣରେ ଗଢ଼ା ? ମୋ ସାଙ୍ଗଟାର କଥା କ’ଣ ବୁଝିପାରୁନ ? ହଇଲେ ହେ ଅନୁ, ତୁ କାଲି କ’ଣ ଗୀତ ବୋଲିଲା-ବେଳେ ଷ୍ଟୁଡ଼ିଓ ଭିତରେ କାନ୍ଦୁଥିଲୁ ?

ନମିତା ଅନୁପମାକୁ ଛାତିରେ ଜାକିଧରି ହସି ହସି କହିଲା—ମଲୁନାହିଁ ଲୋ ପୋଡ଼ାମୁହିଁ ! ଏତେ ସୁନ୍ଦର ଗୀତ ବୋଲୁଛୁ ? ମୁଁ ଯଦି ହେଇ ରଜାପୁଅଟା ହେଇଥା’ନ୍ତି, ତେବେ ଏଇ ସାଙ୍ଗେ ସାଙ୍ଗେ ଆସି ଘୋଡ଼ାରେ ତତେ ନେଇ ପଳେଇ ଯା’ନ୍ତି, ଆଉ ସୁନା ପୁଅଟି ପରି ବାନ୍ଧା ହୋଇ ପଡ଼ନ୍ତି ।

ସମସ୍ତେ ହସି ଉଠିଲେ ।

ସୁବର୍ଣ୍ଣା କହିଲା-ଆମେ ଡାକ୍ତରୀ ପଢ଼ୁଛୁ । ଉଃ···କି ଯେ ଅସନା ସେ ପାଠ ! ପେଟ ଚିରୁଛୁ । ରକ୍ତ ପୂଜ କାରବାର କରୁଛୁ । ଯୋଉ ହାତକୁ ମେହେନ୍ଦୀ ରଙ୍ଗକରି ଲତା ଡାଳ କାଟୁଛୁ, ନଖରେ ନେଲପଲିସ୍ ଦେଉଛୁ ନଖ ସୁନ୍ଦର ଦିଶିବା ପାଇଁ, ସେଇ ହାତରେ ପୁଣି ଗୁହ ମୁତ ଘାଣ୍ଟୁଛୁ ।

କି ବିରୋଧାତ୍ମକ କାର୍ଯ୍ୟସୂଚୀ ସତେ !

ଯୋଉ ହାତରେ ମଞ୍ଜୁଆତି ରଙ୍ଗ—କବିସ୍ୱପ୍ନର ଉତ୍ସ, ସେଇ ହାତରେ ନାଷ୍ଟି ଷ୍ଟୁଲ୍ !

ଆଶ୍ଚର୍ଯ୍ୟ !

ଯୌବନର ରଙ୍ଗୀନ ସ୍ୱପ୍ନ ସତେ ଯେପରି ଅପରେସନ୍ ଟେବୁଲ ଉପରେ ଆର୍ତ୍ତ ଚିତ୍କାର କରୁଛି-ବିକଳ କ୍ରନ୍ଦନ କରୁଛି, ଆନାଟମୀ ହଲ୍‌ରେ ପାଂଶୁ ହୋଇ ମୁରୁଝାଇ ପଡ଼ୁଛି ।

ଯୋଉ ଅନାମିକାରେ ହୀରକସା ସରୁ ମୁଦ, ସେଇ ହାତରେ ପୁଣି ବେଳେବେଳେ ରବର୍ ଗ୍ଲୋବ୍ସ୍ । ହୀରାମୁଦ ତ ନଷ୍ଟହବ ସେଇ ଗ୍ଲୋବ୍ସ୍ ଭିତରେ ବିଦ୍ରୋହ କରୁଥିବ; ଆଉ ଦଶଟି ଅଙ୍ଗୁଳର ରୂପଶୋଭା ନଷ୍ଟହୁ କାନ୍ଦୁଥିବ ।

ନମିତା କହିଲା—ଓଃ...ମଣିଷ ଅପନ୍ତୀ ହୋଇଯିବ ସେଇ ରୋଗୀ ଗୁଡ଼ାଙ୍କ ମେଳରେ । ବର୍ତ୍ତମାନ ମନ ହେଉଛି କ'ଣ ଜାଣୁ ଅନୁ ? ମନ ହେଉଛି ଏଇ ବନ୍ଧ ଫନ୍ଦ ଫୋପାଡ଼ି ଠିକ୍ ତୋ'ର ପରି ତାନ୍‌ପୁରାଟିଏ ଧରି ଗୀତ ବୋଲନ୍ତି । ଷ୍ଟେଥ ଫରସେପ୍ ବଦଳରେ ଏଇ ହାତରେ ତାନ୍‌ପୁରାଟି ଖୁବ୍ ଭଲ ଦିଶନ୍ତା, ଆଉ ଏଇ ନେଲ ପଲିସ୍, ମେହେନ୍ଦୀ ଲତା ଡାଳ, ହୀରାମୁଦର କଣ୍ଟା ମର୍ଯ୍ୟାଦା ବି' ରକ୍ଷାକରି ହୁଅନ୍ତା ।

କାହିଁ ଗୋଲପଫୁଲ ଧରା ଦୁଇଟି ହାତ ?

ଆଉ କାହିଁ ଷ୍ଟେଥଅସ୍‌କୋପ୍ ଧରା ଦୁଇଟି ହାତ ?

ନମିତା ଅନୁକୁ କୋଳରେ ପୂରାଇ କହି ଉଠିଲା —ହାୟୁ, ମୁଁ ଯଦି ତୋ'ର ସେଇ ରଜାପୁଅଟି ହୋଇଥା'ନ୍ତି ଲୋ, ଏଇମିତ୍ତ ଗ୍ରୀବରେ ଜଡ଼ାଇ, ଏଇ ଭରା ଯୌବନକୁ ତୋ' ଗୀତରେ ଖାଲି ପୁଡ଼ାଇ ଦିଅନ୍ତି ।

ଅନୁ ଅସ୍ତବ୍ୟସ୍ତ ହୋଇ ନମିତାକୁ ଦୂରକୁ ଠେଲି ଦେଇ କହିଲା— ଧେତ୍ ! ଯେତେକ ସବୁ ବାଜେ କଥା । ମୁଁ ଯେତେବେଳେ ଭାବୁଛି ତାନପୁରା ଧରି ଭୁଲ କରିଛି, ତମେ ସେତେବେଳେ ମତେ କହୁଛ ଯେ ତମେମାନେ ଷ୍ଟେଥସ୍‌କୋପ୍ ଧରି ଭୁଲ କରିଛ । ଏଇଟା କିଛି ନୂଆ କଥା ନୁହେଁ, କାରଣ ସମସ୍ତେ ସମସ୍ତଙ୍କର ବୃତ୍ତିପ୍ରତି ବିରକ୍ତି ପ୍ରକାଶ କରନ୍ତି ଏବଂ ଅନ୍ୟକୁ ଦେଖି କହନ୍ତି ସେଇ ହେଉଛି ଭାଗ୍ୟବାନ । ତମେ ଯେଉଁଠି ଲେଡ଼ି ଡକ୍ଟର, ମୁଁ ସେଠି ଗୋଟାଏ ସଂଗୀତ ଶିଳ୍ପୀ ! ତମ ପରି ମୁଁ ହେବିନା ? ତା'ଛଡ଼ା ଏ ସମାଜରେ ଗୋଟାଏ ଶିଳ୍ପୀର ମୂଲ୍ୟ ବା କେତେ ?

ଅନୁ ନୈରାଶ୍ୟମୟ ଆଖିରେ ତା'ର ବାନ୍ଧବୀମାନଙ୍କୁ ଚାହିଁ ରହିଥିଲା ।

ତା' ବ୍ୟକ୍ତିତ୍ୱ ଗଣତାନ୍ତ୍ରିକ ଏମ୍. ବି. ବି. ଏସ୍.ର ଗୁଣୀ ।

ଆଜି କେତେ ବର୍ଷ ଗଲେ ସେମାନେ ଯେତେବେଳେ ମାସକୁ ହଜାରେ ଟଙ୍କା ରୋଜଗାର କରିବେ; ସେ ସେତ୍ତ୍ୱ ଶବ୍ଦ ଦୁରଗନ୍ଧ ଟଙ୍କାର କ୍ଷୁଦ୍ର ଅର୍ଗଳ ଭିତରେ ପେଶି ହୋଇ ଚିତ୍କାର କରୁଥିବ ।

ସେ ଚିତ୍କାରରେ ଭରିଥିବ କୁଆଁରେଢ଼ କଳାପ୍ରାଣତା !

ସେ କୁଆଁରେଢ଼ ଅମୃତ ସାଧନା !

ହୁଁ ଃ... !

ନମିତାକୁ ହୁଏତ କେଉଁ ଡାକ୍ତର ବାଘ ହୋଇ ସନ୍ଧ୍ୟାବେଳେ ତା'ର ମଟରରେ ବୁଲାଇ ମଜା କରିବ ।

ସୁବର୍ଣ୍ଣା ହୁଏତ କେଉଁ ଆଇ. ଏ. ଏସ୍. କମ୍ବା ଆଇ. ପି. ଏସ୍. ସ୍ୱାମୀର ବଙ୍ଗଳା ଲନ୍‌ରେ ବସି କେତେ ସନ୍ଧ୍ୟାକୁ ଟି' ପାର୍ଟିର କପ୍ ପ୍ଲେଟ୍ ଶବ୍ଦରେ ମୁଖରିତ କରିବ ।

ମମତା ହୁଏତ କେଉଁ ଇଞ୍ଜିନିୟରର ସ୍ୱାମୀ ପାଇ ଆକାଶ ଛୁଆଁ କୋଠାକରି, ସେଇ ବାଲ୍‌କୋନୀରେ ସ୍ୱାମୀର ଛାତିରେ ଲୋଟିପଡ଼ି ସ୍ୱପ୍ନ ଦେଖିବ ।

ଆଜି ସେ ?

ସେ ତ ଶିଳ୍ପୀ, ସେ କେବଳ ନିଜର ଚେତାଣିତ, ଲୋକଙ୍କୁ ସମସ୍ତଙ୍କ ପରି ଝଲଟଲ କରି ବିଚରଣ କରି ପଦାକ୍ଷେତ୍ରର ଅଧ୍ୟାବୃତ୍ତୀ ହୋଇ ଥକ୍‌କି ପଡ଼ିବ ଜୀବନ ସରଣୀର ହତାଶାର ମାଇଲ ଖୁଣ୍ଟ ପାଖରେ ।

ଅଥଚ, ଏଇ ପ୍ରଚ୍ଛନ୍ନ ବାସ୍ତବପ୍ରତି ସେମାନେ ଦୃଷ୍ଟି ନ ଦେଇ ତାକୁ ପ୍ରଶଂସା କରୁଛନ୍ତି ।

ପ୍ରଶଂସା ନା ଅଟ୍ଟା—ପରିହାସ ?

ଠିକ୍ ଏତିକିବେଳେ ପୁଣି ଉପରକୁ ଉଠିଆସିଲେ କଲ୍ୟାଣୀ ଦେବୀ ।

ନମି ପଚାରିଲା—ବୋଉ, କ'ଣ ରନୁର ଜଳଖିଆ ଆଣିବା ହଉଛି ନା ନାହିଁ ?

କଲ୍ୟାଣୀ ଉତ୍ତର ଦେଲେ—ସବୁ କଥାରେ ତ ଡେରି ତା'ର । କ'ଣ କରୁଛି କାମ ଚଞ୍ଚଳ କରିବ ? ଯେତେ ହେଲେ ବି' ସେତ୍ତ୍ୱ ଡେରି । ତା'ର

ଯୋଗୁ ସିନା ଖାଲି ମୋର ପାଟି ଶୁଖୁଛି, ନଇଲେ ସେ ପାଣିର ବ କିଛି ମୂଲ୍ୟ ନାହିଁ । ସେଇଟା ଗୋଟାଏ ପଥର । ନଦା ମୁଗୁର ।

ନମି ପାଟିକରି ଡାକିଲା — ରମୁ, କ'ଣ ତୋ'ର ଜଳଖିଆ ସରିଲା ନା ନାହିଁ ?

ତଳୁ ରମୁ କହିଲା—ଯାଉଛି ଅପା··· ।

ଜାଉ ଖାଉଥା'··· । ନମି ବିରକ୍ତ ହୋଇ ଉଠିଲା । ଖାଲି ସଦାବେଳେ ଅପା—ଅପା ! କଥାଟା ସିନା କହୁଛୁ ଖୁବ୍ କଅଁଳ, ହେଲେ ଏତେବେଳେ ହେଲାଣି ଆସୁନୁ କାହିଁକି ?

ଅଣନିଃଶ୍ୱାସୀ ହୋଇ ହାତରେ ଗୋଟାଏ ବଡ଼ ବାଲ୍ଟି ଆଉ ତଳ ଧରି ଧଇଁ ସଇଁ ହୋଇ ଉପରକୁ ଆସିଲା ରମୁ । ଏଡ଼େ ବଡ଼ ବାଲ୍ଟିଟାଏ ଧରି ସେ ଯେତେବେଳେ ଗୋଟାଏ ନୁହେଁ ଦି'ଟା ନୁହେଁ, କୋଡ଼ିଏ ତିରିଶଟା ପାହାଚ ଟପି ଉପରକୁ ଆସିଲା, ସେତେବେଳେ ପ୍ରବଳ ନିଃଶ୍ୱାସରେ ତା'ର ନାକପୁଡ଼ା ଉଠୁଥିଲା—ପଡ଼ୁଥିଲା । ଘତମତ ଧଇଁ ସଇଁ ହୋଇ ଗୁଣ୍ଡ ତା'ର ଝରୁଥିଲା ।

ନମି ତା'ର ଏ ଅବସ୍ଥା ପ୍ରତି ଆଦୌ ଲକ୍ଷ୍ୟ ନ କରି ପ୍ରଭୁତ୍ୱ-ବ୍ୟଞ୍ଜକ ସ୍ୱରରେ କହିଲା—କାହିଁକି ଏତେ ଡେରି ହଉଥିଲା ଶୁଣେ ?

ଖୁବ୍ ସଙ୍କୋଚରେ ଧୀର ଗଳାରେ ରମୁ କହିଲା—ରାଗନି ଅପା । ଏଇ ଲୁଚି କେତେପଟ ଗୁଣୁଥିଲ ଯେ, ସେଥିପାଇଁ ଟିକେ ଡେରି ହୋଇଗଲା ।

କଲ୍ୟାଣୀ ଚିହିଁକି ଉଠି କହିଲେ—ମୁଁ ପରା ଜାଣେ, ସବୁ କଥାରେ ତୋ'ର ନଷ୍ଟସ୍ପୃ କିଛି ସଫାଇ ଥିବ । ସେ କ'ଣ ଗଣ୍ଡି ବୁଝାଇପାରୁଛି ? ମଠେଇ !

ଆହତ ସ୍ୱରରେ ରମୁ କହି ଉଠିଲା ବୋଉ !

ଉଃ··· ! ଜଳ ଜଳ କରି ଚାହିଁ ରହିଛୁ କ'ଣ ? ଯା···, ଚଞ୍ଚଳ କଅଣ ଆଣ ।

ନମିର କଥା ଶୁଣି ବାନୁ କହିଲା – ହଁ, ମୁଁ ଆଣୁଛି ଅପା–ଆଣୁଛି । ତମେ ହାତ ଧୋଇ ବସ ନା, ମୁଁ ଏଇ ସାଙ୍ଗେ ସାଙ୍ଗେ ଆଣୁଛି ।

ତା'ର କଥା ନ ସରୁଣୁ ପବନ ପରି ଡେଇଁ ଡେଇଁ ପାହାଚ ଟପି ବାନୁ ଧାଇଁ ଆସିଲା ରୋଷେଇ ଘରକୁ । ସେ'ତ କେବେ ଚାଲେନା, ପ୍ରାୟ ଦଉଡ଼େ । କେବେ ଧୀର ହୁଏନା । କେବେ ଥକି ପଡ଼େନା । କେବେ କ୍ଳାନ୍ତ ଅନୁଭବ କରେନା । ସେଥିରେ ପୁଣି ନମି ଅପା ତାକୁ ଏତେ ଝିଅଙ୍କ ଆଗରେ ଗାଳି ଦେଉଛି ?

ହଉ କହୁ··· ! କିଏ ଧରୁଛି ତା' କଥା ? ବାନୁ ହସି ଦେଲା ।

ଖୁବ୍ ଖୁସିରେ ଗୁଣୁଗୁଣୁ ଗୀତ ବୋଲି ବାନୁ ଟ୍ରେ'ରେ ଜଳଖିଆ ସଜାଡ଼ିନେଲା । ଲୁଚି କେତେ ପଟ ଲେଖା, କଣ୍ଟା ମାଂସ କୁର୍ମା, ସିଙ୍ଗଡ଼ା, ଚପ୍ ଆଉ ରସଗୋଲା । ସେ ସବୁ ନିଜ ହାତରେ ଆଜି କରିଛି । ଦିନ ଦି' ପ୍ରହରରୁ ସମସ୍ତେ ଯେତେବେଳେ କିଏ କୁଆଡ଼େ ଖେଳବୁଲି ସପ୍ତମୀକୁ ହସ ଖୁସିରେ କାଟିବାକୁ ତତ୍ପର ହୋଇ ଉଠିଛନ୍ତି, ସେ ରୋଷାଇ ଘରେ ପଶି ତା' ହାତର ଜଳଖିଆ ସମସ୍ତଙ୍କୁ ଖୋଇବ ବୋଲି ବ୍ୟସ୍ତ ହୋଇଛି । ଝାଳ ଲାଳ ହୋଇଛି । ଏ ଝାଳ ଲାଳରେ କ'ଣ ତା'ର ଗର୍ବିତ ହବାର କଥା ନାହିଁ ?

ଏ ପରିଶ୍ରମରେ କେତେ ଯେ ଆତ୍ମତୃପ୍ତି !

ପୁଣି ଲେଟିପଡ଼ି ବୋଲ ମାନୁ ନଥିବା ସେଣ୍ଡି ଗହଳ କେଶଗୋଛକୁ ମୁଣ୍ଡ ଉପରେ ଯେରାଇ ନେଇ ବାନୁ ଖୁବ ଖୁସିରେ ମନେ ମନେ କହିଲା— ତମେ ଯେତେ ଡାକ୍ତରଣୀ ହୁଅ ପଛେ ନମି ଅପା, ମମତା ଓ ସୁବର୍ଣ୍ଣା, ମୁଁ କିନ୍ତୁ ରୋଷେଇ ଘରର ରାଣୀ । ଅନ୍ନପୂର୍ଣ୍ଣା । ହାତ ମୋର ତେଲ ଚିକଟା, ହାଣ୍ଡିକଳା ହଉପଛେ, ମଞ୍ଜୁ ଆଣ୍ଟି—ନେଲ୍‌ପଲିସରେ ରଙ୍ଗ ନହଉ ପଛେ; ଷୀର—ଜାନକୀ ନହଉ; ଖାଲି ଆମୁଲ, ଲୁଣ, ଲଙ୍କାକୁ ମୁଁ ଚକଟି ଦେଲେ ସେ ହୋଇଯିବ ଅମୃତ । ପାଟିରୁ ଜମା ଛାଡ଼ିବନି । ମନ ଖାଲି ହାଇଁପାଇଁ ହବ, ଆଉ ଖାଇବି –ଆଉ ଖାଇବି ।

ଲେଟଣୀ ପାରା ପରି ଡେଇଁ ଡେଇଁ ଦି' ହାତରେ ଦି'ଟା ଟ୍ରେ' ଧରି ତଳୁ ଉପରକୁ ଆସିଲା ବାନୁ । ପୁଣି ଗଲା ଆଉ ଦି'ଟା ପାଇଁ ତଳକୁ । ପୁଣି ଆସିଲା ଟ୍ରେ' ଧରି ଉପରକୁ । ତଳ –ଉପର । ଉପର— ତଳ । ଯାଉଛି । ଆସୁଛି ।

କିନ୍ତୁ ଖୁଲୁ ନାହିଁ । କେବଳ ଧାଇଁବାରେ ହିଁ ଲାଗିଛି ।

ଠିକ୍ ଏତିକିବେଳେ ତା' ହାତ ଧରି ଅନୁ କହି ଉଠିଲା – ତମେ ଆସ ରାନୁ ! ମୋ'ର ସାଥିରେ ବସିବ !

ରାନୁ ଥମ୍‌କିରି ଠିଆ ହୋଇଗଲା । ଚକିତ ହୋଇଗଲା । ସ୍ତମ୍ଭୀଭୂତ ହୋଇଗଲା ।

ଅନୁର କଥାଟା ତାକୁ କିପରି ଅଡୁଆ ଲାଗିଲା । ଜଣାଗଲା ସତେ ଯେମିତି ସେ ଆଜି ଗୋଟାଏ ସମ୍ପୂର୍ଣ୍ଣ ନୂଆ କଥା ଶୁଣୁଛି ।

ଆରେ ଆସନା ! ଏମିତି ଠିଆ ହୋଇଛ କାହିଁକି ? ସେହିପରି ତା'ର ହାତକୁ ଧରି ଅନ୍ତରଙ୍ଗ ସ୍ୱରରେ ଅନୁପମା ରାନୁକୁ ଡାକୁଥିଲା ।

ରାନୁର ଛାତିରୁ ଏକ ଗଭୀର ଦୀର୍ଘଶ୍ୱାସ ଅଜାଣତରେ ବାହାରି ପଡ଼ିଲା । ସେ କ'ଣ କରିବ କିଛି ବୁଝିପାରିଲା ନାହିଁ । ଆଖିରେ ତା'ର ଭୟ, ସଙ୍କୋଚ, ସନ୍ଦେହ, ଲଜ୍ଜା, ଦ୍ୱିଧା, ବ୍ୟାକୁଳତା ସବୁ, ସବୁ ।

ଅନୁପମା, ଉଃ···, ସେ କଅଣ ତା'ର ହାତ ଛାଡ଼ିବନି ?

ରାନୁ ଚାହିଁଲା କଲ୍ୟାଣୀଙ୍କୁ । କଲ୍ୟାଣୀଙ୍କ କପାଳ କେଜାଣି କାହିଁକି କୁଞ୍ଚିତ ହୋଇ ଉଠିଛି ।

ରାନୁ ଚାହିଁଲା ନମି ଅପାକୁ । ତା'ର ମୁଖମଣ୍ଡଳ ଅସମ୍ଭବ ଭାବେ ଗମ୍ଭୀର ହୋଇ ଉଠିଛି ।

ସେ ଖାଇବ ? ନମି ଅପାର ସାଙ୍ଗସାଥୀମାନଙ୍କ ମେଳରେ ବସି ଏକାଠି ଖାଇବ ?

କଲ୍ୟାଣୀ ସେହିପରି ରାନୁକୁ ଚାହିଁଥିଲେ ଆଉ ନମିତା ବି ।

ଅନୁପମା କିନ୍ତୁ ରାନୁର ହାତ ଧରି ଅଳି କରୁଛି ଖାଇବା ପାଇଁ । ହାତ ଧରିଛି । ଭିଡ଼ୁଛି ।

ରାନୁ କଲ୍ୟାଣୀ କିମ୍ବା ନମିତାର ମୁହଁକୁ ଚାହିଁପାରିଲା ନାହିଁ । ତା'ର ଆଖି ତଳକୁ କଲା । କି ଯେ ଏ ଅସ୍ୱସ୍ତି !

ନମିର ସାଙ୍ଗମାନେ କେହି ଖାଇ ନାହାନ୍ତି, ଅନୁପମାକୁ ଅପେକ୍ଷା କରିଛନ୍ତି ।

ସେ ସତେ କ'ଣ ସେମାନଙ୍କ ସାଥିରେ ବସି ଖୁସି ମନରେ, ନିଃସଙ୍କୋଚରେ ବସି ଖାଇପାରିବ ?

ଜମି ଅପା ଡେପୁଟୀ କଲେକ୍ଟରଙ୍କ ଝିଅ ।

ସୁବର୍ଣ୍ଣା ଏକଜିକ୍ୟୁଟିଭ୍ ଇଞ୍ଜିନିୟରଙ୍କ ଝିଅ ।

ମମତା ବଡ଼ ଓକିଲଙ୍କ ଝିଅ ।

ଆଉ...

ଆଉ ସେ... ?

ଉଃ... !

ନାଃ... ! ନା— ନା— ନା ! ସେତ ଖାଇ ପାରିବ ନାହିଁ । ରନୁର ମଥା ସ୍ୱତଃ ନାହିଁ କଲା ।

କଲ୍ୟାଣୀ କହି ଉଠିଲେ— କାହିଁକି ତାକୁ ଟାଣୁଛ କହିଲ ଝିଅ, ସେ କ'ଣ ତମମାନଙ୍କ ସାଥିରେ ଖାଇବ ?

ମ୍ଳାନ ହସି ରନୁ କହିଲା—ଦେଖ ଜନୁ ଅପା, ମୁଁ ଯଦି ତୁମ ସାଥିରେ ବସିବି, ତାହାହେଲେ ତୁମକୁ ପରଷିବ କିଏ ? ଗ୍ଲାସଟିପିଟି ପଳେଇ ଯାଇ ରନୁ କହିଲା - ରୁହ ମୁଁ ତ ପିଇବାକୁ ପାଣି ଆଣିନି । ତମେ ଖାଅ । ମୁଁ ତଳକୁ ଯାଉଛି ।

କୌଣସି ମତେ ନିଜକୁ ବଞ୍ଚାଇବା ପାଇଁ ରନୁ ତଳକୁ ଆସି ସ୍ୱସ୍ତିର ନିଃଶ୍ୱାସ ମାରିଲା ।

ସେମାନେ ବଡ଼ଲୋକଙ୍କ ଝିଅ । କଥା କଥାକେ ଯାହାର ଗଣ୍ଡା ଗଣ୍ଡା ଲୋକ ଛୁଟନ୍ତି ନିକେ ଶୁଭଦୃଷ୍ଟି ଲଭ ଆଶାରେ । ପ୍ରତିପତ୍ତି, ପ୍ରଭୁତ୍ୱ, ଅଜସ୍ର ଭୋଗବିଳାସ ଯେଉଁମାନଙ୍କର ନିଜସ୍ୱ, ସେମାନଙ୍କ ପାଖରେ ବସି ସେ କ'ଣ ସତେ ଖାଇପାରିବ ?

ମନକୁ ମନ ହସି ରନୁ କହିଲା—ଏତେ ବଡ଼ ହେଲଣି ଆସି ଏଇ ଅନୁଅପାଟା, କି ସେ ଦୁଷ୍ଟୀ ! ଦୁନିଆର ଗତି କି ଯେ ବିଷମ, ସେ କଥା କ'ଣ ସେ ଜାଣିପାରୁଛି ?

ରନୁ କେଜାଣି କାହିଁକି ଗୁମ୍ ହେଇଗଲା । ଖୁଣ୍ଟଟାକୁ ଧରି ଅବକାମାରି ଠିଆ ହୋଇଗଲା ।

କାହିଁକି ଯେ ଗୁମ୍ ହେଲା ସେ ? ଆରେ, ସେ ମିଛରେ ଖବୁଛି କ'ଣ ? ଉପରକୁ ଯେ ପାଣି ନବାକୁ ପଡ଼ିବ । କାଳେ କିଛି ପୁଣି ଖାଇବା ଦରକାର ପଡ଼ିପାରେ, ସେ କଥା ତ ବୁଝିବାକୁ ପଡ଼ିବ ।

ଗୋଟାଏ କଗ୍ ଅଉ ଗ୍ଲାସ୍ ଖୁରଣ୍ଟା ଧରି ଉପରକୁ ଉଠିଗଲା ସେ !

ବାବୁ ଶୁଣିଲ କଲ୍ୟାଣୀ କହୁଛନ୍ତି କ'ଣ ? କେମିତି ଲାଗୁଛି, କହୁନ ତ କିଅ । ବାବୁ ପିନା ଏ ଲୁଚ କେତେ ଘଟ ଘୁଣିଛି, କିନ୍ତୁ ଏଇ ମାଂସ, ଚପ୍, ରସଗୋଲା ସବୁ ନମି କରିଛି । ମୋ ନମିତା ସବୁଥିରେ ଫାଷ୍ଟେ ମ ! ଫାଷ୍ଟେ ଫାଷ୍ଟେ ।

ବାବୁ ପେଟ ଭିତରେ ପେଟେ ହସି ଉଠିଲା । ସତରେ ହଉ ବା ମିଛରେ ହଉ ନମି ଅପାର ଗୁଡ଼ାଏ ପ୍ରଶଂସା ଭାଳିବା ବୋଉଙ୍କର ଗୋଟାଏ ସ୍ୱଭାବ ।

ସୁବର୍ଣ୍ଣା କହିଲା—ଯାହା ହଉ ମାଉସୀ, ନମିତା ପରି ତୁମେ ଝିଅଟିଏ ପାଇଛ ଏକା ! ନମିତା ତ ନଆଁ ପାଣିକୁ ତା'ର ଅଧୀନରେ ରଖିଛି ।

ବାବୁକୁ ପାଖରେ ଦେଖି କଲ୍ୟାଣୀ କିଛି କହି ପାରିଲେ ନାହିଁ କେବଳ ଶୁଷ୍କ ହସିଲେ । ବାବୁ ସୁବର୍ଣ୍ଣା ପାଖକୁ ଗୋଟାଏ ରସଗୋଲା ବଢାଇଇଁ ଆସିଲା । କିନ୍ତୁ ହଠାତ୍ ସୁବର୍ଣ୍ଣା କହି ଉଠିଲା—ଲୁଣ !

ବାବୁ ଆଶ୍ଚର୍ଯ୍ୟରେ ପଚାରିଲା—ଲୁଣ ?

ହିଁ—, ଖୁବ୍ ବଡ଼ ଲୁଣ ।

ବାବୁ ଡରିଗଲା ଇସ୍, ଭୁଲ କଲା ସେ ! କେତେବେଳେ ଅମନୋ-ଯୋଗ ହେଇ ଗୋଟାଏ ରସଗୋଲା ଗଡ଼ି ଦେଇଛି ଯେ କେଉଁଠି ଗୋଟାଏ ଲୁଣ ଲୁଚି ରହିଛି । କିନ୍ତୁ ରସଗୋଲାରେ ଲୁଣ ଆସିବ ବା କେମିତି ! ବର୍ତ୍ତମାନ ତୁଏତ କଲ୍ୟାଣୀଙ୍କର ଗାଳିମୁଣି ଫିଟି ପଡ଼ିବ ତା' ଉପରେ । ବ୍ୟସ୍ତବ୍ୟସ୍ତ ହେଇ ମୁହଁରେ ଝଳ ଉଠିଥିବା ଝିଁ‌ାଲ ନଣିକାକୁ ବାବୁ ତା'ର କହୁଣୀରେ ଚୋଣ୍ଟି ଦେଲା ।

ତା'ର ଏଭଳି ଅବସ୍ଥା ଦେଖି ସୁବର୍ଣ୍ଣା ହସି ଉଠିଲା ଖୁବ୍ ଜୋର୍‌ରେ । ନମିତା ମଧ୍ୟ ହସିବାକୁ ଲାଗିଲା । ସମସ୍ତେ ହସିବାକୁ ଲାଗିଲେ ।

କିନ୍ତୁ ସେମାନେ ହସୁଛନ୍ତି କାହିଁକି ? ରସଗୋଲାରେ ଗୋଟାଏ ଅସ୍ୱାସ୍ଥ୍ୟକର ନିଶ ବାହାରିଛି, ଏଥିରେ ତ ସେମାନେ ବିରକ୍ତ ହେବାର କଥା; ଅଥଚ ସେମାନେ ହସୁଛନ୍ତି କାହିଁକି ?

ଦୋଷୀ ପରି କ୍ଷମାପ୍ରାର୍ଥିନୀ ସ୍ୱରରେ ଗିନୁ କହିଲା—ସେଇଟା ଫୋପାଡ଼ି ଦିଅ ଅପା, ମୁଁ ଆଉ ଗୋଟାଏ ଦଉଛି।

ବୋକାଟା କଲେ ! ସୁବର୍ଣା କହିଲା।

ଗିନୁ କିନ୍ତୁ କିଛି ବୁଝିପାରିଲା ନାହିଁ। ବୁଲି ଦେଖିଲା କଲ୍ୟାଣୀଙ୍କର ଆଖିରୁ ନିଆଁ ଝରୁଛି - ନିଆଁ ।

କଲ୍ୟାଣୀ ଦେବୀ ଖେଙ୍କି ଉଠିଲେ—ହଇଲେ ହେ ପୋଡ଼ାମୁହାଁ, କ'ଣ ବୁଦ୍ଧି ଶୁଦ୍ଧି ପୋଡ଼ି ଖାଇଲୁଣି କଲେ !

ଭୀରୁ ଗଳାରେ ଗିନୁ କହିଲା—କୋଉ !

ବୁଝିପାରୁନୁ ?

ଗିନୁ ନାହିଁ କଲା।

ମୁଁ ଜାଣେ ପରା ତୁ ଗୋଟାଏ ଜନ୍ତୁ। ଆରେ ନିଶ—ନିଶ !

ନିଶ ?

ହଁ ନିଶ। ଭଦ୍ରଘରକୁ ଝିଅମାନଙ୍କ ପାଖକୁ ନିଶ ନେଇ କେହି ଆସନ୍ତି ନାହିଁ।

ଗିନୁର ମୁହଁ ଝାଉଁଳି ପଡ଼ିଲା ଅନୁଶୋଚନାରେ।

ଆହା, ହେଇ ଗିନୁ, ସେଇ ଗିନୁଟି, ଯେଉଁ ସେ କର୍ମମୁଖର ମେସିନ୍‌ଟି, ଯାହାର ଦିନ ନାହିଁ, ରାତି ନାହିଁ, ଯେ ତା'ର ପ୍ରିୟ ମୁହଁଗୁଡ଼ିକୁ ଏଇ ନିମି ଅପାର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ନିଯୁକ୍ତ କରିଛି—ଦମ୍ ନାହିଁ—ଫୁର୍ସତ ନାହିଁ, ଆଜି ଦିନଟାଯାକ କେବଳ ନିମିଅପା ଓ ତା'ର ସାଙ୍ଗମାନଙ୍କ ପାଇଁ ନିଜ ହାତରେ ରସଗୋଲା ତିଆରି କରିଛି; ସେ କ'ଣ ଜାଣିଥିଲା ଯେ ଏଇ ରସଗୋଲାରେ ଏମିତି ଗୋଟାଏ ନିଶ ଅବାଞ୍ଛିତ ଭାବେ ବାହାରି-ପଡ଼ିବ ଓ ସେ ସମସ୍ତଙ୍କ ଆଗରେ ଏପରି ଉପହସିତ ହେବ ?

କଲ୍ୟାଣୀ ଉତ୍ତ୍ୟକ୍ତ ହୋଇ କହିଲେ—ଭଦ୍ରଲୋକଙ୍କ ପାଖକୁ ଆସିଲେ ଲୁଗାପଟା ଆଗେ ପରିଷ୍କାର କରି ଆସିବା ଉଚିତ।

ଝନୁ ପାଟଙ୍ଗ ପାଟଙ୍ଗ ତା'ର ଲୁଗାକୁ ଚାହିଁଗଲା— ବନାରସୀ ନୁହେଁ, କାଶ୍ମୀର ସିଲ୍କ ନୁହେଁ— ଦଶ ବାର ଟଙ୍କାର ଗୋଟାଏ ପ୍ରିଣ୍ଟ ଶାଢ଼ୀ । ହେଲେ ବେଶୀ ତ ଅପରିଷ୍କାର ନୁହେଁ । କାମ ଯୋଗୁ କୋଉଠି ଟିକେ ଦାଗ ଲାଗିଯାଇଛି, ଅଉ ଲାଗିଛି ହାଣ୍ଡିକଳା ।

ନମିତା କହିଲା ଆଟଲୋ, ଲୁଗାକୁ ଚାହୁଁଛୁ କ'ଣ ? ମୁହଁକୁ ଦେଖିଛୁ ?

ନାଇଁ ତ ! ଝନୁର ପାଟି ମେଲା ହୋଇଗଲା । ସେ କରୁଣ ଆଖିରେ ଚାହିଁ ରହିଲା ।

ଯା···, ତୋ ମୁହଁକୁ ଦେଖ । କ ମାଙ୍କଡ଼ ପରି ଦିଶୁଛି ।

ସୁବର୍ଣ୍ଣା କହିଲା—କିନ୍ତୁ ସେ ଯା ହାହେଉ ଝନୁ, ତୁମ ମୁହଁରେ କଣ ଦେଖିଲେ, ମୋର ବର୍ତ୍ତମାନ ମନେପଡ଼ୁଛି ଆମ ହିନ୍ଦୀ ଫିଲ୍ମ କଥା । ଆମ ହିନ୍ଦୀ ଫିଲ୍ମର କେତେଟା ସୀନରେ ଠିକ୍ ତମ ପରି ଦିଶନ୍ତି । ଝନୁ ଏତେବେଳେ ଯାଇ ବୁଝିଲା ସେଇ ରହସ୍ୟମୟ କଣ କଥା । କଣ ରସଗୋଲାରେ ରହିନ, ରହିଛି ତା'ର ମୁହଁରେ । କେତେବେଳେ କଳା ଲାଗି ତା'ର ମୁହଁରେ ତା' ଅଜାଣତରେ କଣ ହୋଇଯାଇଛି, ଆଜ ସେଥିପାଇଁ ସମସ୍ତେ ଏତେ ହସୁଛନ୍ତି ।

ଝନୁ ଲାଜରେ ଝାଉଁଳି ପଡ଼ିଲା । ଲଜ୍ଜାର ବଜୁଳ ତା'ର ଦେହକୁ ଥରାଇ ଦେଲା ।

ହେ, ଭଗବାନ··· ! ଏମିତ ବେଶରେ ସେ କେମିତି ଏମାନଙ୍କ ପାଖକୁ ଆସିଲା !

ଝନୁର ମନେହେଲା ପାଞ୍ଚଟି ଲୋକଙ୍କର ଦଶଟି ଆଖି ଯେମିତି ତା' ମୁହଁରେ ସବୁ ଠୁଳ ହୋଇଯାଇଛି । ଝନୁର ମୁହଁ ତାତି ଉଠିଲା । ଦି' ହାତ ପାପୁଲିରେ ତା'ର ମୁହଁକୁ ଘୋଡ଼ାଇ ସେ ବସିଦେଲା ବଡ଼ ସରଳ ଭାବରେ । ଆଉ ଏଠି ଦଣ୍ଡେ ରହିବାକୁ ତା'ର ଆଦୌ ଇଚ୍ଛା ହଉନହିଁ ।

ଇଏ ବି ଗୋଟାଏ ଶ୍ରେଷ୍ଠ ଥଟ୍ଟା—ପରିହାସ !

ସେ ଏ ପରିସ୍ଥିତିରୁ ମୁକ୍ତି ପାଇବା ପାଇଁ ହାତରେ ଦୁଇଡବଟା ଜଳଖିଆ ପ୍ଲେଟ୍ ଧରି ଝଡ଼ବେଗରେ ତଳକୁ ପଳାଇ ଆସିଲା ।

ପାହାଚ ପରେ ପାହାଚ—

ଖୁମ୍ପି ଙ୍କ ଦୁଃଖ ଠିକ୍ ଭାବରେ ବୁଝାଇ କହି ହେବ ନାହିଁ । ତାକୁ ଖୁସି ଲାଗୁଥିଲା ଯେ, ଯାହାହେଉ ସେମାନେ ବଡ଼ ଲୋକର ଝିଅ ହେଲେ ବି ତାକୁ ଠିକ୍ ତାଙ୍କର ଶ୍ରେଷ୍ଠ ଭଉଣୀ ପରି ଦେଖନ୍ତି । ଦୁଃଖ ଲାଗୁଥିଲା ଯେ, ବୋଉ ଖାଲି ମିଛରେ ଏତେ ଜଣଙ୍କ ଆଗରେ ପାଟିକଲେ, ହୁଏତ ସେ ସାଙ୍ଗେ ସାଙ୍ଗେ ତାକୁ କହିପାରିଥାନ୍ତେ ଯେ ତା' ମୁହଁରେ କଳା ଲାଗିଛି !

ଲାଜ ଯେପରି ତା'ର ସର୍ବାଙ୍ଗ ଶରୀରରେ ଅଜାଡ଼ି ପଡ଼ୁଛି ।

ପାହାଚ ପରେ ପାହାଚ ସେ ଓହ୍ଲାଇ ଆସୁଥିଲା । ପ୍ରଥମେ ସେ ଯାଇ ତା'ର ମୁହଁକୁ ଦେଖିବ ଆଇନା ଆଗରେ, ତା' ପରେ ଯାଇ ସାବୁନରେ ସଫା କରିବ ।

ହଠାତ୍ ତା'ର ଗୋଡ଼ ଲୁଗାରେ ଛନ୍ଦି ହୋଇଗଲା । ହାତରେ ପ୍ଲେଟ୍‌ଗୁଡ଼ାକ ଝଣ୍ ଝଣ୍ ଥରି ଉଠିଲେ । ଗୋଡ଼ ଠିକ୍ ପାହାଚରେ ନପଡ଼ି ଭାରସାମ୍ୟ ହରାଇ ଯାଇ ପଡ଼ିଲା ତିନି ଚାରିଟା ପାହାଚ ପରେ । ରିନୁ ଶରୀର ଅସାଡ଼ ହୋଇ ପଡ଼ିଲା ହୁଲ୍‌କରି ସେଇ ପାହାଚ ଉପରେ । ପ୍ଲେଟ୍‌ଗୁଡ଼ାକ ଛିନ୍ନଛତର ହୋଇ ତଳେ ପଡ଼ି ଭାଙ୍ଗିଗଲା ।

ଦାମିକା ପ୍ଲେଟ୍‌ଗୁଡ଼ାକ ଭାଙ୍ଗି ଚୂନ୍‌ଚୂନ୍ !

ରିନୁ ତ୍ରସ୍ତରେ ଥରିବାକୁ ଲାଗିଲା । ନିଜର ଲୁଗା ସଜାଡ଼ିବାକୁ ତା'ର ଆଉ ବେଳ ନାହିଁ । ଦେହରେ କୋଉଠି ମାଡ଼ ଲାଗିଛି, ସେ କଥା ଭାବିବାକୁ ତା'ର ସମୟ ନାହିଁ । କେବଳ ହିଁ ଭୟ । ଉଃ··· । ପ୍ଲେଟ୍‌ଗୁଡ଼ାକ ଭାଙ୍ଗି ଏକବାରେ ଚୂନ୍‌ଚୂନ୍ !

ଗୋଟାଏ ଦାମୀ ଡିନର୍ ସେଟ୍ ଏଥର ଅକାମୀ ହୋଇଗଲା । ବାପା ଯେତେବେଳେ ପୁରୀରୁ କଟକ ବଦଳି ଆସିଲେ, ଏଇ ସେଟ୍‌କୁ ତାଙ୍କର ଅଫିସର କର୍ମଚାରୀମାନେ ବିଦାୟ ସଭାରେ ଶ୍ରଦ୍ଧା ଉପହାର ଦେଇଥିଲେ ।

ରିନୁ ଜଳ ଜଳ କରି ଚାହିଁ ରହିଥିଲା ସେହି ପ୍ଲେଟଗୁଡ଼ାକୁ । ଦୋଷୀଟି ପରି, ନିରାଶ୍ରୟୀଟି ପରି ସେଇ ସିଡ଼ିରେ ଅଡ଼୍କା ମାରି ଠିଆ ହୋଇଥିଲା । ହଠାତ୍ ତାକୁ ଜଣାଗଲା ତା'ର କାନକୁ କିଏ ଖୁବ୍ ଜୋର୍‌ରେ ମୋଡ଼ୁଛି ।

କିଏ ?

ବୋଉ…!

ଗନ୍ଧୁ ବୋକାଟିଏ ପରି କାତର ଆଖିରେ କଲ୍ୟାଣୀଙ୍କ ମୁହଁକୁ ଚାହିଁଲା ।

ପୁରାଣଯୁଗ ଲଙ୍କାର ନାଗପୁର କଲ୍ୟାଣୀ ତା'ର ଆଗରେ ଠିଆ ହୋଇଛନ୍ତି । ରକ୍ତଗୁଞ୍ଜଳ ଦେଖାଉଛନ୍ତି । ଆଖିରୁ ଝରୁଛି କେବଳ ନିଆଁର ବନ୍ୟା । ନିଆଁର ବନ୍ୟା ।

ଗନ୍ଧୁର କଣ୍ଠ ଭୟରେ ଶୁଖିଯାଉଛି । ଓଠ ଥରୁଛି । ତା'ର ମୁହଁରୁ ସବୁ ରକ୍ତ ସତେ ଯେପରି ଶୁଖିଯାଇ ମୁହଁକୁ ଶେଥା କରି ଦେଇଛି ।

କଲ୍ୟାଣୀ ଗର୍ଜି ଉଠିଲେ । କହିଲେ—ଖାଇଲାବେଳକୁ ତ କଂସା କଂସା ଭାତ ଗିଳି ଦେଉଛୁ ଲୋ ସବାଖାଇ ସତ୍ୟାନାଶୀ, ହେଲେ କାମ କଲାବେଳକୁ ହାତ ଗୋଡ଼ରେ ତୋର ବଳ କ'ଣ କୁଆଡ଼େ ଉଭେଇ ଯାଉଛି ଚୂଲପଶି, ଜଳକ ?

ଗନ୍ଧୁ କିନ୍ତୁ କିଛି କହିପାରୁ ନ ଥିଲା । କଲ୍ୟାଣୀଙ୍କ ପାଖରେ ସେ ସ୍ଥାୟୀ ବି କିଛି କୁହେ ନାହିଁ । ତାଙ୍କୁ କିଛି ଶୁଣାଇବାର ପ୍ରୟୋଜନ ଯେପରି ନ ଥାଏ, କିନ୍ତୁ ଥାଏ କେବଳ ଗୁଡ଼ାଏ ଶୁଣିବା—ଗୁଡ଼ାଏ ଶୁଣିବା ଏଇ ଗନ୍ଧୁର ।

ହାତ ଆଠଦଶ ଯାଇନାହିଁ । ଗୋଟାଏ ପାଣିଗରାକୁ ମୁଣ୍ଡରେ ଆଣୁ ଆଣୁ ପକାଇ ଦେଲୁ ଯେ ଗରାଟା ଭାଙ୍ଗି ଦ'ଗଡ଼ ହୋଇଗଲା ।

ଶିଉଳରେ ମୋ ଗୋଡ଼ ଖସିଯାଇଥିଲା ବୋଉ !

ମୋ ମୁହଁ ଉପରେ ଜବାବ୍ । ହଇଲୋ ! ମୋ ମୁହଁ ଉପରେ ପୁଣି ଜବାବ୍ । କଲ୍ୟାଣୀଙ୍କର ସବୁ ରକ୍ତ ତାଳୁରେ ଚଢ଼ିଗଲା । ସେ ଗନ୍ଧୁକୁ ଟାଣିଆଣି ପହାଚ ଉପରୁ ତଳକୁ ପେଲିଦେଲେ ।

ଗନ୍ଧୁ କିନ୍ତୁ ପଡ଼ି ନ ଥିଲା । ପାହାଚର ବାଡ଼କୁ ଧରି ନିଜକୁ ସମ୍ଭାଳି ନେଲା । ସେ କାନ୍ଦିଲା ବି ନାହିଁ । ତା'ର ଆଖିରେ ଲୁହ ବଦଳରେ ଝଲି ଉଠୁଥିଲା ସବୁ ଦୁଃଖ, ସବୁ କଷ୍ଟକୁ ସହିବାର ପ୍ରତ୍ୟୟ ତା'ର ଆଶା । ସେ କେବଳ ଲୁଗାର କାନିକୁ ହାତର ଆଙ୍ଗୁଠିରେ ଗୁଡ଼ାଇ ଗୁଡ଼ାଇ ସହିନେଲା ଏତେ ବଡ଼ ଆଘାତ । ଭଗବାନ ବୋଧହୁଏ ସେ ଜନ୍ମ ହେଲାବେଳେ ଗୁଡ଼ାଏ ସହିବାର ଶକ୍ତି ତାଙ୍କୁ ଦେଇଛନ୍ତି ।

ସତେ ଯେପରି ସେ ସର୍ବଂସହା ଧରିତ୍ରୀ ।

ପାଟିକରି କଲ୍ୟାଣୀ କହିଲେ—ଯେତେ କହିଲେ ବି ସୁଦ୍ଧା ତୋ' ଆଖିରେ କ'ଣ ପାଣି ଅଛି କଲେ ପଥର ? ପିଠି ତୋ'ର ତ କୁମ୍ଭୀର ଚମଡ଼ା । ତତେ ଗାଳି ଦେଲେ ବି ସୁଦ୍ଧା ତୁ ଟିକେ ହେଲେ କାନ୍ଦିବୁନି ।

ରାନୁ କିଛି ନ କହି ତଳେ ପଡ଼ିଥିବା କାଚଖଣ୍ଡମାନ ଉଠାଇବାକୁ ଲାଗିଲା ।

କଲ୍ୟାଣୀ ଅନ୍ୟୋନ୍ୟପାୟ ଭାବେ ଉପରକୁ ବକ ବକ ହୋଇ ଚାଲିଗଲେ ।

ଏହି ସମୟରେ ସେପାଖ ଘରୁ ସୁବୋଧ ଆସି କହିଲା—ରାନୁ, କ'ଣ ହେଲା କି ?

କିଛି ନାହିଁ ସୁବୋଧବାବୁ !

କିନ୍ତୁ ମା' ଯେ ପାଟି କରୁଛନ୍ତି । ତମେ ଏଇ ପ୍ଲେଟ୍‌ଗୁଡ଼ା ଭାଙ୍ଗି ଦେଲ ପରା !

ହୁଁ··· ।

ଆଜି ପରି ଦିନରେ ବିଶେଷ କରି ଦଶହରାଟାରେ ମା' ଏମିତି ପାଟି କରିବାଟା—

ଦେଖନ୍ତୁ ସୁବୋଧବାବୁ, ଆପଣ ମିଛଟାରେ ବୋଉ ପ୍ରତି ଆକ୍ଷେପ କରୁଛନ୍ତି । ବୋଉ ତ ମତେ ଗାଳି ଦେଇନି !

ତେବେ ?

ହସି ହସି ରାନୁ କହିଲା, ବୋଉ ଗାଳିଦେବ କାହିଁକି ? ମୁଁ ତ ଅସାବଧାନତା ଯୋଗୁଁ ଗୁଡ଼ାଏ ଦାମିକା ପ୍ଲେଟ ଭାଙ୍ଗିଦେଲି ।

କିନ୍ତୁ···

ଦେଖନ୍ତୁ ସୁବୋଧବାବୁ, ସେ ମୋ ବୋଉ !

ସୁବୋଧ ଆହତ ହେଲା ।

ରାଗିଲେ କି ? ରାନୁ ତା'ର କଣ୍ଠକୁ ସମ୍ଭାଳିନେଇ ଧୀରେ ହସି ପ୍ରଶ୍ନକଲା ।

କାହିଁ, କାହିଁ ତ··· !

ଆପଣ ଯଦି ରାଗିବେ, ତେବେ ଏ ଦୁନିଆରେ କଉଣ ଅଛି ସୁବୋଧବାବୁ କୁହନ୍ତୁ, ଯାହାକୁ ଦେଖି ମୁଁ ଖୁସି ହେବ ?

ସୁବୋଧ କହିଲ—ଦେଖ ରାନୁ, ମୁଁ ତ ରାଗିନ । କିନ୍ତୁ ମା' ଝିଅଙ୍କର କଥାବାର୍ତ୍ତା ମଝିରେ ମୁଁ ଠିଆହୋଇ ଭୁଲ କରିଛି ।

ସୁବୋଧବାବୁ ! ଆପଣ ମତେ ଭୁଲ ବୁଝନ୍ତୁ ନାହିଁ । ଭୁଲ ବୁଝନ୍ତୁ ନାହିଁ । ମୁଁ କାହାର ହେବି କୁହନ୍ତୁ ତ ! ମୁଁ ଏପରି ଗୋଟାଏ ଅବସ୍ଥାରେ ଠିଆ ହେଇଛି ଯାହାର ହେବାକୁ ଚେଷ୍ଟା କରୁଛି ତା'ର ହେଇ ପାରୁନି । ବୋଉର ହେବାକୁ ଚେଷ୍ଟା କରୁଛି, ବୋଉର ହେଇ ପାରୁନି । ଆପଣଙ୍କର ହେବାକୁ ଚେଷ୍ଟା କରୁଛି, ଆପଣଙ୍କର ବି ହେଇପାରୁନି । ମୁଁ ଆପଣଙ୍କୁ ଯେତେ ଭଲପାଏ ସୁବୋଧବାବୁ, ବୋଉକୁ ବି ସେତିକ—ସେତିକ ଭଲପାଏ !

ସୁବୋଧ ରାନୁକୁ ଚାହିଁ ରହିଥିଲ—ଏତେ ଗାଳି ପରେ, ଏତେ ଅସହନୀୟ ବ୍ୟବହାର ପରେ ରାନୁର ଏଇ କଲ୍ୟାଣୀଙ୍କ ପ୍ରତି ସ୍ନେହ ସେହିପରି ଅଟଳ ।

ଇଏତ କିଛି ନୂଆ କଥା ନୁହେଁ । କାରଣ ଥାଉ ବା ନ ଥାଉ, ଅନେକ ସମୟରେ କଲ୍ୟାଣୀ ରନୁ ଉପରେ ଏହିପରି ରାଗିଉଠନ୍ତି । ଏଥିପାଇଁ ରନୁ କଲ୍ୟାଣୀଙ୍କ ପ୍ରତି ବିରକ୍ତ ହେଇ ଉଠିବ ବା କାହିଁକି ? ପିଲଟି ବେଳୁ ତ ଏକଥା ରାନୁର ଦେହସୁହା ହେଇଗଲଣି । ପ୍ରଥମେ ପ୍ରଥମେ ସେ ପିଲବେଳେ କାନ୍ଦି ଉଠୁଥିଲ । କିନ୍ତୁ ବର୍ତ୍ତମାନ ସେସବୁ ନାହିଁ । ସବୁଥିକ ପଥର ।

ହୁଏତ ବୋଉ ତାକୁ ଆଜି ପ୍ରଶଂସା କରିଥାନ୍ତେ । ତାଙ୍କରିମାନଙ୍କ ପାଇଁ ତ ସେ ଆଜ ଦ' ପହରଟା ସାରା ଚୁଲି ଫୁଙ୍କି ଫୁଙ୍କି ଆଖିରୁ ପାଣି ବୁହାଇଛି ! କେହି ତାକୁ ଟିକେ ସାହାଯ୍ୟ କରିନାହାନ୍ତି । କେହି ପାଣି-ଟୋପାଏ ମଇଦାରେ ଦେଇ ନାହାନ୍ତି କି ଚୁଲିରେ ଜାଳ ଖଣ୍ଡେ ଦେଇ ନାହାନ୍ତି । ନିଜ ହାତରେ ସେ ମସଲ ବାଟିଛି । ମଇଦା ଦଳିଛି । ମାଂସ କରିଛି । ସିଙ୍ଗଡ଼ା କରିଛି । ଚପ୍ କରିଛି । ଛେନା ପାଗରେ ଛେନା ପକାଇ ରସଗୋଲ କରିଛି । ମୁଣ୍ଡ ବାନ୍ଧିବାକୁ ବେଳ ପାଇନି । ଆହା···ଏତେ ଲମ୍ବବାଳ, ବନେହେଲେ ରିବନ ଖଣ୍ଡେ ପାଇଥାନ୍ତା । ବାନ୍ଧିବୁନ୍ଧି ଜୁଡ଼ାଟିଏ ପକାଇଥାନ୍ତା । କିନ୍ତୁ କିଛି ନାହିଁ—କିଛି ନାହିଁ । ମୁଣ୍ଡ ବାନ୍ଧିବାକୁ ବେଳ

ପାଇନ । ଭଲ ଲୁଗାଟିଏ ପିନ୍ଧିବାକୁ ମନ କରନ । ସୁଡ଼୍ ବୁଡ଼୍ ଖାଲରେ ସାର୍ ବ୍ଲାଉଜ୍ଟା ତନ୍ତ'ଇ ଦେଇଛନ୍ତି । ସମସ୍ତେ ଯେତେବେଳେ ପୂଜା ବାସର ପଇଁ ନୂଆ ଲୁଗା ପିନ୍ଧି ମୁହଁରେ ଠୋପି ଠୋପି କଜ୍ଜଳ ଟିକା, ଚନ୍ଦନ ଟିକା ଆଙ୍କି ପ୍ରଜାପତି ପରି ଉଡ଼ିଇଁ ବୁଲୁଛନ୍ତି, ସେ ସେତେବେଳେ ସେପଟେଇ ଘରର ବୃହତ୍କାନ୍ଥର ଅଳନ୍ଧୁ ଯୋଗୁ, ଧୂଆଁ ଯୋଗୁ ଅନ୍ଧକୂପର ଚଉହଦୀ ଭିତରେ ମୁହଁରେ ହାଣ୍ଡିକଳା ବୋଳିଛନ୍ତି ।

କେଉଁଥିପାଇଁ ?

ଖାଲି ସମସ୍ତଙ୍କ ମୁହଁରେ ଟିକେ ହସ ଦେଖିବା ପାଇଁ ସିନା ! ଖାଲି ଟିକେ ପ୍ରଶଂସା ପାଇବା ପାଇଁ ସିନା !

ନାଃ ! ସେ ତ କେବେ ଏକଥା ବି ବୁଝିନ, କିଏ ତାକୁ ପ୍ରଶଂସା କରୁ । ଆଶା ବି ସୁଦ୍ଧା କରନ ।

ସେ କାମ କରିବ । ପଡ଼ି ଉଠି କାମ କରିବ । ନାହିଁ ଦିନ—ନାହିଁ ରାତି । ନାହିଁ ବେଳ ଅବେଳ । ନାହିଁ ଆପତ୍ତି ଅଭିଯୋଗ । ଖାଲି କାମ ।

ସୁବୋଧ ତୃପ୍ତିର ହସ ହସି କହିଲା— ରାନୁ, ତମ ମୁହଁଟାକୁ ଦେଖିଛ ? ଆରେ, କେତେ ବଡ଼ ଜଣ ।

ଏଇ କଥା ପଦକରେ ରାନୁର ମୁହଁରେ ଯେମିତି ହଜାର ଫୁଲର ଅତର ଚହଟି ଗଲା !

ସୁବୋଧବାବୁ ବି ଏଇ ଜଣ ଦେଖି ହସୁଛନ୍ତି ।

ସବୁ ଦୁଃଖ, ମାନ ଅପମାନ ହଠାତ୍ ଯେମିତି ରାନୁ ଭୁଲିଗଲା । ହଠାତ୍ ତା'ର ମନ ଯେପରି କଷଣ ନିପୀଡ଼ିତ ଚଲାଭୂଇଁର ଏକ କଅଁଳ ସଜ ଛନ ଛନ ଦୁବା ପରି ଚେଇଁ ଉଠିଲା ।

ରାନୁ କାଚଖଣ୍ଡମାନ ହାତରେ ଧରି ସୁବୋଧ ପାଖରୁ ଧାଇଁଗଲା ପବନ ବେଗରେ ।

ବାରଣ୍ଡାରେ ଲାଗିଥିବା ଦର୍ପଣରେ ଦିଶୁଛି ତା' ମୁହଁ । ସେ ଠିଆ ହୋଇଗଲା !

ଆରେ, କେଡ଼େ ବଡ଼ ଯେ ଏ ଜଣ !

ହଠାତ୍ ତା'ର ସୁବର୍ଣ୍ଣାର କଥା ମନେପଡ଼ିଲା । ସୁବର୍ଣ୍ଣା କହୁଥିଲା, କିନ୍ତୁ ସେ ଯାହାହେଉ ବିନୁ, ତୁମ ମୁହଁର ନଣ ଦେଖିଲେ, ମୋର ଏଇ ବର୍ତ୍ତମାନ ମନେପଡ଼ୁଛି ଆମ ହିନ୍ଦୀ ଫିଲ୍ମ କଥା । ଆମ ହିନ୍ଦୀ ଫିଲ୍ମର କେତେଟା ହିରୋ ଠିକ୍ ତୁମରି ପରି ଦିଶନ୍ତି ।

ବିନୁର ପାତଳା ଓଠରୁ ଝରିଗଲା ହସର ମୁକ୍ତା । ମୁକ୍ତା । ମୁକ୍ତା ।

ବିନୁ ଦେଖିଲା—ସୁବୋଧ ବି ତାକୁ ଚାହିଁ ହସୁଛି ।

ଆରେ ବଡ଼ ଦୁଷ୍ଟ... !

ବିନୁକୁ ଲାଜ ଲାଗିଲା । ସୁବୋଧ ମୁହଁରୁ ଆଖି ଫେରାଇ ସେତେବେଳେ ଆକାଶକୁ ଚାହିଁଲା, ଦେଖିଲା—ଗୁଆ ଗଛରୁ ସପ୍ତମୀ ଚନ୍ଦ୍ର ମୁଠାଏ ହସର ଜୋଛନା ପରି ତା'ରି ଉପରକୁ ଫୋପାଡ଼ି ଦେଇ କରି କରି ହସି ଲୋଟିପଡ଼ୁଛି ଗହଳପତ୍ର ଫାଙ୍କରେ... ।

ସୁବୋଧ ଉପରେ ଗୋଟାଏ ତେରଛା ଚାହାଣିର ଛୁରୀ ପକେଇ ଦେଇ ବିନୁ ହସି ହସି ପଶିଗଲା ରୋଷାଇଘର ଭିତରେ ପୁଣି କିଛି ଜଳଖିଆ ଉପରକୁ ନବା ପାଇଁ ।

ଏଇ ଝିଅଟା...

ଏଇ ବିନୁଟା ଯେ କିଏ ? ଏଇ ଝିଅଟା ଯେ କିଏ ?

ନମିତା ଡାକେନା ତାକୁ ଅପା । କିନ୍ତୁ ବିନୁ ଥିଲେ, ପାଖରେ ତାହାର ନ ଥାଏ ଟିକେ ଧୋକ୍କା ।

ଅମିତା ଡାକେନା ତାକୁ, ବିନୁ, ଡାକେ ସେ ବିନୁ ଅପା, ବିନୁ ଅପା । ସେ ଥିଲେ ପାଖରେ ବିନୁର କାମକୁ ମିଳେ ଟିଁ ରଫ୍ତା ।

ବୁଢ଼ା ଡାକେନା ବିନୁ, ଡାକେ ସେ ବିନୁ ଅପା । ତା'ର ସକଳ ଦୁଃଖର ଅମା ରଜନୀରେ ସେ ସାକ୍ଷାତ୍ ସୁନା ଚମ୍ପା—ଏଇ ତା'ର ବିନୁଅପା ।

କାନୁ ସାନୁ ସତେ ଯେ ସେ କିଏ ?
କଲ୍ୟାଣୀଙ୍କର କ'ଣ ସେ ଝିଅ ?
ହଁ ଝିଅ ।
ନା' ତ !
ତେବେ କ'ଣ ସେ ଗୃହକର୍ମୀ ?
ହଁ ଗୃହକର୍ମୀ ।
ନା, ତ !
ତେବେ ? ତେବେ ?

ଏଇ—ଏଇମିତି । ମାନେ ସେ ଏ ଘରର ଯେ କିଏ ହଠାତ୍ ବୁଝାଇ ହବ ନାହିଁ ।

ବିପ୍ରଚରଣ ଯେତେବେଳେ ଅତି ସଗର୍ବରେ, ଅତି ସ୍ନେହରେ ପ୍ରାଣର ପ୍ରତିଟି ମମତା, ବାତ୍ସଲ୍ୟ ଦେଇ ତାକୁ ଝିଅଟି ପରି କରି ତାଙ୍କ କୋଳରେ ବଢ଼ଇବା ପାଇଁ ନେଇ ଆସିଥିଲେ, ସେଇ ସାନୁ ବିପ୍ରଚରଣଙ୍କର କୋଳରେ ନ ବଢ଼ି, ବଢ଼ି ଉଠିଲା ଅଇଁଠା ସଙ୍ଗୁଡ଼ି ପାଖରେ, ବାସନ ମଜା କୁଣ୍ଡ ପାଖରେ, ପଶୁ ନଳା ନର୍ଦ୍ଦମା ପାଖରେ । କେଜାଣି କପରି ସମସ୍ତଙ୍କର ଅଲକ୍ଷ୍ୟରେ ଝିଅ ହଉ ହଉ ଗୃହକର୍ମୀ ହେଇଗଲା ।

ଅଥଚ ସେ ଏ ଘରର ଗୃହକର୍ମୀ ନୁହେଁ । ଗୃହକର୍ମୀ କହିଲେ ଭୁଲ ହେବ । ସେ ଏ ଘରର ଝିଅ ବି ନୁହେଁ । ଝିଅ କହିଲେ ବି ଭୁଲ ହବ । ସେ ଏଇ—ଏଇମିତି··· । ମିଶାମିଶି । ସବୁ । ସବୁକିଛି । ପୁଣି ହ କିଛି ନୁହେଁ ।

ସାନୁ······ !

ଜୀବନର ଚଲାବାଟ ତା' ପାଇଁ ସିଧା ସଳଖ ନ ଥିଲା । ସରଳ ନ ଥିଲା । ଗୁଡ଼ାଏ ଖାଲ ଢ଼ିପ ମାଣ, କଣ୍ଟା ଝଂଟା ସେଇ ଅଙ୍କାବଙ୍କା ବାଟଟି ସାରା ପୂରି ରହିଥିଲା । ଗୋଲାପ ତଳପରି ପଥ ନୁହେ, ସର୍ପ ସ୍ତ୍ରୀ କଙ୍କରିଳ ପଥ । ମଝିରେ ମଝିରେ ଗୋଟାଏ ଗୋଟାଏ ଝାଙ୍କ ଅନ୍ଧ ମୋଡ଼ ତା'ର ସାବଲୀଳ ସ୍ୱଚ୍ଛନ୍ଦ ଗତିକୁ ଭୂମୁକ ଭାବେ ପରାହତ କରି ଗଢ଼ିଥିଲା । ସେ ସେହି ନିର୍ଜନ ପଥରେ ଅସହାୟାଟି ପରି ହାତ ମେଲି ଧାଇଁଥିଲା କାହା ଘୁଡରେ ଆଶ୍ରା ପାଇଁ ଧୂଳି ଧୂସର ହେଇ, ଦୁଃଖଦୁର୍ଦ୍ଦଶାର ଡ଼ିମା ପଥର

ଗୋଡ଼ ଉପରେ । ଏକ ନବଶ୍ରସ୍ତୀ ଶିଶୁ । ଆଖିର ଲୁହ ତା'ର ଗାଲ ଉପରେ ଶୁଖିଯାଇଥିଲା ଦୁ'ଧାର ହୋଇ । କିନ୍ତୁ ଆଗରେ ସେଇ ବ୍ଲାଇଣ୍ଡ କର୍ଭ । ବ୍ଲାଇଣ୍ଡ୍ କର୍ଭ । ଅସହାୟତା'ର, ନିର୍ଯ୍ୟାତନାର, ନୈରାଶ୍ୟର ନିର୍ମମ ବ୍ଲାଇଣ୍ଡ କର୍ଭ । ସେ ସେଇ ଜନଶୂନ୍ୟ ବ୍ଲାଇଣ୍ଡ କର୍ଭ ନିକଟରେ ଠିଆ ହୋଇ ଖାଲି ଆଖି ମଳି ହୁଁ···ହୁଁ···ହୋଇ କାନ୍ଦିଥିଲା, ଶୂନ୍ୟ ଆଖିରେ ଚାରିଆଡ଼କୁ ଚାହିଁଥିଲା, ଆଉ ଜୋରରେ ନୁହେଁ, କ୍ଷୀଣ କଣ୍ଠରେ ଡାକିଥିଲା—ବାପା···! ବୋଉ !

ଠିକ୍ ସେହିଦିନ ସେଇ ଦାରୁଣ ବ୍ଲାଇଣ୍ଡ କର୍ଭ ରାସ୍ତାରେ ଶିଶୁକୁ ଛାତିକୁ ଟାଣି ନେଇଥିଲେ ବିପ୍ରଚରଣ । ତୋଫାନରେ ଝରି ପଡ଼ିଥିବା ଏକ କଅଁଳ ଫୁଲ କଳିକାକୁ ତାଙ୍କ ଜୀବନ ସଂସାରର ଫୁଲଦାନୀରେ ସଜାଡ଼ି ରଖିବା ପାଇଁ ।

ବିଶ୍ୱସ !

ବାରିପାଖ ବାରଣ୍ଡାରେ ଖରା ଲେଉଟାଣି ମହଲଣ ବେଳ ବୁଡ଼ରେ ନିଜର କ୍ଳାନ୍ତ ଦେହକୁ ଇଜିଚେୟାର ଉପରେ ବିପ୍ରଚରଣ ଶୁଆଇ ନଥନ୍ତି, ଠିକ୍ ସେତିକିବେଳେ ତାଙ୍କ ଆଖି ଆଗରେ ନାଚି ଉଠେ ଖଡଗଡାତଳ ବାରମାସୀ ପିଜୁଳି ଗଛଟା । ସେ ସେହି ଗଛଟାକୁ କିଛି ନବୁଝିଲା ପରି ବଲବଲ ଚାହାଁନ୍ତି । ସେତେ ଯେପରି ସେ ପିଜୁଳି ଗଛଟାର ପ୍ରତି ପତ୍ରରେ ପତ୍ରରେ କଅଣ ଖୋଜିବାରେ ଲାଗିଛନ୍ତି ; ଅଥଚ ପାଉ ନାହାନ୍ତି । କାହିଁ କେଉଁଠି ଏଇ ପିଜୁଳି ଗଛରେ କିଏ ଯେମିତି ଲୁଚି ରହିଛି । ଏହିପରି ଚାହିଁଥିଲା ବେଳେ ତାଙ୍କ ଛାତିରୁ ଏକ ତପ୍ତ ଦୀର୍ଘଶ୍ୱାସ ବାହାରି ପଡ଼େ । ସେ କହି ଉଠନ୍ତି—ଆହା, ବିଶ୍ୱସ !

ଏଇ ସେଇ ପିଜୁଳି ଗଛ ।

ଖଡଗଡାରେ ବଢ଼ି ଉଠିଛି । ତା'ର ଚାରିପାଖେ ଅଳିଆ ଆବର୍ଜନା ।

ସେଦିନର ସେଇ ପିଜୁଳି ଗଛକୁ ଚିହ୍ନି ହେଉନି । ପରିବର୍ତ୍ତନ । ଘୋର ପରିବର୍ତ୍ତନ ଚାରିଆଡ଼େ ।

ସେଦିନ ଥିଲା ଜମାରୁ ଫୁଟେ । ଆଜି ହୋଇଛି ଘାର୍ଦ କୋଡ଼ିଏ ପଚିଶ ଫୁଟ । ସେଦିନ ତା'ର ଦେହରେ ଥିଲା ଜମା ଆଠଦଶଟି ପତ୍ର, କିନ୍ତୁ

ଆଜି ତା'ର ଦେହରେ ହଜାର ହଜାର ପତ୍ର । ଅସଂଖ୍ୟ । ଅସଂଖ୍ୟ । ଆଜି ସେ ଫୁଲରେ ଲାଜ ପଡ଼ୁଛି । ଫଳରେ ନଇଁ ନଇଁ ପଡ଼ୁଛି ।

ଶ୍ୟାମଳ ଶାଦ୍ୱଳ ପିଜୁଳି ଗଛ ।

ତା'ର ଗୋଟିଏ ପିଜୁଳିରେ ପେଟ ଭର୍ତ୍ତି । ଖୁବ୍ ମଧୁର । ସୁନ୍ଦର । ନାଲି, ରକ୍ତବର୍ଣ୍ଣ । ଟହ ଟହ ।

କିନ୍ତୁ ସେ ସେଥିପାଇଁ ବଢ଼ି ଉଠିଛି ଗୃହଆଡ଼େ ଆବର୍ଜନା, ଅରମା, ଅଳିଆ ଭିତରେ । ଖତଗଦା ଭିତରେ ।

ଏଇ ପିଜୁଳି ଗଛଟା ବିପ୍ରଚରଣଙ୍କ ବାଡ଼ିର ଶୋଭା ବଢ଼ାଇଛି ଭୀଷଣ । ଗଛଟା ବିପ୍ରଚରଣଙ୍କର ଗର୍ବ । ବାଡ଼ିର ସମ୍ପତ୍ତି କହିଲେ ଚଳେ ।

ଯେଉଁଦିନ ହରିପୁରରୁ ବିପ୍ରଚରଣ ରାନୁକୁ ତାଙ୍କ ସଂସାର ଭିତରକୁ ଟାଣି ଆଣିଲେ, ସେଇଦିନ ଏଇ ପିଜୁଳି ଗଛର ଚାରାକୁ ଏଇଠି ରୋପଣ କରିଥିଲେ । ରାନୁର ଆସିବାର ସ୍ମାରକୀ ପାଇଁ ନୁହେଁ । କେବଳ ଏଇଥି-ପାଇଁ ସେ ରୋପଣ କରିଥିଲେ ଯେ, ଆସିଲାବେଳେ ଜଣେ ବନ୍ଧୁ ତାଙ୍କୁ ଏଇ ବାଳୁତ ଗଛଟିକୁ ଦେଇଥିଲେ ଅତି ସ୍ନେହରେ । ସେ ବନ୍ଧୁଙ୍କ ଏଇ ଅଯାଚିତ ଦାନକୁ ବାରଣ କରିପାରି ନ ଥିଲେ । ବାଟଯାକ ଗୋଟିଏ ହାତରେ ବାଳୁତ ରାନୁ, ଅନ୍ୟ ହାତରେ ବାଳୁତ ଏଇ ପିଜୁଳି ଗଛର ଚାରା ।

ଘର ପାଖରେ ଯେତେବେଳେ ବିପ୍ରଚରଣ ରିକ୍ସାରେ ପହଞ୍ଚିଲେ, ରିକ୍ସାରୁ ଓହ୍ଲାଇ ପଡ଼ି କଲ୍ୟାଣୀଙ୍କୁ କହିଲେ—ହେଇ, ଏଇ ରାନୁକୁ କାଖକୁ ନିଅ । ବିଚାରୀ ଏତେବେଳଯାଏ କିଛି ଖାଇନି ।

ରାନୁକୁ ଦେଖି, କଲ୍ୟାଣୀ ପ୍ରଶ୍ନବାଚୀ ଆଖିରେ ବିପ୍ରଚରଣଙ୍କୁ ଚାହିଁଥିଲେ । ବିପ୍ରଚରଣ ସ୍ତ୍ରୀଙ୍କର ଏ ଚାହାଣି ଦେଖି କହିଲେ—ଓଃ, ସେ ସବୁ ପରକଥା । ରାନୁ କିଏ, ତା'ର ପରିଚୟ ମୁଁ ପରେ ଦେବି । ତମେ ଆଗେ ରାନୁର ଖାଇବା କଥା ବୁଝ ।

କଲ୍ୟାଣୀ ରାନୁକୁ କାଖକୁ ନେବାକୁ ଅଡ଼ମଡ଼ ହେଉଥିଲେ ।

ବିପ୍ରଚରଣ କହିଲେ—ଆରେ ଚାହିଁରହିଛ କ'ଣ ? ଏଇଏ ପରା ତମର ଝିଅ, ତୁମେ ତା'ର ବୋଉ ! ବୋଉ !

କଲ୍ୟାଣୀ କିଛି ବୁଝିପାରୁ ନ ଥିଲେ । ଜାଣି କୁଆଡ଼ୁ ଗୋଟାଏ ଝିଅକୁ ଧରି ଆଣି ସ୍ୱାମୀ ତାଙ୍କର ଛାତିକୁ ବଢ଼େଇ ଦଉଛନ୍ତି ।

ତ' ହାତରେ ଏକ ଅଜ୍ଞାତ କୁଳଶୀଳା ଝିଅ ମିଟି ମିଟି ଚାହିଁ ରହି ସ୍ୱାମୀଙ୍କର ପ୍ୟାଣ୍ଟକୁ ଜାବୁଡ଼ି ଧରିଛି । ଦେହଟା ସାରା ଖାଲି ମଳି ବୋଳି ହୋଇଛି । ମୁଣ୍ଡବାଳ ଫୁରୁ ଫୁରୁ । କୋଉଦିନରୁ ତେଲ ଟୋପାଏ ମୁଣ୍ଡରେ ବାଜିନି, ଝିମି ପଡ଼ିଛି । ଦେହଟା ସାରା ଖାଲି ମଳି । ଆଣ୍ଠୁ ଏ ମଳି । ପିନ୍ଧିଥିବା ଫ୍ରକ୍ଟା ସାତ ଛିଣ୍ଡା । କଳା କେତେ । ତେଲଭରା । ଅସନା ।

କଲ୍ୟାଣୀ ଭିତରେ ଶିହରି ଉଠିଥିଲେ । ତାଙ୍କ ସ୍ୱାମୀ କ'ଣ ପାଗଳ ?

କିନ୍ତୁ ରାନୁର ବେକରେ ଥିଲା ଗୋଟିଏ ଚେନ୍, ଆଉ ହାତରେ ପଟେ ଲେଖେ ସୁନାର ଚୁଡ଼ି । ସୁନାକୁ ଦେଖି କଲ୍ୟାଣୀ ଆଶ୍ୱସ୍ତ ହେଲେ ।

କଲ୍ୟାଣୀଙ୍କର ଚକ୍ଷୁ ହେଇ ଚେନ୍, ଆଉ ସୁନାର ଚୁଡ଼ି ଉପରେ ନିବଦ୍ଧ ହୋଇଥିଲା । ସେ କିଛି ଭାବି ପାରୁ ନଥିଲେ । ଏଇ ଝିଅଟା ଭିକାରୀର ଝିଅ ନୁହେଁ, ନିଶ୍ଚୟ କୌଣସି ଭଲ ଘରର ।

କଲ୍ୟାଣୀ ଉବଡବ ଆଖିରେ ରାନୁକୁ ଚାହିଁ ରହିଥିଲେ ।

ରାନୁ ବେଳକୁ ବେଳ ଜୋରରେ ବିପ୍ରଚରଣଙ୍କର ପ୍ୟାଣ୍ଟକୁ ଜାବୁଡ଼ି ଧରିଥିଲା· ତା'ର ଛୋଟ ଛୋଟ ହାତରେ, ଆଉ ତା'ର ଗୋଡ଼ରେ ବିପ୍ରଚରଣଙ୍କର ଅଣ୍ଟାକୁ ଚାପି ଧରିଥିଲା ।

ବିପ୍ରଚରଣ କାଖରୁ ରାନୁକୁ ଟେକି ନେଇ କଲ୍ୟାଣୀଙ୍କ କାଖକୁ ଜୋର ଜବରଦସ୍ତ ଦେଇ କହିଉଠିଲେ—ନିଅ, ଝିଅକୁ ନିଅ । ହଁ— ଶୁଣ । କୋଦାଳଟା କୁଆଡ଼େ ଗଲା ? କୋଦାଳଟା ଆଣ । ଏ ଗଛଟାକୁ ଏଇ ସାଙ୍ଗେ ସାଙ୍ଗେ ମାଟିରେ ପୋତିବାକୁ ପଡ଼ିବ । ପାଣି ନ ଦେଲେ ମରିଯିବ ଯେ !

କଲ୍ୟାଣୀ ଥକକାମାରି ଯାଇଥିଲେ । ତାଙ୍କ ଗୋଡ଼ ଚଳୁ ନ ଥିଲା । ସେ ରାନୁକୁ ଚାହିଁଥିଲେ, ପିଜୁଳି ଗଛକୁ ଚାହିଁଥିଲେ ।

ତାଙ୍କ କାଖରେ ରାନୁ ।

ବିପ୍ରଚରଣ ହାତରେ ପିଜୁଳି ଗଛ ।

ଦୁନିଆଁମାନ ଝାଉଁଳି ପଡ଼ିଗଲା ।

ବିପ୍ରଚରଣ ହସିଉଠିଲେ, କହିଲେ—ଆରେ ଏମିତି ହାଁ' ମାରି ଠିଆ ହେଇଗଲ କାହିଁକି ? ଯାଅ, କୋଦାଳଟା ଆଣ ।

କଲ୍ୟାଣୀଙ୍କୁ କିଛି ଶୁଭୁ ନ ଥିଲା । ହଠାତ୍ ସେ ଦେଖିଲେ ରାନୁ ପାଖରେ ଥାଇ ତାଙ୍କର ହାତକୁ ଅଣ୍ଡାଳୁଛି । ବାବା ଲୋ···ବାବା···!

କଲ୍ୟାଣୀଙ୍କ ହାତ ଭିତରଟା ଥରି ଉଠିଲା । ସେ ତରତରରେ ତାଙ୍କ ହାତରୁ ରାନୁର ହାତକୁ ଛଡ଼େଇନେଲେ ।

ସେଦିନର ଏଇ ସେଇ ପିଜୁଳିଗଛ ।

କେତେ ବର୍ଷ ଭିତରେ ସେହିପରି ବଢ଼ି ବଢ଼ି ଆଜି ଏତେ ବଡ଼ । ସୁଦୀର୍ଘ କାଳ ଭିତରେ ସେ କେତେବେଳେ କେଉଁଠିକି ବଦଳି ହୋଇ ଯାଇଛନ୍ତି, କିନ୍ତୁ ଏ ଗଛଟା ଟଳି ଯାଇନି, ବଢ଼ିଛି ।

ବାପା ··· !

ରାନୁ ଦେଖିଲା ବାପା ନିଷ୍ପଳକ ଚକ୍ଷୁରେ ପିଜୁଳି ଗଛଟାକୁ ଚାହିଁରହି କ'ଣ ଭାବୁଛନ୍ତି ।

ବାପା ··· !

କିଏ ? ବିପ୍ରଚରଣଙ୍କ ଧ୍ୟାନ ଭାଙ୍ଗିଗଲା ।

ସମ୍ମୁଖରେ ତାଙ୍କର ଚା' କପ୍ ଧରି ଠିଆ ହୋଇଛି ରାନୁ । ଶାନ୍ତ ସମାହିତ ସ୍ୱରରେ - ବାପା ! ଚା' ଖାଇବେ ନାହିଁ ?

ଚା' କପ୍‌ଟା ରାନୁ ହାତରୁ ନେଇ ବିପ୍ରଚରଣ କହିଲେ—ତୁ ଏତେବେଳେ ଯାଏ କୁଆଡ଼େ ଯାଇଥିଲୁ ମା' ? ମୁଁ ତ ତତେ କେତେବେଳୁ ଖୋଜୁଛି ।

ବଜାରକୁ ଯାଇଥିଲି ବାପା !

ଆଶ୍ଚର୍ଯ୍ୟ ହୋଇ ବିପ୍ରଚରଣ କହିଲେ—ବଜାରକୁ !

ହଁ ଯାଇଥିଲି, ଏଇ ଗୋଟାଏ ସ୍ନୋ ଡବା ଆଉ ଗୋଟାଏ ତେଲ, ପାଉଡ଼ର ପାଇଁ ।

ବିପ୍ରଚରଣ ହସି ହସି କହିଲେ—ଭଲ, ଭଲ । ତୁ ଏଥର ନିଜେ ଯାଇ ତୋ ପାଇଁ ଏଇ ସ୍ନୋ ପ୍ନୋ କିଣି ଆଣିଛୁ, ଭଲ କରିଛୁ ।

ରାନୁ ହସି କହିଲା-ମୋ ପାଇଁ ନୁହେଁ ବାପା !

ଆଉ ?

ଏଇ ନମି ଅପା ଯିବେ ତାଙ୍କର କୋଉ ସାଙ୍ଗ ଘରକୁ । ସେଇଥିପାଇଁ ତାଙ୍କର ତ ସ୍ନୋ ନ ଥିଲା—ସରିଯାଇଥିଲା, ମୁଁ ଯାଇ ନେଇ ଆସିଲି । ତା ଛଡ଼ା ଖାଲି ସ୍ନୋଟାଏ ଆଣିବି କ'ଣ, ଏଇ ପାଉଡ଼ରଟାଏ—ତେଲଟାଏ—

ଆଉ, ତୋ ପାଇଁ କ'ଣ ଆଣିଲୁ ମା ?

ମୋ ପାଇଁ ? ମୋର ଏଇ ତେଲ, ପାଉଡ଼ର କ'ଣ ହେବ ବାପା ?

ବିପ୍ରଚରଣ ଦେଖିଲେ ରାନୁ ହସୁଛି । ହସ କହିଲେ ଠିକ୍ ହବନି । ପୁଣ୍ୟତୋୟା ମନ୍ଦାକିନୀ କଳ କଳ ନାଦ କରି ବହି ଯାଉଛି ସେ ହସ ଭିତରେ ଯେପରି ।

ବିପ୍ରଚରଣ ନୀରବ, ନିଶ୍ଚଳ ଭାବରେ ରାନୁର ମୁହଁକୁ ଅନୁଧ୍ୟାନ କରିବାକୁ ଲାଗିଲେ । ଚଉକୀର ବାଡ଼ାକୁ ଗୋଟାଏ ହାତରେ ଆଉ ଅନ୍ୟ ହାତରେ ଛୁ' କପଟି ଧରି ମୁହଁକୁ ତଳକୁ କରି ରାନୁ ତାଙ୍କର ହସୁଛି ନୀରବରେ, ତୃପ୍ତିରେ ।

ବିପ୍ରଚରଣ କହିଲେ – ତୋର ତେଲ ଦରକାର ନାହିଁ ମା ?

ରାନୁ କହିଲା—ତେଲ ମୋର କ'ଣ ହବ ବାପା ? ନମି ଅପା କଲେଜ ଯାଉଛନ୍ତି ସିନେମା ଯାଉଛନ୍ତି, ବାସ୍ନା ତେଲ ତାଙ୍କର ଦରକାର । ମୁଁ ତ ଘରେ ରହୁଛି, ମୋର ଏ ଦାମିକା ତେଲ କଅଣ ହବ ?

ବିପ୍ରଚରଣ ଦେଖିଲେ—ରାନୁର ମଥାରେ ବେଣୀ ନାହିଁ; ଖଣ୍ଡେ ରିବନ୍ ବି ସୁଦ୍ଧା ନାହିଁ । ନହାତି ସାଦା ସରଳ ଭାବେ ଗଣ୍ଠିଟାଏ ପଡ଼ିଛି । କେରାଏ ବାଳ ଫିଟି ଆସି ମୁହଁରେ ଖେଳୁଛି । ବିପ୍ରଚରଣଙ୍କ ଚିତ୍ତ ଭାରି ହୋଇ ଉଠିଲା ।

ଏଇ ବାଳ ହୁଏତ ଛୁଇଁଥିବ ପ୍ରସାଧାନ । ହୁଏତ ଗୁନ୍ଥି ଥିବ ରଜନୀଗନ୍ଧାଟିଏ, ଚମ୍ପାର ସ୍ତବକଟିଏ ; ଅଥଚ ବୋଧେ ଯମୁନା ଲହଡ଼ି-ଖେଳା ବାଳ !

ରିକ୍ସାରେ ଯାଇଥିଲୁ ?

ବୁଲିକି ଯାଇଥିଲି ବାପା, ବଜାର ତ ଏଇ ପାଖରେ । ମିଛରେ ପଇସା ସିନା ଶ୍ରାଦ୍ଧ ହୋଇଥା'ନ୍ତା ।

ତୁ ବୁଲିକି ଚଲୁ, ବୁଲି ବୁଲି ଗୋଡ଼ ଥକ୍‌କା କଲୁ ତେଲ ପାଇଁ, ଚିନି ପାଇଁ । ଅଥଚ ତୁ ଲଗାଇଲୁ ନାହିଁ । ନମିତା ଲଗାଇଲା ।

ବାପା, ଆପଣ ଏ ସବୁ କଅଣ କହୁଛନ୍ତି ?

କଅଣ ବା କହିବ ମା' । ମୁଁ ଖାଲି ତତେ ଦେଖୁଛି । କିଛି ଖାଇଛୁ···?

ଓଃ ! ଏଇ ପ୍ରଶ୍ନଟା ଯେ କେତେ ସଂକ୍ଷିପ୍ତ ! ଅଥଚ କେତେ ଯେ ଗମ୍ଭୀର !

ନା ! ହଁ ! ହଁ—ହଁ··· !

ରାନୁ ! ଆରେ, ତୁ ମତେ ଲୁଚାଉଛୁ ?

କାନିରେ ମୁହଁକୁ ପୋଛି ରାନୁ ହସି ହସି କହିଲା—ନାଇଁ ତ ବାପା, ଲୁଚାଇବି କାହିଁକି ?

ତୁ ମିଛ କହୁଛୁ ?

ମିଛ ନୁହେଁ ବାପା, ମୁଁ ସତ କହୁଛି । ମୁଁ ତ ଏଇନା ଖାଇକି ଉଠିଛି ।

କହୁ ମା', ତୋ ମୁହଁ ତ କହିଦେଉଛି ତୁ ଯେମିତି ଭୋକିଲା । ମୁହଁ କଳାକାଠ । ଶ୍ରାନ୍ତ—କ୍ଲାନ୍ତ । ଖାଇଲେ ତ ମୁହଁ ଏମିତି ଦିଶେନା ମା' ?

ଶୁଖିଲା ମୁହଁରେ ହସର ରେଖାଟାଣି ରାନୁ କହିଲା—ଆପଣ ଭୁଲ କହୁଛନ୍ତି ବାପା, ମୁଁ ଖାଇଛି—ମୁଁ ଖାଇଛି ।

ବିପ୍ରଚରଣଙ୍କର ଇଚ୍ଛା ହେଉଥିଲା ରାନୁକୁ ଛାତିରେ ନିବିଡ଼ ଭାବେ ଜାକି ଧରି କହିଉଠନ୍ତେ—ମୁଁ ତତେ ଏଠିକି ଆଣି ଭୁଲ କରିଛି ମା'—ମୁଁ ତତେ ଏଠିକି ଆଣି ନିହାତି ଭୁଲ କରିଛି । ଏ ଘରର ତତେ ସମସ୍ତେ କେଳାଇ କାଟିଖାଇଯିବେ, ତୋଠୁ ସବୁ ଲୁଟିନେବେ । ଅଥଚ ତତେ କେହି କିଛି ଦେବେନି । କେହି କିଛି ଦେବେନି ।

ରାନୁ ଚାଲିଗଲା ।

ବିପ୍ରଚରଣ କ'ଣ କହିବେ କହିବେ ହୋଇ ରାନୁକୁ କିଛି କହିପାରିଲେ ନାହିଁ ।

ରାନୁର ପିଠି ବାଟରୁ ଯେତେବେଳେ ଆଖି ଫେରାଇନେଲେ ତାଙ୍କର ଆଖି ପଡ଼ିଲା ପିଜୁଳିଗଛ ଉପରେ ।

ଏଇ ସେହି ପିଜୁଳି ଗଛ !

ଏଇ ପିଜୁଳି ଗଛରେ ସେ ଆଜି ରାନୁ ପିଣ୍ଡଦାନ ପାଣି ଦେଉଥିଲେ ।

ସେତେବେଳେ ଏଇ ପୈତୃକ ଘରଟା ଥିଲା । ତା' ଛଡ଼ା ଥିଲା ଗୋଟାଏ ଚାକିରି—କିରାଣି ଚାକିରି । ଆଜି ସେଇ କିରାଣିରୁ ଡେପୁଟି କଲେକ୍ଟର । ଗୁଡ଼ାଏ ପଦୋନ୍ନତି ।

ରାନୁକୁ ସେତେବେଳେ ଚାରିପାଞ୍ଚ ବର୍ଷ । ଗିଲାସରେ ପାଣି ଟୋପାଏ ସେ ସବୁଦିନ ପିଜୁଳି ଗଛରେ ଢାଳେ, ଆଉ ଆଶାପୂର୍ଣ୍ଣ ଆଖିରେ ଚାହିଁରହେ, ସେଦିନ ଏଇ ପିଜୁଳି ହେବ, ସେ ତାର ନମି ଅପାକୁ ଦେବ—ବୋଉକୁ ଦେବ ।

ପିଜୁଳି ଗଛରେ ତ ପିଜୁଳି ହଉନି ବାପା ?

ରାନୁକୁ କୋଳରେ ଜଡ଼ାଇ ବିପ୍ରଚରଣ କହନ୍ତି—ଏତେ ଛୋଟ ଗଛରେ କ'ଣ ପିଜୁଳି ହୁଏ ମା ? କିଛି ବର୍ଷ ଗଲେ ସିନା ପିଜୁଳି ହେବ । ତୁ ଖାଇବୁ ।

ଆଉ ନମି ଅପା ?

ମୁଁ ତ ନମି ଅପାକୁ ଆଗେ ଦେବି । ତା'ପରେ ବୋଉକୁ । ତୁମକୁ ।

କୋଳକୁ ଟାଣି ବିପ୍ରଚରଣ କହି ଉଠନ୍ତି · କ'ଣ କହିଲୁ, ମତେ ପରେ ଦେବୁ ?

ନା ନା, ତୁମକୁ ଆଗେ ଦେବି—ତୁମକୁ ଆଗେ ଦେବି । ତା'ପରେ ନମି ଅପାକୁ, ତା'ପରେ ବୋଉକୁ ।

ପାଖରେ ଠିଆ ହୋଇଥାନ୍ତି କଲ୍ୟାଣୀ । ମୁହଁରେ ହାତଦେଇ କହନ୍ତି—ବାବାଲୋ ବାବା ! ପିଲାଟାର କି ବୁଦ୍ଧି ! ଏକଦମ ଫାଷ୍ଟ୍ !

ହରପ୍ରଚରଣ ଆନନ୍ଦ ପୁଲକିତ ମନରେ ରାନୁକୁ କୋଳକରି ତାର ଗାଲରେ ଚୁମା ଦେଇ କଲ୍ୟାଣୀଙ୍କ ପରି ଆଶ୍ଚର୍ଯ୍ୟ ହୋଇ ଉଠନ୍ତି । ଏବେ ପାଣି ଦଉଛି । ନିଜେ ଘଣ୍ଟା ଘଣ୍ଟା ଧରି ପିଜୁଳି ଗଛଟାକୁ ଚାହିଁ ରହୁଛି । ପିଜୁଳି କେବେ ହେବ ବୋଲି ଆଶା କରି ଦିନ ଗଣୁଛି, ଅଥଚ ପ୍ରଥମ ପିଜୁଳିକୁ ନିଜେ ଖାଇବାକୁ ଆଶା କରୁନି ।

ଇସ୍...

ସେ ପାଣି ଦେଉଛି ।

ନମିତା କିନ୍ତୁ ପାଣି ଦେଇନି । ବୟସରେ ରାନୁଠାରୁ ଦୁଇତିନି ବର୍ଷ ବଡ଼ ହେଲେ ବି ପଛ ଛୁଣ୍ଡାଇଛି ।

ସେ ପାଣି ଦେଇଛି ।

ନମିତା କିନ୍ତୁ ଅନେକ ସମୟରେ ଡାଳ ଭାଙ୍ଗିଛି ।

ସେ ପାଣି ଦେଇଛି ।

ନମିତା କିନ୍ତୁ ଏ ପିଜୁଳି ଗଛ ସମ୍ପର୍କରେ ଆଦୌ ସଚେତନ ନୁହେଁ । ଗୁଡ଼ାଏ ଅନାବନା ଗଛ ଭିତରେ ଇଏ ବି ଏକ ଅନାବନା ଗଛ । ଆବର୍ଜନା ଭିତରେ ବଢ଼ିଛି । ଏଥିରେ କେବେ କେଜାଣି ପିଜୁଳି ଫଳିବ ? ସେ କେବଳ ଦୌଡ଼ି ଦୌଡ଼ି ଆସେ, ହସି ହସି ହରପ୍ରଚରଣ ଆଉ ରାନୁକୁ ଦେଖାଇ କହେ ଦେଇ, ଏଇ ଗଛକୁ ଉପାଡ଼ିଲି—ଉପାଡ଼ିଲି ।

ଯେଉଁଦିନ ନମିତାର ବେଶୀ ରାଗ, ସେଇଦିନ ଏଇ ପିଜୁଳି ଗଛଟା ଉପରେ ବେଶୀ ଚାନମାରି ।

ପ୍ରଥମେ ଯେଉଁଦିନ ରାନୁ ଏ ଘରକୁ ଆସିଲା, ଘରେ ଗୋଟାଏ ହଇଚଇ ଖେଳିଗଲା । ସାନ ନମିତା । ରାନୁ ପାଖକୁ ଧାଇଁଆସି କହିଲା— ବୋଉ, ଇଏ କଣ ଆମ ଝୁଅ ?

କଲ୍ୟାଣୀ କହିଥିଲେ—ହଁ ଲୋ ମା, ଇଏ ପରା ଆମ ଝୁଅ, ତୋ ଭଉଣୀ ରାନୁ ।

ନମିତା ଖୁସିହୋଇ ରାନୁର ମୁହଁକୁ ଚାହିଁ ରହିଥିଲା ।

ବିପ୍ରଚରଣ ଦୁଇଟି ଝିଅଙ୍କର ସରଳ ନିଷ୍ପାପ ଆଖିକୁ ଦେଖି ଆନନ୍ଦରେ ଆଖିବୁଜି ଦେଇଥିଲେ ।

କଲ୍ୟାଣୀ ରାନୁକୁ ନମିତା ପାଖରେ ବସାଇ ତାର ପାଟିରେ ଘିଅଗୁଣ୍ଡା ବଳ ଖୋଇ ଦେଉଥିଲେ । କହୁଥିଲେ, ଏଇ ଗୁଣ୍ଡାକ, ଏଇ ଗୁଣ୍ଡାକ ଖାଇଦେ ଲୋ ରାନୁ । ଦେଖିଲୁ ନ ଖାଇ ନ ପିଇ ଖରାରେ ତରାରେ ବୁଲି ବୁଲି ତୋ ସୁନାଟିଏ ମୁହଁ କେମିତି କଳା ପଡ଼ିଯାଇଛି ।

ରାନୁ କିନ୍ତୁ କହୁଥିଲା—ନା!, ଆଜ ଖାଇବିନି ।

କଲ୍ୟାଣୀ ରାନୁକୁ ବାଧ୍ୟବାଧକତା କରୁଥିଲେ ।

ରାନୁ ଅଳି କରୁଥିଲା ।

ବିପ୍ରଚରଣ ସେଦିନ ଭାବିଲେ, କଲ୍ୟାଣୀଙ୍କ ପରି ନାରୀଙ୍କୁ ସେ ଗୃହିଣୀ ରୂପେ ପାଇଛନ୍ତି, ଏଇଟା ତାଙ୍କ ପୂର୍ବ ସୁକୃତିର ଫଳ । କିଏ କହୁଛି ରାନୁର ମା' ନାହିଁ ? ରାନୁର ମା'ତ କଲ୍ୟାଣୀଙ୍କର ହୃଦୟରେ ରୂପାୟିତ ହେଉଛି, ତାର ସ୍ନେହ ତ କଲ୍ୟାଣୀଙ୍କ ହୃଦୟରେ ଫଲ୍‌ଗୁରୂପେ ସଞ୍ଚରିତ ହୋଇଛି । ତାଙ୍କର ହୃଦୟର ନିଭୃତତମ ସୂକ୍ଷ୍ମସ୍ଥାନ ସେପରି ବାତ୍ସଲ୍ୟପ୍ରେମର ଅଗଣିତ ଦୀପମାଳାରେ ପ୍ରଜ୍ଜ୍ୱଳିତ ହେଉଛି । ସେଠି ନମିତାର ସ୍ଥାନ ଯାହା, ରାନୁର ମଧ୍ୟ ତାହା । ନମିତାର ହସ ଯେପରି ଅମୂଲ୍ୟ – ହୀରସୁନ୍ଦର; ରାନୁର ହସ ମଧ୍ୟ ସେହିପରି ବହୁବାଞ୍ଛିତ – ମୁକ୍ତାମାଳା ।

ସେଇ ପରିବାରଟି ରାନୁର ବିଷୟରେ ବିଶେଷ ସଚେତନ ହୋଇଉଠିଲେ । ରାନୁ ଖାଇଲା, ଶୋଇଲା କି ନ ଶୋଇଲା, ପିନ୍ଧିଛି କ'ଣ ଏ ବିଷୟରେ ମୁଣ୍ଡ ବହୁତ ଘୂରାଇଥିଲେ । ରାନୁ ସତେ ଯେପରି ତାଙ୍କର ବହୁତ ନିଜର । ନେଉଳ, ପାରା, କୁକୁର କମ୍ବା ବଳେଇ ଘରକୁ ଆସିଲେ ହଠାତ୍ ସମସ୍ତେ ଯେପରି ସଚେତନ ହୋଇ ଉଠନ୍ତି, ରାନୁ ପାଇଁ ସମସ୍ତେ ବ୍ୟସ୍ତ ।

ବାଡ଼ି ବଗିଚାର ଅମୃମାରି ଗଛର ହଳଦୀଫୁଲ ମେଳରେ ରାନୁ ଆଜି ନମି ପ୍ରଜାପତି ଧରି ଖେଳୁଥିଲେ । ଅଫିସରୁ ଫେରି ବିପ୍ରଚରଣ ଯେତେ-ବେଳେ ଗଧ ଖାଟେଣି ଝଟି କ୍ଲାନ୍ତ ହବେ ଫେରିଆସନ୍ତି, ଦେଖନ୍ତି—ରାନୁ ଓ ନମି ଦୁଇଜଣଯାକ ଗୁଡ଼ାଏ ଫୁଲ ଅଣ୍ଟିରେ ପୂରାଇ ହସି ହସି

ଗଡ଼ୁଛନ୍ତି । ନଇଲେ ଫୁଲର ହାର ପିନ୍ଧାଇ ଗୋଟାଏ ପଥରକୁ ଠାକୁର କରି ପୂଜା କରୁଛନ୍ତି ।

ବିପ୍ରଚରଣ ଯେତେବେଳେ ସାଇକେଲରୁ ଓହ୍ଲାଇ ଫାଟକ ଖୋଲନ୍ତି, ଦ'ହାତ ମେଲିଇ ରାନୁ କହିଉଠେ ବାପା ! ବାପା !

କଲ୍ୟାଣୀ ହସି ହସି କହନ୍ତି—ବାବାଲେ—ବାବା··· ! କି ସୁଆଗ ! ଏକଦମ୍ ଫାଷ୍ଟେ !

ନିଜର ପୋଷାକ ପ୍ରତି ଲକ୍ଷ୍ୟ ନ ରଖି ବିପ୍ରଚରଣ ସେଇ ଧୂଳିଧୂସର ରାନୁକୁ କାଖକୁ ଉଠାଇ ନିଅନ୍ତି । ସତେ ଯେପରି ରାନୁର ଚରଣଧୂଳି ତାଙ୍କ ପାଇଁ ତୀର୍ଥଧୂଳି ମହାର୍ଘ—ପବିତ୍ର । ସେ ପକେଟରୁ କିଛି ବିସ୍କୁଟ୍ ପ୍ୟାକେଟ ବାହାର କରି ରାନୁ ହାତରେ ଧରାଇ ଦିଅନ୍ତି । କିନ୍ତୁ ରାନୁ ବିପ୍ରଚରଣଙ୍କ କାଖରେ ସେହିପରି ଥାଇ କହି ଉଠେ—ମୋ ପାଇଁ ତ ବାପା ବିସ୍କୁଟ ଆଣିଲ, ହେଲେ ନମିଅପା ପାଇଁ ?

ବିପ୍ରଚରଣ ତାକୁ ଚିଡ଼େଇ କହନ୍ତି—ନମି ପାଇଁ ତ ମୁଁ କିଛି ଆଣିନି ।

ରାନୁ ବିପ୍ରନରଣଙ୍କର କାଖରୁ ଓହ୍ଲାଇପଡ଼ି କହେ—ତା'ହେଲେ ମୁଁ ଏ ବିସ୍କୁଟ ଖାଇବି ନାହିଁ ବାପା ! ରାଗି ସେ ବିସ୍କୁଟକୁ ଫୋପାଡ଼ି ଦିଏ ।

ବିପ୍ରଚରଣ ଦେଖନ୍ତି ରାନୁ ମୁହଁକୁ ଭାରି କରିଛି । ନମି ମଧ୍ୟ ମୁହଁକୁ ଭାରି କରି ଦୂରେଇ ଠିଆ ହୋଇଛି ।

ପିଲଙ୍କ ସାଥିରେ ଗୋଟିଏ ଗ୍ରେଟିଆ ଖେଳ ଖେଳନ୍ତି ବୋଲି ବିପ୍ରଚରଣ ହସିଉଠନ୍ତି । ଆଉ ପକେଟରୁ ଗୋଟାଏ ଚକୋଲେଟ ପ୍ୟାକେଟ୍ ବାହାର କରି ନମିର ଆଖି ଆଗରେ ନଚାଇ କହନ୍ତି - କହିଲୁ ଏଇଟା କାହାର ?

ନମି ତାଙ୍କୁ କୁଣ୍ଢାଇ ପକାଇ ପ୍ୟାକେଟ୍‌ଟା ନେଇଯାଏ ।

ତା'ପରେ ଚାଲେ ଦୁଇଟି ପିଲଙ୍କର ଖେଳ । ସେ ସେହି ପ୍ୟାକେଟ୍ ଦୁଇଟାକୁ ଛଡ଼ାଛଡ଼ି କରି ଖାଇଯାଆନ୍ତି ।

ଏଇ ଥିଲା ବିପ୍ରଚରଣଙ୍କର ସେତେବେଳର ସଂସାର । ସେଇ ସଂସାରରେ ବିପ୍ରଚରଣ ଅଫିସରୁ ଫେରିଲେ ଶାନ୍ତିରେ ନିଶ୍ୱାସ ମାରୁ-

ଥିଲେ । ଦୁଇଟି ଶିଶୁଙ୍କର ହସ, ଖେଳ, ଆନନ୍ଦ, କୋଳାହଳରେ ସ୍ୱାଗ ନେଇ ସ୍ୱର୍ଗସୁଖର ଆସ୍ୱାଦ ପରିକଳ୍ପନା କରୁଥିଲେ, ସେମାନଙ୍କର ଲଘୁ ଚରଣପାତଧ୍ୱନିରେ ପୁଲକିତ ହୋଇଉଠୁଥିଲେ, ସେତେବେଳର ସେଇ ସଂସାରରେ ପିଜୁଳି ଗଛଟି ଆନନ୍ଦରେ ଶାଖାମେଲି; ପତ୍ର ଥବଇ ନାଚୁଥିଲା ।

ସ୍ୱଳ୍ପ କେବଳ ସ୍ୱିଁ ଜାଣିଥିଲା ଖେଳ, ଖାଇବା, ଶୋଇବା । ବିପ୍ରଚରଣ ଦଶଟାରୁ ଚ ସୂରିଟାଯାଏ ଅଫିସ ଯାଆନ୍ତି, ଏଣୁ ଘରେ ନ ରହିବା ସମୟରେ ଯେ ସ୍ୱଳ୍ପ କ'ଣ କରୁଛି, ସେ ଜାଣିବେ କପରି ? ସେ ତ ସେଇପରି ପ୍ରାୟ ସନ୍ଧ୍ୟାବେଳ ଅଫିସ ଫେରନ୍ତିବେଳେ ଖେଳୁଥାଏ । ମୁଣ୍ଡରେ ରିବନ୍ ଭିଡ଼ିଥାଏ । କପାଳରେ କଳା ଚିତା ଲଗାଇଥାଏ । ଆଖିରେ ଥାଏ କଜ୍ଜଳର ଲଞ୍ଜି । ପିନ୍ଧିଥାଏ ଛିଟ ଫ୍ରକ୍ ।

ବିପ୍ରଚରଣଙ୍କୁ ଦେଖି ତାଙ୍କ ପାଖକୁ ମାଡ଼ିଆସେ ।

ବିପ୍ରଚରଣ ତାକୁ କୋଳକୁ ଉଠାଇ ଗେଲ କରନ୍ତି । ପଚାରନ୍ତି — ଅପା ?

ଇସ୍କୁଲରୁ ଫେରି ତା' ସାଙ୍ଗ ଘରକୁ ଯାଇଛି ।
ତୁ ଏକା ଖେଳୁଛୁ ?
ହଁ ।
ଆଚ୍ଛା ମା' ତୋ'ର ଫ୍ରକ୍‌ଟା ପଛରୁ ଚିରିଯାଇଛି ସେ ?

ହଁ ତ ସେଇଟା କୋଉଦିନରୁ ଚିରିଯାଇଛି । କାଲି ବୋଉ କମି ଅପାର ଗୋଟାଏ ଫ୍ରକ୍‌ରେ ବୋତାମ ଦଉଥିଲା, ମୁଁ ମୋ ଫ୍ରକ୍‌ଟା ଦେଲି ଯେ ସିଲେଇ କରିବା ପାଇଁ ଫୋପାଡ଼ି ଦେଲା ।

ଫୋପାଡ଼ି ଦେଲା ? କ'ଣ କହିଲା ?

କହିଲା— ମୋର ଦିନ ସରୁନି ଯେ, ମୁଁ ଫ୍ରକ୍ ସିଲେଇ କରିବି ? ଆଚ୍ଛା ବାପା, ବଜାରରୁ କାଲି ବୋଉ ଅପା ପାଇଁ ଗୋଟାଏ ଫ୍ରକ୍ କିଣିଛି । ମୋ ପାଇଁ କ'ଣ କିଣା ହବନି ବାପା ?

ତୁ ବୋଉକୁ କହିଲୁନି ମା' ?

ମୁଁ ତ ବୋଉକୁ କହିଥିଲି । ସେ କହିଲା ଯେ ମୋର କୁଆଡ଼େ ବହୁତ ଫ୍ରକ୍ ଅଛି । ମୋର ତ ବାପା ଜମାରୁ ତିନ ଗୁଟା ।

ବିପ୍ରଚରଣ ସେତେବେଳକୁ ଗମ୍ଭୀର ହୋଇ ଯାଇଥିଲେ । କହିଲେ—ତୁ ସ୍କୁଲକୁ ପଢ଼ିବାକୁ ଯିବୁ ମା ?

ଇସ୍କୁଲକୁ ? ଇସ୍କୁଲକୁ ? ମୁଁ ଯିବି ବାପା—ମୋ ପାଇଁ ଗୋଟାଏ ଖୁବ୍ ଭଲ ବହି କିଣି ଆଣିବ, ସିଲଟ, ଖଡ଼ି ବହୁତ—ବହୁତ ।

ହଁ ବହୁତ ଆଣିବି ।

କଲ୍ୟାଣୀ ସେତେବେଳେ ଶୁଣିଲେ ସିନୁ ସ୍କୁଲକୁ ଯିବ, ହସିଲେ । କହିଲେ—ଭଲ ହେଲା । ପିଲାଟା ଇସ୍କୁଲକୁ ଯାଉ । ନମି ଯେତେବେଳେ ଇସ୍କୁଲକୁ ଯାଉଛି, ସିନୁ କଅଣ ଘରେ ବସି ରହିବ ? ଲୋକେ କଅଣ କହିବେ ?

ବିପ୍ରଚରଣ କହିଲେ—ଲୋକେ କ'ଣ କହିବେ, ସେଇଟା ବଡ଼ କଥା ନୁହେଁ କଲ୍ୟାଣୀ । ତମ ମା' ମନ କଣ କହିବ, ସେ କଥା ତମେ ଭାବୁନା କାହିଁକି ?

ମୁଁ ତ ମନା କରୁନି ।

ମୁଁ ଜାଣେ ତୁମେ ମନା କରିବନି । ତମେ ମା । ତୁମ ହୃଦୟରେ ସ୍ନେହର ପ୍ରଶାନ୍ତ ସାଗର । ସେ ସାଗରର ଶୂନ୍ୟସ୍ଥାନ କେବେ ଅପୂରଣ ହୋଇ ରହେନା । ସେଠି ନମିତା ଯାହା, ସିନୁ ବି ତାହା । ନମିତାକୁ ସ୍ନେହକଲେ ଯେ ତୁମର ସ୍ନେହ ଭଣ୍ଡାର ସରିଗଲା, ମୁଁ ଏ କଥା କେବେ ଭାବିନି । ଭାବିବି ଯେ ସିନୁ ପାଇଁ ସେ ସେହିପରି ଅସରନ୍ତି ଭଣ୍ଡାର ହୋଇ ସାଇତା ରହିଛି ।

କଲ୍ୟାଣୀ ହସିଲେ ।

ସିନୁକୁ କୋଳକୁ ନେଇ କହିଲେ—ଆହା ମୋ ଧନର ଗୋଡ଼ରେ କେତେ ଯେ ଧୂଳି ! ଝାଡ଼ି ଦେଲେ ।

ବିପ୍ରଚରଣ ପଚାରିଲେ—ସିନୁ ଖାଇଛି ?

କଲ୍ୟାଣୀ ସାଙ୍ଗେ ସାଙ୍ଗେ ରବୁକୁ କହିବାକୁ ନଦେଇ ଅଭିଯୋଗ ମିଶା ସ୍ୱରରେ କହିଉଠିଲେ—ତୁମେ ତାକୁ ଖୋଇଦିଅ । ମୁଁ କିନ୍ତୁ ପାରିବିନି । ଘଣ୍ଟାଏରୁ ଡାକୁଛି ଖାଇବାକୁ ଯେ, ଆସି ଏତେବେଳ ହେଲଣି, ଅଥଚ ସେଇ ଖେଳ-ଖେଳ । ଏକା ଜିଦ୍ ଖାଇବିନି । ବାବାଲୋ···ବାବା··· ।

ମୁଁ ତ ବୋଲି କହୁଥିଲି—

କଣ କହୁଥିଲୁ ? କହିଲୁ ଯେ ଅପା ଆସୁ । ଅପା ଆସୁ । ହଇଲୋ ମା'—ଗଲୁ , ବାପାଙ୍କ ପାଇଁ ହେଇ ପାଣି ଗିଲାସଟା ଆଣିଲୁ ।

ବିପ୍ରଚରଣ କହିଲେ—ନା, ଥାଉ । ପିଲାଲୋକ ପକାଇଦବ ।

ବିପ୍ରଚରଣ ଉଠିଗଲେ ।

ସେତେବେଳର କଲ୍ୟାଣୀ ଆଜିର କଲ୍ୟାଣୀ ପରି ନ ଥିଲେ । ସେତେବେଳେ ହାତରେ ରିଷ୍ଟୱାଚ ନଥିଲା । ମୁହଁରେ ପାଉଡ଼ର, ସ୍ନୋ ନ ଥିଲା । ଛାତିରୁ ହଜାର ଥର ଶାଢ଼ୀ ଖସି ପଡ଼ୁ ନ ଥିଲା । ମୁଣ୍ଡରେ ଟ୍ରେସେଲ ନ ଥିଲା । ଯୁବତୀ ଥାଇ ବି ମୁଗ୍ଧା ସେ ସେତେବେଳେ ବଡ଼ିସ୍ କ'ଣ ଜାଣି ନ ଥିଲେ । ଫୁଙ୍ଗୁଲା ଦେହ । କଷଣ ପତ୍ନୀ । ହାତରେ ପାଣି କାଚ ଆଉ ରୁପା ଚୁଡ଼ି, ବଟଫଳ ପିନ୍ଧି, ମୁଣ୍ଡରେ ବାଶିତେଲ ଲଗାଇ, ନାକରେ ନୋଲକ, ମୁହଁରେ ହଳଦୀ ଲଗାଇ ସେ ଯେତେବେଳେ ନୂଆ କରି କଟକ ଆସିଥିଲେ, ଡରି ଯାଉଥିଲେ । କବାଟ ଫାଙ୍କରୁ ଜୁକି ଜୁକି ଚାହୁଁଥିଲେ ଏଇ କଟକ ସହର, ଧବଳ ଟଗରକୁ ଦେଖିବା ପାଇଁ, ଆଉ କେତେ-ବେଳେ ଯେ ବିପ୍ରଚରଣ ଅଫିସରୁ ଫେରିବେ ସେଇଆ ଭାବୁଥିଲେ—ଚୁ' ଚୁ' ହଉଥିଲେ ।

ଏବେ ବିପ୍ରଚରଣ ଦେଖିଲେ ରବୁ ପିଜୁଳିଗଛ ମୂଳରେ ବସିଛି । ନୀରବରେ ଝର ଝର କାନ୍ଦୁଛି, ଆଉ ନିଜ ହାତରେ ତାର ପିନ୍ଧା ଫ୍ରକ୍ କାନରେ ଆଖିରୁ ଲୁହ ପୋଛୁଛି ।

ରବୁ କିଛି କହି ନଥିଲା । ଖାଲି ବିପ୍ରଚରଣଙ୍କୁ ଦେଖି ଘୁଁ ଘୁଁ କାନ୍ଦୁଥିଲା ।

ଅପା ମାରୁଛି ?

ନାଇଁ ।

ତେବେ ?

ବୋଉ ମାରୁଛି । ତମେ ଯେତେବେଳେ ନଥାଅ, ସେତେବେଳେ ବୋଉ ମତେ ମାରେ ।

ବନୁ !

ଏ ବୋଉ କଅଣ ମୋ ବୋଉ ନୁହେଁ ବାପା !

ଗନୁ !

ବିପ୍ରଚରଣ ଆଶ୍ଚର୍ଯ୍ୟଭାବେ ଗନୁକୁ ଚାହିଁଲେ । ମୁହଁରେ ଲୋକ । ଦାଗ ଜଳ ଜଳ ଦିଶୁଛି ।

ବିପ୍ରଚରଣଙ୍କର ନିଜର ଗାଲ ପୋଡ଼ିଉଠିଲା ।

ଏତିକିବେଳେ କଲ୍ୟାଣୀ ଧାଇଁ ଆସି ଗନୁକୁ ଟେକିନେଇ କଅଁଳ ସ୍ୱରରେ କହିଲେ—କଅଣ କେତେବେଳେ ହାତଟା ଉଠାଇଦେଲି ବୋଲି, ସେତିକିବେଳୁ କାନ୍ଦୁଛୁ କଲେ ମା ! ମୋର ଦୁଇ ଆଖିରୁ ତୁ ତ ଗୋଟିଏ ଆଖି । ଆଗ ତୁ, ତା'ପରେ ନମିତା । ଆସିଲୁ, କ'ଣ ଗଣ୍ଡାଏ ଖାଇଦବୁ, କେତେବେଳୁ ଖାଇନୁ ।

ବିପ୍ରଚରଣ ପିଜୁଳି ଗଛଟାକୁ ଚାହିଁଲେ । ପିଜୁଳି ଗଛର ପତ୍ରଗୁଡ଼ିକ ଯେପରି ନୀରବ, ନିଶ୍ଚଳ ଭାବେ ଚାହିଁ ରହିଛନ୍ତି ତାଙ୍କରି ଆଡ଼କୁ ? ବିପ୍ରଚରଣଙ୍କର ମନେହେଲା ପିଜୁଳି ଗଛର ମୂଳ ଗନୁର ଲୁହରେ ଭିଜି-ଯାଇଛି । ପିଜୁଳି ଗଛର ପତ୍ରରେ ପତ୍ରରେ ଶିରାରେ ଶିରାରେ କେବଳ ଗନୁର ଲୁହ । ଉତ୍ତପ୍ତ । ନିଗୃହୀତ । ଅନୁତ୍ତରିତ ।

ପିଜୁଳି ଗଛଟି ସେହିପରି ଠିଆହୋଇଛି । ନୀରବ ।

ପିଜୁଳି ଗଛଟା ଯେଉଁଦିନ ଫୁଟେକରୁ ଦି' ଫୁଟ ଲମ୍ବା ଫୁଟରୁ ତିନି ଫୁଟ ହୋଇଗଲା ବିପ୍ରଚରଣ ଦେଖିଲେ, ତାଙ୍କର ସଂସାର ଅଗଣାରେ ଆଉ ଗୋଟିଏ ଛୋଟ ଝିଅ ଖେଳୁଛି, ଆଉ ତାକୁ କୋଳରେ ଧରି ରାନୁ କହୁଛି କାନ୍ଦନା ଲୋ ଅନୀ, ଚଢ଼େଇ ଦେବି, ପ୍ରଜାପତି ଦେବି, କଣ୍ଢେଇ ଦେବି, ଖେଳିବୁ ।

ବିପ୍ରଚରଣ ତୃପ୍ତିରେ ଆଖିବୁଜି ଦେଲେ—ଆଉ ଗୋଟିଏ କନ୍ୟା । ତାଙ୍କ ଜୀବନ ଉପବନରେ ତିନୋଟି ତିତ୍‌ଲୀ ।

ରାନୁ ହାତରୁ ଅନୀକୁ ନେଇ ବିପ୍ରଚରଣ କହିଲେ ତୋର ପରୀକ୍ଷା ଫଳ ପରା ଆଜି ବାହାରିଲା ମା ?

ହଁ, ମୁଁ ତ ଫାର୍ଷ୍ଟ ହୋଇଛି ବାପା । ରାନୁ କରି କରି ହସି ଉଠିଲା ।

ଫାର୍ଷ୍ଟ୍ ?

ହଁ, ଏକଦମ୍ ଫାର୍ଷ୍ଟ୍ ! କିନ୍ତୁ ଫାର୍ଷ୍ଟ ହୋଇଛି ବୋଲି ଅପା ମତେ ବାଡ଼ଉଛି ।

ବାଡ଼ଉଛି ? କାହିଁକି ବାଡ଼ଉଛି ?

ସେ ତ ଫାର୍ଷ୍ଟ ହୋଇନି । ଖାଲି ସେଇମିତି ପାସ୍ କରିଛି । ମୋର ଫାର୍ଷ୍ଟ ହବାଟା କ'ଣ ଭଲ ନୁହେଁ ବାପା ?

କଲ୍ୟାଣୀ ଆରଘରୁ ଆସି କହିଲେ—ଉଃ...ଫାଷ୍ଟେ ? କମି ଫାଷ୍ଟେ ନୁହ କି ? ଦୁତିଅ ଶ୍ରେଣୀରେ ଫେର ଗୋଟାଏ ପାଠ ? ଜମି ତ ପଢ଼ୁଛି ପଞ୍ଚମରେ । ବାବା ଲୋ...ବାବା, କ'ଣ ଗୋଟଏ ଫାଷ୍ଟେ ହୋଇଛି ଯେ ଏତିକି ଗର୍ବ ।

ରାନୁର ମୁହଁ ଶୁଖିଗଲା ।

ହସି ହସି ବିପ୍ରଚରଣ କହିଲେ—ନା'ମ ଝିଅ, ତୋ ବୋଉ ମିଛ କହୁଛନ୍ତି । ଦ୍ୱିତୀୟ ଶ୍ରେଣୀର ପାଠ ଖୁବ୍ କଷ୍ଟ । ଆଚ୍ଛା ମା, ପରୀକ୍ଷାରେ

ଫାର୍ଷ୍ଟ ହେଲେ ସମସ୍ତେ ତ ମିଠେଇ ଖାଇବାକୁ ଦିଅନ୍ତି, ତୁ କ'ଣ ଖାଇବାକୁ ଦେବୁ କହିଲୁ?

ରନୁ ଫେଁ କରି ହସିଲା—ଏଇ ଦେଖ ବାପା, ତମେ ଏତେ ବଡ଼, ମୁଁ ଏତେ ସାନ। ମୁଁ କ'ଣ ତୁମକୁ ଖାଇବାକୁ ଦେବି ମ? ଯଃ···

କିନ୍ତୁ ତୁ ତ ଫାର୍ଷ୍ଟ ହେଉଛୁ।

ମୁଁ ଆଉ ଏଥର ଫାର୍ଷ୍ଟ ହେବିନି।

ହୁଣ୍ଡୀଟା କଲେ ···?

ନଇଁଲେ ତମେ ଖାଇବାକୁ ମାଗୁଛ ଯେ? ମୁଁ କ'ଣ ଦେବି? ଆଚ୍ଛା ହଉ ଏଇ ପିଜୁଳି ଗଛଟା ଯେତେବେଳେ ବଡ଼ ହେବ, ମୁଁ ତୁମକୁ ପିଜୁଳି ଦେବି। ଖାଲି ତୁମରି ପାଇଁ ତ ବାପା ପିଜୁଳି ଗଛରେ ପାଣି ଦଉଛି।

ଅମାକୁ କଲ୍ୟାଣୀଙ୍କ କୋଳକୁ ଦେଇ ବିପ୍ରଚରଣ ହସି ଉଠିଲେ, ଦେଖିଲେ ନମିତା ଦୂରରେ ଠିଆ ହୋଇଛି। ତାକୁ କୋଳକୁ ଆଣି କହିଲେ, ତୁ ବି ମା' ପାଶ୍ କରିଛୁ, ମୁଁ ଖୁବ ଖୁସି। ରନୁକୁ ମାରିଲେ ତୁ କ'ଣ ଫାର୍ଷ୍ଟ ହୋଇଯିବୁ? ମନଦେଇ ତ ତୁ ପାଠ ପଢୁନୁ।

ରନୁ ଜଳ ଜଳ କରି ନମିତାର ମୁହଁକୁ ଚାହିଁଥିଲା, କହିଲା—ମୁଁ କ'ଣ କରିବି ଅପା କହିଲୁ? ମୁଁ ତ ଦଦଙ୍କୁ କହିଲି ମୁଁ ପାଶ୍ କରିବି। ଫାର୍ଷ୍ଟ ହେବିନି। କେହି ତ ଫାର୍ଷ୍ଟ ହଉ ନାହାନ୍ତି। ମୁଁ କାହିଁକି ଏକା ଫାର୍ଷ୍ଟ ହେବି? କିନ୍ତୁ ଦଦ ମୋ କଥା ଶୁଣିଲେ ନାହିଁ, ଆଉ ଯେତେବେଳେ ଭଲକରି ଶୁଣିଲେ କେଜାଣି କାହିଁକି ହସିଲେ। ଉଁଃ···ଦଦ ନା ଫନ୍ଦ!

ବିପ୍ରଚରଣ ରନୁର ମୁହଁକୁ ଚାହିଁଲେ। ଆଖି ଦୁଇଟି ତାର ଧ୍ରୁବତାରା ପରି ଜଳୁଛି। ତାର ମୁହଁଟି ଭିତରେ ସେହି ଆଖି ଦୁଇଟି ହେଉଛି ସବୁଠାରୁ ଆକର୍ଷଣୀୟ। ପୃଥିବୀର ସବୁତକ ସ୍ନେହ ଯେପରି ସେଇ ଆଖି ଦୁଇଟିରେ ଏକତ୍ରିତ ହୋଇ ଆଲୋକିତ କରୁଛି।

ବିପ୍ରଚରଣ ବେଳେ ବେଳେ ନମିତା ଓ ରନୁକୁ ପାଖରେ ବସାଇ କାହାଣୀ କହନ୍ତି ଛୋଟ ଛୋଟ ଗପ। କଥାଟା ଯେତେବେଳେ ଜମି

ଆସିଥାଏ, ଆଉ ଗନ୍ନୁ ଓ ନମି ତାଙ୍କର ଛୋଟ ଛୋଟ ଆଖିରେ ବହୁତ ଉଦ୍‌ବେଗ ଓ ଉତ୍କଣ୍ଠା ପ୍ରକାଶ କରି ଯେତେବେଳେ ବିପ୍ରଚରଣଙ୍କ ମୁହଁକୁ ଚାହିଁ ବସିଥା'ନ୍ତି, ଠିକ୍ ସେତେବେଳେ ରୋଷାଇଘରୁ କଲ୍ୟାଣୀଙ୍କର ପାଟି ଶୁଭି ଉଠେ—ଅଲୋ ହେ ଗନ୍ନୁ, ସେଠି କଅଣ ବାପାଙ୍କ ପାଖରେ ବସି ଶୁଣୁଛୁ ? ଏଠି ପର ଅମା କାନ୍ଦ କାନ୍ଦ ଅଚଡ଼ା ପକାଇଲାଣି । ଆସିଲୁ··· !

ବାପାଙ୍କ ପାଖରୁ ଖପ୍‌କରା ଉଠିପଡ଼ି ଗନ୍ନୁ କହେ—ଯାଉଛି ହୋଉ !

ବିପ୍ରଚରଣ ହଠାତ୍ ତାଙ୍କ କଥାର ଖିଅ ଭୁଲିଯା'ନ୍ତି । ଭୁଲିଯା'ନ୍ତି କଥାଟା । କୋଉଠୁ ଆରମ୍ଭ କରିଥିଲେ ଏବଂ କୋଉଠି କଥାଟା ସାରିବେ ।

ନମି ଶେଷ୍ଟେଇ ହୋଇ ବାପାଙ୍କ କୋଳକୁ ଲଗିଆସି କହେ ବାପା, ତାପରେ କ'ଣ ହେଲା ?

ବିପ୍ରଚରଣ କିନ୍ତୁ ସେତେବେଳେ ନମିର କଥା ଶୁଣିପାରନ୍ତି ନାହିଁ । ଗୁଡ଼ାଏ କଥା ଭାବିଯାନ୍ତି । ଆଖି ତ ତାଙ୍କର ନମି ଉପରେ ନ ଥାଏ, ଥାଏ ସେଇ ଛୋଟ ଗନ୍ନୁଟିର ଯିବା ବାଟ ଉପରେ, ସତେ ଯେପରି ସେଇ ଗନ୍ନୁ ତାର ଯିବା ବାଟରେ ଗୁଡ଼ାଏ ଅର୍ଥ ବିପ୍ରଚରଣଙ୍କ ପାଇଁ ବୁଝିବାକୁ ରଖି-ଦେଇଛି, ଆଉ ସେଇ ଯିବା ବାଟକୁ ଚାହିଁ ବିପ୍ରଚରଣ ଗୁଡ଼ାଏ କଥା ଭାବି ଚାଲିଛନ୍ତି । ସେଇ ଛୋଟ ଗନ୍ନୁଟିକୁ ବୁଝିବାକୁ ଚେଷ୍ଟା କରୁଛନ୍ତି ।

ସେ ହୁଏତ ବିପ୍ରଚରଣଙ୍କ କୋଳରୁ ଉଠିବାକୁ ନାରାଜ ହୋଇଥାନ୍ତା । ଏତେ ସୁନ୍ଦର ଘଟେଇ ଆସିଥିବା କଥା ମଝିରୁ ଉଠିଯିବାକୁ ଅମଙ୍ଗ ହୋଇଥା'ନ୍ତା । ପିଲା ମନ । କଥା ଶୁଣିବାକୁ ଉଚ୍ଚାଟ ହୁଏ । କିନ୍ତୁ ସେ କଲ୍ୟାଣୀଙ୍କର ପହେ ଡାକରେ ଉଠିପଡ଼ି ଧାଇଁଗଲା ଅମାତାକୁ ଧରିବା ପାଇଁ । ଟିକେ ହେଲେ ଦ୍ୱନ୍ଦ୍ୱ ନାହିଁ, ଦ୍ୱିଧା ନାହିଁ, ବିବାଦ ନାହିଁ । ବିଶମ୍ବଦ । ବାଧ୍ୟ-ଅନୁଗତ ।

ଅମାକୁ କାଖରେ ଧରି ଗନ୍ନୁ ଯେତେବେଳେ ପୁଣି ବିପ୍ରଚରଣଙ୍କର ପାଖକୁ ଫେରିଆସିଲା, ବିପ୍ରଚରଣ ଦେଖିଲେ —ଗନ୍ନୁର ଛୋଟ ଅଣ୍ଟାଟି

ଅମୀତାର ଦେହ ଜ୍ୱରରେ ବଙ୍କା ହୋଇଯାଉଛି । ଅମୀ ଚିତ୍କାର କରି ଗୋଡ଼ ହାତ ଛାଟି କାନ୍ଦୁଛି, ଆଉ ତାର ସେହି ଗୋଡ଼ ହାତ ହଲାଇବାରେ ବିଚରା ଝୁନୁର ଦେହଟି ସମ୍ପୂର୍ଣ୍ଣ ଦୋହଲି ଯାଉଛି । ସେ ଦୁ'ହାତରେ କୁଣ୍ଢାଇ ଧରି ଅମୀକୁ ଭୁଲାଇବାକୁ ଚେଷ୍ଟା କରୁଛି—କାନ୍ଦନା ଲୋ ସୁନା, କାନ୍ଦନା ।

ଝୁନୁପରି ପିଲା ପୁଣି ବୁଝାଉଛି ଅମୀକୁ ନ କାନ୍ଦିବା ପାଇଁ !

ରୂପଚରଣ ମନେ ମନେ ଭାବିଲେ—ଏଇ ଅମୀକୁ କଲ୍ୟାଣୀ ନିଜେ ନ ଧରି ଝୁନୁକୁ କାହିଁକି ବା ଦେଇଛନ୍ତି ? ଝୁନୁ ପରି ଏକ ଚପଳମତି ବାଳିକା, ସେ କଅଣ କହି ବୁଝାଇବ ଏଇ ଅମୀ କାନ୍ଦୁଣୀକୁ ? ପିଲାକୁ ଚୁପ୍ କରିବା ପାଇଁ ତାର ଶକ୍ତି ବା କେତେ ?

ଝୁନୁ ଅମୀକୁ ବାଁ କାଖରେ କାଖେଇ ଥିଲା । ପୁଣି ବାଁ କାଖ ବଦଳାଇ ଡାହାଣ କାଖକୁ ଆଣିଲା । କିନ୍ତୁ ଡାହାଣ କାଖ ମଧ୍ୟ ଥକି ପଡ଼ୁଛି । ସେ ପୁଣି ଡାହାଣ କାଖରୁ ବାଁ କାଖକୁ ଅମୀକୁ ନେଇଆସିଲା । ଏହିପରି ଅଦଳବଦଳ ଲାଗିରହିଲା, କିନ୍ତୁ ପୂରା ଅଣ୍ଟା ଓଜନରେ ସହି ହଉନି—ଥକି ପଡ଼ୁଛି । ଅମୀକୁ ଏପଟ ସେପଟ କରିବାରେ ତାର ପୁରୁଣା ଫ୍ରକ୍‌ର ସବୁ ବୋତାମଗୁଡ଼ା ଛିଣ୍ଡିଯାଇଥିଲା କେତେବେଳେ । ପିଠିପାଖ ପୂରା ଖୋଲିଯାଇ କୁକୁର କାନ ପରି ଲଟକି ପଡ଼ିଥିଲା ଫ୍ରକ୍‌ଟା ।

ରୂପଚରଣ ଦେଖିଲେ ତାଙ୍କର ଆଗରେ ଝୁନୁ ଅମୀକୁ କୁଣ୍ଢେଇ ଗୋଡ଼ ଥକି ଠିଆ ହୋଇଛି, ଆଉ ଅଣନିଃଶ୍ୱାସୀ ହୋଇ ସଁ...ସଁ ହଉଛି । ସେଇ ହସ । ଅଣ୍ଟାରୁ ଖସି ଯାଉଥିବା ପ୍ୟାଣ୍ଟକୁ କେତେବେଳେ ହାତରେ ଟେକି ଧରୁଛି । କିନ୍ତୁ ମୁହଁରେ ଯନ୍ତ୍ରଣାର ଚିହ୍ନ ନାହିଁ । ସେଇ ହସ— ସେଇ ଭଦ୍ର କଥା ।

ନମିତା ରୂପଚରଣଙ୍କ କୋଳରେ ଥାଇ ବିରକ୍ତିର ସ୍ୱରରେ କହିଲା ଏ ଝୁନୁ, ତତେ କ'ଣ ଦିଶୁନି ମୁଁ ଏଠି ରଜାପୁଅ କାହାଣୀ ଶୁଣୁଛି । ତୁ ଏଠି ଅମୀକୁ ଧରି କାହିଁକି ଠିଆ ହୋଇଛୁ । ତା'କାନ୍ଦରେ ମୁଁ ତ କିଛି ଶୁଣିପାରୁନି । ଏଠୁ ଗଲୁ...?

ଝୁନୁ କିନ୍ତୁ ଏ ସୁନ୍ଦର ଗପରୁ ଉଠିଯାଇ ନଥିଲା । ସେ ବି ଏ ଗପ ଶୁଣିବ । ଅମୀକୁ କାଖରେ ଧରି, ତାକୁ ଦୋହଲେଇ ଦୋହଲେଇ ସେଇପରି ଠିଆ ହୋଇ ଶୁଣିବ । ସେ ଅମୀକୁ ଥାପୁଡ଼ାଇ କହିଲା—କା'ନ୍ଦନି ଲୋ ଅମୀ,

କାନ୍ଦେନା । ତେବେ ମୁଁ ମଟର ଦେବ, ହାତୀ ଦେବ, ଘୋଡ଼ା ଦେବ । ତୁ ଚୁପ୍ ହୋଇ ଶୋଇପଡ଼ ।

କେଜାଣି କାହିଁକି ନମିତାକୁ କୋଳକୁ ଉଠାଇ ବିପ୍ରଚରଣ ଅମାଙ୍କ ବନୁର କାଖରୁ ନେଇ ଆସିଲେ । ଅମାକୁ କାନରେ ଶୁଆଇ କହିଲେ—କହିଲୁ ଗନୁ ମା, ତୋ ପାଇଁ ବଜାରରୁ ମୁଁ କଅଣ ଆଣିବି ?

ତାର ସେଇ କଜ୍ଜଳ ଲଗି ନ ଥିବା ଟଣା ଟଣା ଆଖିକୁ ବିସ୍ତାରିତ କରି ଗନୁ କହିଉଠିଲା—କ'ଣ ବାପା ?

ଏଇ ହାତୀ, ନା ମଟର' ନା ଘୋଡ଼ା ?

ନମି ହଠାତ୍ ଆନନ୍ଦରେ ଚେଇଁ ଉଠିଲା । କୁଦି ପଡ଼ିଲା । ହାତ ତାଳି ଦେଇ ବୁଲି ବୁଲି କହିଲା—ମୋର ଗୋଟାଏ ମଟର ଦରକାର ବାପା । ନାଲି ମଟର । ନା ନା, ନାଲି ନୁହେଁ, ନେଳୀ ମଟର ।

ବିପ୍ରଚରଣ ନମିକୁ ପାଖକୁ ଆଉଜାଇ ଆଣି କହିଲେ—ମୁଁ ତ ତେବେ ପଚାରୁନି ମା, ଗନୁକୁ ପଚାରୁଛି । ଆଚ୍ଛା ତୋ ପାଇଁ ଗୋଟାଏ ନେଳି ମଟର ଆଣିବି । ହେଲେ ଗନୁ ମା', ତୁ କହିଲୁନି ଯେ !

ଗନୁର ଆଖି ଦୁଇଟି ହସିଉଠିଲେ । କଅଁଳ ଓଠଟିରେ ଧୀରେ ସୁନା ହସର ଗାର ଟାଣି ହୋଇଗଲା । ଡାହାଣ ହାତର ବଶି ଅଙ୍ଗୁଠି ମୁହଁ ଆଗରେ ନଚାଇ ସେ କହିଲା—କହିବି ? କହିବି ?

ହଁ..., କହତ ଦେଖି !

ଭାବି ଭାବି ଗନୁ କହିଲା—ମୋର ମଟର ଦରକାର ନାହିଁ ବାପା । ମୁଁ ତ ମଟର ସଦାବେଳେ ଦେଖୁଛି । ହାତୀ ଦେଖିନି । ମୋ ପାଇଁ ଗୋଟିଏ ବଡ଼ ହାତୀ ଆଣି ଦବ । ହେଲେ...ହେଲେ...

କ'ଣ ମା' ?

ଖାଲି ମୋ ପାଇଁ, ଅପା ପାଇଁ ଆଣିବ, ଆଉ ଅମା ପାଇଁ କିଛୁ ଆଣିବନି ? ଅମା କାନ୍ଦିବ ଯେ—

ତାହାହେଲେ କହ ।

ଗନୁ ପରସ୍ତେ ନାଚିଯାଇ କହିଲା—ଅମା ପାଇଁ ସବୁ—ସବୁ ଆଣିବ । ମଟର, ହାତୀ, ଆଉ ଘୋଡ଼ା । ସେ ଏଥିରେ ଖେଳିବ । ଆଉ ଜମା କାନ୍ଦିବନି !

ରବୁ ଯେପରି ଅମାତାର ଖେଳନା ପାଇଁ ତାଙ୍କ ନିକଟରେ ଅନୁରୋଧ କରୁଥିଲା । ଏଇ ଶେଷ ପଦକ କଥାରେ ଯେପରି ତାର ସକଳ ଅନ୍ତରର ସଞ୍ଚିତ କରୁଣ ଅବ୍ୟକ୍ତଭାଷା ମୂର୍ତ୍ତି ହୋଇ ଉଠିଲା । ତାର ହାତ ମାରିବାଟା ମୁଖ୍ୟ ନୁହେଁ । ସେ ହାତ ପାଉ କି ନ ପାଉ ଏଥିରେ ତାର କିଛି ଯାଏ ଆସେ ନାହିଁ । କିନ୍ତୁ ଅମା ନେଲେ ସବୁ ପାଇଯା'ନ୍ତା ! ହେ ଭଗବାନ···! ଦେଲେ ଅମା ଏସବୁ ପାଇ ତାର କାନ୍ଦଟାକୁ ଭୁଲି-ଯା'ନ୍ତା ! ଆଜି ରବୁ ଲୋକରେ ଲାଖ ଦବାକୁ ମନ କରନ୍ତା ନାହିଁ ।

ବିପ୍ରଚରଣ ରବୁକୁ ଚାହିଁଲେ । ଆଖିରେ ତାର କାତରତା, ଅସହାୟତାର ଚିହ୍ନ । ମୁହଁରେ ତାର ଆକୁତି, ବିକଳ, ଉତ୍ସୁକ ଚିହ୍ନ । ବାପାଙ୍କ ମୁହଁରୁ କେବଳ 'ହଁ' ଶବ୍ଦଟିଏ ଶୁଣିବା ପାଇଁ ଆକୁଳ ନୟନରେ ଚାହିଁ ରହିଛି ।

ବିପ୍ରଚରଣ ରବୁକୁ କୋଳକୁ ଆଉଜାଇ ଆଣି କହିଲେ—ହଁ···ହଁ ତୋ ପାଇଁ ଆଣିବ, ନମିତା ପାଇଁ ଆଣିବ, ଅଉ ଅମାତା ପାଇଁ ସବୁ କିଣି ଆଣିବ । ସେ ଖେଳିବ, ଅଉ ଆଉ କାନ୍ଦିବନି । ତତେ ବ୍ୟସ୍ତ କରିବନି ।

ରବୁ ଯେତେ ବ୍ୟସ୍ତ ନ ହଉ ବୋଲି ବିପ୍ରଚରଣ ଭାବୁଥିଲେ, ସେ କିନ୍ତୁ ତା'ଠାରୁ ଅଧିକ ବ୍ୟସ୍ତ ହୋଇପଡ଼ିଥିଲା । ଅଧିକ ବ୍ୟସ୍ତ । ବିପ୍ରଚରଣ ଦେଖିଲେ ଛଅବର୍ଷ ପିଲାଟିର ମୁହଁରେ ଆଉ ସେ ସୁଖ ନାହିଁ । ଯେଉଁ ମୁହଁରେ କଥା କଥାକେ ହସ ଚହଟି ଯାଉଥିଲା, ସେ ମୁହଁରେ ଆଉ ହସ ନାହିଁ, କେବଳ ଗୁଡ଼ାଏ ଚିନ୍ତାର ଛାଇ । ସେ ଦୌଡ଼ୁନି, ଲେଟି ପଢ଼ୁନି, ଫୁଲ ବଗିଚାରୁ ଫୁଲ ତୋଳି ଆଉ ଶୂନ୍ୟକୁ ଫୁଲ ଫୋପାଡ଼ୁ ନାହିଁ, ବରଷା ପାଣିରେ କାଗଜ ଡଙ୍ଗା ତିଆରି କରୁନି, ଚକାଭଉଁରି ଦେଇ ଗୀତ ଗାଉନି, ତାର ମୁହଁଟି ଯେପରି ଦିନକୁ ଦିନ ଶୁଖିଯାଉଛି । ବାଟଭୁଲା କ୍ଷୀଣାଙ୍ଗୀ ନଦୀ ପରି ଦୁଃଖର ମରୁପ୍ରାନ୍ତରେ ତାର ମୁହଁଟିର ସହଜ ଶୋଭା କିରଣ କେଉଁଠି ହଜିଯାଇଛି '

କାହିଁକି ?

ବିପ୍ରଚରଣ ପଚାରିଲେ ନିଜକୁ ନିଜେ—କାହିଁକି ?

କାହିଁକି ଗୋଟିଏ ଗିରି ନିର୍ଝରିଣୀର ଅକସ୍ମାତ୍ ସାବଲୀଳ କଳ-ଧ୍ୱନିର ବିଲୁପ୍ତି ଘଟିଛି ?

କାର୍ତ୍ତିକ ଗୋଟିଏ ତାରା, ଯାହାକ ମାନାକାଶରେ ଖୁବ୍ ସତେଜ, ସ୍ତିମିତ ହୋଇପଡ଼ୁଛି ?

ତାର କ'ଣ କୁତ୍ରତା ନାହିଁ ? ତାର କ'ଣ ସ୍ୱାସ୍ଥ୍ୟ ନାହିଁ ? ତାର କ'ଣ ନଜି ନାହିଁ ? ତାର କ'ଣ ବନ୍ଧୁପତ ଖାତା ନାହିଁ ? ତାର କ'ଣ ମୁଣ୍ଡରେ ଟୋପାଏ ତେଲେ ବି ଟିକେ ନାହିଁ ?

ତଦୁଷ୍ଟ କ'ଣ ପେଟପୂରା ଖାଇ ନାହିଁ ?

ଆହା, ଏ ପ୍ରଶ୍ନ ସେ ନଜକୁ କାହିଁକ ପଚାରୁଛନ୍ତି ଉପ୍ରଚରଣ ?

ଉପ୍ରଚରଣ କଲ୍ୟାଣୀଙ୍କୁ ପଚାରିଲେ—କାର୍ତ୍ତିକ, କଲ୍ୟାଣୀ ତମେ ରାନୁକୁ ସ୍କୁଲକୁ ପଠାଉ ନାହଁ ?

କଲ୍ୟାଣୀ ଗେହ୍ଲେଇ ହୋଇ କହି ଉଠିଲେ— ମୁଁ କାହିଁକି ମନାକରେ ସେ ମ, ପଚାରୁଛ ନମିକୁ ?

ତୁମେ କେବଳ ଏକା କହିଲେ ତାହା ଯଥେଷ୍ଟ ହବ କଲ୍ୟାଣୀ। ନମିର ଏଥିରେ ସାକ୍ଷୀ ଦେବାର କୌଣସି ଦରକାର ନାହିଁ।

ତୁମେ ମୋ ଉପରେ ବିରକ୍ତ ହଉଛ ?

ମୁଁ ବିରକ୍ତ ହେଉନ କଲ୍ୟାଣୀ। ତମେ ରାନୁର ମା'। ରାନୁକୁ ତୁମରି କୋଳରେ ବଢ଼ାଇବା ପାଇଁ ମୁଁ ତାକୁ ତୁମକୁ ଟେକ ଦେଇଛି, ଅଥଚ ତୁମେ ସବୁ ଜାଣି···

କାଲୁ ସେ ତ ସ୍କୁଲକୁ ଯାଉଛି।

ସବୁଦିନ ଯାଉଛି ?

ମୁଁ କଣ ତାକୁ ଯିବାପାଇଁ ମନା କରୁଛି ? ତା କଥା ତମେ ଯଦି ଜାଣନ୍ତ, ତା'ହେଲେ ଏମିତ କୁହନ୍ତ ନାହିଁ। ଏମିତ ଗୋଟାଏ ଜିଦ୍‌ଖୋର ଝିଅ ଯେ ଟିକେ କଥଣ ହୋଇଗଲେ, କାନ୍ଦ ଗଡ଼ିବ, ରୁଷିବ, ଖାଇବ ନାହିଁ, ତାପରେ ଇସ୍କୁଲକୁ ଯିବନାହିଁ। ମୁଁ କ'ଣ ତାର ହାତ ଧରି ଇସ୍କୁଲକୁ ନେଇଯା'ନ୍ତି ?

କଲ୍ୟାଣୀ !

ଗୋଟାଏ ପରଝିଅ ପାଇଁ ମୁଁ କାହିଁକି ତୁମଠାରୁ ଏତେ ଶୁଣିବି ମ !

ପରଝିଅ ! ଏକଥା ତୁମେ କହିପାରୁଛ କଲ୍ୟାଣୀ ? ଯେ ତୁମକୁ ନିଜ ବୋଉ ଛଡ଼ା ଅନ୍ୟ ଆଖିରେ ଦେଖେନ, ତମରି କାନ ଧରି ସଦା-

ବେଳେ ତମର ପଛରେ ଧାଇଁଥାଏ, ତମର କୋଳରେ ଟିକେ ସ୍ଥାନ ପାଇବା ପାଇଁ ଯେ ତୁମକୁ କାତର ଆଖିରେ ଚାହିଁଥାଏ, ତୁମେ ତାକୁ କହୁଛ ପରକିଆ ?

ଓଃ..., ସଦାବେଳେ ତମେ ତା'ର ପାଇଁ ପାଟିକରୁଛ ମୋ ଉପରେ । ତାକୁ ଯାଇ ପଚାର, ମୁଁ ତାକୁ କେଉଁଦିନ ଇସ୍କୁଲକୁ ଯିବାକୁ ମନାକଲି ?

କାହାକୁ କିଛି ପଚାରିବା ଦରକାର ନାହିଁ କଲ୍ୟାଣୀ । ମୁଁ ଜାଣେ, ଏଇ ପିଲା ଧରିବା ପାଇଁ ହିଁ ସବୁ ତୁମକୁ ଠିକ୍ ହେଉଛି । କୌଣସି ସୁକର ଯେତେବେଳେ ତୁମର ଗାଳି ମାଡ଼ରେ, ତୁମର ପାଟି ତୁଣ୍ଡରେ, ନାନା-ପ୍ରକାର ଦଣ୍ଡରେ ଏ ଘରେ ରହିବାକୁ ଆଦୌ ରାଜି ହେଉନ, ରାନୁ ଝିଅଟି ତ ଏ ଘର ଛାଡ଼ି କୁଆଡ଼େ ଚାଲି ଯିବନି । ସେ ସବୁ ସହି ଏ ଘରେ ରହିଥିବ ।

କଲ୍ୟାଣୀ ପାଟି କରି ଉଠିଲେ—କ'ଣ କହିଲ ?

କହିବି ଆଉ କଅଣ ? ମୁଁ ଠିକ୍ ଜାଣେ ଏଇ ପିଲା ଧରାଧରି କରିବା ପାଇଁ ସପ୍ତାହରେ ଅନ୍ତତଃ ସେ ତିନି ଚାରିଦିନ ସ୍କୁଲକୁ ଯାଏ ନାହିଁ । କେବଳ ମୁଁ ଅଛି ବୋଲି ତୁମେ ବିଶେଷ ଜୋର ଜବରଦସ୍ତ କରି ପାରୁନ । ନଇଲେ ରାନୁର ସ୍କୁଲକୁ ଯିବାଟା କେଉଁଦିନରୁ ବନ୍ଦକରି ସାରନ୍ତଣି !

ମତେ ଛଣ୍ଡାନା କହୁଛ ।

ମୁଁ ତ ସଦାବେଳେ ତୁମ ପରି ଆଉ ଘରେ ରହି ପାଉନି କଲ୍ୟାଣୀ ! ଘରେ ରହୁଥିଲେ ହୁଏତ ରାନୁର ସୁବିଧା ଅସୁବିଧା ବୁଝନ୍ତି । କେତେ ଆଶା ନେଇ ସେଦିନ ମୁଁ ତାକୁ ତୁମର କୋଳକୁ ବଢ଼ାଇ ଦେଇ-ଥିଲି କଲ୍ୟାଣୀ ? ହେଲେ ତୁମେ କ'ଣ କଲ ? ଶେଷରେ ତାକୁ ବାସନ ମଜା କୁଣ୍ଡ ପାଖକୁ ଠେଲିଦେଲ ?

ଓଃ...ବୁଝିଲି । ତାହାହେଲେ ସେଇ ମଉନମୁହିଁ ନଅ ଝିଅ, ସତ ମିଛ ଯୋଡ଼ି ତୁମକୁ କେତେ କଥା କହିଛି ।

ରାନୁ ପରି ନିଷ୍ଠ ସରଳ ପିଲା କେବେ ମିଛର ଆଶ୍ରୟ ନଏନା କଲ୍ୟାଣୀ । ସେଇଟା ତୁମର ଭୁଲ ଧାରଣା । ରାନୁ କାହିଁକି ମିଛ କହିବ ? ଏ ଘରର କାର୍ଯ୍ୟକଳାପ ଦେଖି ମୁଁ କଅଣ କିଛି ବୁଝିପାରୁନ ?

ବିପ୍ରଚରଣ ଉଠି ଆସିଲେ । ଦେଖିଲେ—ଖୋଲା ଦେହରେ ଖାଲି ପ୍ୟାଣ୍ଟଟାଏ ତାର ସରୁ ଅଣ୍ଟାରେ ଗୁଡ଼ାଇ ରାନୁ ଠିଆ ହୋଇଛି ପିଜୁଳିଗଛ ପାଖରେ; କାଖରେ ତାର ଅମା । ପିଜୁଳି ଗଛଟାକୁ ଚାହିଁ, ଖସିଯାଉଥିବା ଅମାକୁ ଖାଲି ଟେକୁଛି, ଆଉ ଉପରୁ ପଡ଼ୁଥିବା ପତ୍ରକୁ ଏକ, ଦୁଇ, ତିନି ଗଣୁଛି ।

କେଡ଼େ ସରୁ, ଦୁର୍ବଳ ଏ ରାନୁ !

ବିପ୍ରଚରଣ ତାର ଖୋଲା ଦେହ ଦେଖି ଚମକି ଗଲେ । ହାତ ଦ'ଟା ସରୁ କାଠି, ଗୋଡ଼ରେ ପଳେ ହେଲେ ବି ମାଂସ ନାହିଁ । ଛାତିର ହାଡ଼ ଗଣିହେଇ ଯାଉଛି । ବାଳସବୁ ଫୁରୁଫୁର, ମୁହଁଯାକ ଝାମ୍ପି ପଡ଼ୁଛି । ହାତରେ ଦ'ପଟ ଲେଖା ରବର ଚୂଡ଼ୀ । ଅମାର ଭାରରେ ତାର ଅଣ୍ଟାଟା ଭାଙ୍ଗି ପଡ଼ୁଛି ।

ଆରେ, ହାତରୁ ତାର ସୁନାଚୂଡ଼ୀ କିଏ ନେଲା ?

ରାନୁର କାଖରୁ ଅମାକୁ ନେଇ ବିପ୍ରଚରଣ ପଚାରିଲେ—ମା' ତୋର ଚୂଡ଼ୀ ?

ରାନୁ ବିପ୍ରଚରଣଙ୍କୁ ଦେଖି ହସିଦେଲା, କହିଲା—ମତେ ସେ ଚୂଡ଼ୀଗୁଡ଼ାକ ଭଲ ଦିଶିଲାନି ବାପା, ମୁଁ ବୋଉକୁ କହି କାଢ଼ିଦେଲି ।

କାହିଁକି ?

ସବୁବେଳେ ସେଇ ଚୂଡ଼ୀଗୁଡ଼ାକ ପିନ୍ଧିବି କଅଣ ମ ବାପା ? ନମି ଅପା ତ ପିନ୍ଧେନା । ନମି ଅପାର ଚୂଡ଼ୀ ନାଲି, ନେଳୀ । ଖୁବ୍ ଭଲ । ମୁଁ ବୋଉକୁ କହିଲି—ବୋଉଲୋ, ନମି ଅପା ଯେମିତି ଚୂଡ଼ୀ ଲଗାଇଛି, ମୁଁ ସେଇ ଚୂଡ଼ୀ ଲଗାଇବି । ବୋଉ ଖୁସିହୋଇ ମତେ ଏ ଚୂଡ଼ୀ ପିନ୍ଧାଇ ଦେଇଛନ୍ତି । ଦୁଇ ହାତକୁ ଦେଖାଇ ରାନୁ ସଗର୍ବରେ କହି ଉଠିଲା—ମୋ ହାତକୁ ଏଇ ନାଲି ରବର ଚୂଡ଼ୀ ଭଲ ଦିଶୁନି ବାପା ?

କିନ୍ତୁ ବିପ୍ରଚରଣ ତାର କଥା ଶୁଣିପାରୁ ନଥିଲେ ।

ବାପା !

ଏଁ ... !

ମତେ ନ ଅନେଇ କାହାକୁ ଅନେଇଛ ? ଆରେ, ମୋ ମୁହଁକୁ ଏମିତ ଚାହୁଁଛ କାହିଁକି ? ବାପା ! ଆରେ ଶୁଣୁନ କାହିଁକି ? ଗିନୁ ବିପ୍ରଚରଣଙ୍କ ହାତକୁ ହଲାଇ ଦେଲା ।

ଗିନୁ...! ବିପ୍ରଚରଣଙ୍କର ଗଳା ଥରି ଉଠିଲା ।

ଗିନୁ ବିପ୍ରଚରଣଙ୍କର କୋଳକୁ ଲଗି ଆସି କହିଲା—ବାପା !!

ଅପା କୁଆଡ଼େ ଯାଇଛି ?

ବୁଲିଯାଇଛି ? ତୁ ଗଲୁନାହିଁ ବୁଲି ?

ଗିନୁ କିଛି କହିଲା ନାହିଁ । କେବଳ ବିପ୍ରଚରଣଙ୍କର ମୁହଁକୁ ଚାହିଁ ରହିଲା ।

ଅପା ତତେ କ'ଣ ନେବାକୁ ମନାକଲା ମା' ?

ବିପ୍ରଚରଣ ଦେଖିଲେ—ଆହା, ସେଇ ଛୋଟ ଆଖି ଦୁଇଟିରୁ ତାର ଦୁଇଟି ଲୁହ ଗଡ଼ିପଡ଼ୁଛି ।

ଗିନୁ !

ହାତରେ ଲୁହ ପୋଛି ପକାଇ ଗିନୁ କହିଲା—ଅପା ତ ମନା କରିନ, ସେ କାହିଁକି ମନା କରିବ ? ମୁଁ ପରା ବୁଲିବି, ଖେଳିବି ଏଇ ଅମାଟାକୁ ଧରିବ କିଏ ? ଅମାଟା ଘର ହୋଇଛି ଯେ, ମୋ ଅଣ୍ଟା କଟକଟ ହଉଛି ।

ବିପ୍ରଚରଣ ଚିତ୍କାର କରି କହି ଉଠିଲେ—ଗିନୁ !

ବିପ୍ରଚରଣ ଦେଖିଲେ—ଗିନୁର ମୁହଁରୁ ଲୁହର କାଳିମା କୁଆଡ଼େ ଅପସରି ଯାଇ ପହଁରିଯାଉଛି ଏକ ବିକଶିତ ଜ୍ୟୋତି । ସେ ଜ୍ୟୋତି କେବଳ ଆତ୍ମବିଶ୍ୱାସର, ଦୃଢ଼ତାର, ସଂକଳ୍ପର । ସେ ପିଲାଲୋକ, ଏକଥା ସତ । କିନ୍ତୁ ସେ ଏଇ ପିଲାବେଳୁ ବହୁତ କଥା ସହି ଶିଖି ରଖିଛି ।

ଯେଉଁ ଧ୍ରୁବତାରାକୁ ବର୍ତ୍ତମାନ ବାଦଲ ଢାଙ୍କି ଦେଇଥିଲା, ସେଇ ଧ୍ରୁବତାରା ବାଦଲ ଠେଲି ହସିବାକୁ ପୁଣି ଚେଷ୍ଟା କରୁଛି । ସେ ହସ

ଯେପରି ହନନ୍ଦର ନୁହେଁ । ନୁହେଁ ଅଭିନସ୍ପୁର, ନକଲ ବି ନୁହେଁ । ସେ ହସ ଯେପରି ତାର ଚିରସହଚର । ତାର ସଦା ମୁହଁର ସର୍ବଦା ଆସ୍ୱ । ସେ ତାର ବାପାଙ୍କୁ ଦେଖି ସବୁ ଦୁଃଖ ଭୁଲି ବର୍ତ୍ତମାନ ପୁଣି ହସି ଉଠୁଛି ।

ସନୁକୁ ଘୁଞ୍ଚିକି ଆଉଜାଇ ଆଣି ବିପ୍ରଚରଣ ପ୍ରଶ୍ନ କଲେ—

ତୋର ମା କ'ଣ କୁରୁତା ନାହିଁ ? ଖାଲି ଦେହ ହେଇଛୁ ଯେ !

ଆଜ ପରା ରବିବାର । ସବୁ କାଚି ସଫାକରି ଶୁଖେଇ ଦେଇଛୁ । କାଲି ପିନ୍ଧିବି ।

ତୁ ନିଜେ କାଚିଛୁ ?

ହଁ, କଅଣ ହେଲା ? ସନୁ ହସି କହିଲା—ବୋଉ କହୁଛନ୍ତି, ପିଲାବେଳୁ ସବୁକାମ ଶିଖିବା ଉଚିତ୍ । ଏଥିପାଇଁ ତ ମୁଁ ଜମି ଅପାର, ମୋର, ଅଣାର ସମସ୍ତଙ୍କର କୁରୁତା ସଫା କରେ । ଯେତେ କାମ, ସେତେ ଭଲ ! ବୋଉ କହୁଛନ୍ତି ।

ମ...!

ମତେ ଏଇ ଲୁଗା ସଫା କରିବାକୁ ଖୁବ୍ ଭଲ ଲାଗେ । ତୁମର ସେଇ ଗାମୁଛାଟା ସଫା କରିଦେବି ? ସାବୁନ ଫେଣରେ କି ମଜା...!

ଏତେ ଛୋଟ ଝିଅଟା, ସେ ପୁଣି ତାଙ୍କର ଲୁଗା ସଫା କରିବ ?

ବିପ୍ରଚରଣଙ୍କର ଓଠ ଦ'ଧାର ଥର ଥର କମ୍ପି ଉଠିଲା । ବିପ୍ରଚରଣଙ୍କର ଦୃଷ୍ଟି ଭିତରେ ଗୁଡ଼ାଏ କୋହ କୁଆଡ଼ୁ ଆସି ଜମେଇ ହୋଇଗଲା । ତାଙ୍କର ମନେହେଲା ତାଙ୍କର ଦୃଷ୍ଟିର କେଉଁ ଅତଳତମ ପ୍ରଦେଶରେ ଆଠ ନଅ ବର୍ଷର ସନୁ ବାଟଭୁଲା ଶିଶୁଟି ପରି ଥକାମାରି ତାର ଆଖିରୁ ଝର ଝର ଲୁହ ବୁହାଇ କହୁଛି—ମୁଁ ତୁମର ସବୁ କରିଦେବି ବାପା, ଗାମୁଛା କାଚିବି, ଲୁଗା ଧୋଇବି, ହେଲେ ମୋ' ମା' ପାଖକୁ ମୋତେ ନେଇଯାଅ—ବାପା—ନେଇଯାଅ ।

ଏଇ ବୟସରେ ସନୁର ଦ' କାନ୍ଧରେ ଯେପରି ସଂସାରଟାସାକର ଜଞ୍ଜାଳର ଚକ୍ର ଭାର ବୋଝେଇ ପଡ଼ୁଛି । ସେ ହୁଏତ ଏଇ ବୟସରେ ଧୂଳି ଖେଳ ଖେଳୁଥା'ନ୍ତା । ଏଇ ବୟସରେ ଛୋଟ ଛୋଟ କୁଣ୍ଢେଇମାନଙ୍କ ସାଥୀରେ ନିଜେ ରକ୍ତମାଂସର ସୁନ୍ଦର କଣ୍ଢେଇଟିଏ ହୋଇ ସ୍ୱପ୍ନମୟ ଆଖିରେ ତାର କୁଣ୍ଢେଇ ଖେଳ ସଂସାରକୁ ସ୍ୱର୍ଗ ଭଳି ସଜେଇ ଦେଇଥା'ନ୍ତା ।

ଥାନ୍ତା । ମନରେ ନ ଥା'ନ୍ତା ଶୋଚନା, ନଥା'ନ୍ତା ଚିନ୍ତା । କେବଳ ଖିଆ, କେବଳ ପିଆ, କେବଳ ଶୁଆ ହିଁ ହୋଇଥାନ୍ତା ତା'ର ବଡ଼ କାମ ।

ମା' କୋଳର ସେଉଁ ଉଷୁମ, ସେଥିକୁ କୋଉ ସରଗ ସମ୍ପଦ ସରି ?

କିନ୍ତୁ ମା' ପଣତର ଅଭୟ ଆଢୁଆଳରୁ ରାନୁ ଛିଟିକି ପଡ଼ି ସଂସାର ଜଞ୍ଜାଳର ଚକଟା କାଦୁଅରେ ଅସମୟରେ ଲଟିଗଲା । ସେ କାଦୁଅର ଅଠାରୁ ଯେପରି ତା'ର ନିସ୍ତୃତି ନାହିଁ—ମୁକ୍ତି ନାହିଁ ।

ଆହା, ଝୁଣ୍ଟି ପଡ଼ିଲେ ହେଲେ କିଏ ତାକୁ କୋଳକୁ ଉଠାଇ ନିଅନ୍ତେ ! ଦେହରେ ମଳି ଟିକେ ଦେଖିଲେ ହେଲେ କିଏ ସଫା କରି ଦିଅନ୍ତେ ! ଲୁହ ଟିକେ ଦେଖିଲେ ଭଲ କିଏ ଆହା' ପଦେ କହି ଆଖି ପୋଛି ଦିଅନ୍ତେ ! କୋଳକୁ ଟାଣି ନିଅନ୍ତେ ! ହେଲେ କେହି ନାହିଁ—କେହି ନାହିଁ । କେହି ନାହିଁ ଏଡ଼େବଡ଼ ଦୁନିଆରେ ତା' ପାଇଁ ଟିକେ ଆହା କରିବାକୁ, ଟିକେ ସହାନୁଭୂତି ପ୍ରକାଶ କରିବାକୁ ।

ହରିପୁର ଗାଁ ମଶାଣିର ସେଇ ଗୁଳୁଞ୍ଚି, ଭୂତଆଁଶ, ଜଳାଙ୍ଗୀ ବଣର ଅରମା ଭିତରେ, ଭଙ୍ଗା ମଠିଆ, ଛିଣ୍ଡା ହେଂସ, ଅଙ୍ଗାର, ପୋଡ଼ା-କାଠ, ମଣିଷ ଖପୁରି, ହାଡ଼ମାଳ ଭିତରେ, ସେଇ ହାଡ଼ଟି ପୋତି ହୋଇ-ଯାଇଥିବ କି ନାହିଁ କେଜାଣି, ସେଇ ହାଡ଼ଟି ଦିନେ ଏଇ ରାନୁକୁ ଜନ୍ମ କରିଥିଲା । ତା'ର ମୁହଁକୁ ଦେଖି ହସିଥିଲା, ଗୁଡ଼ାଏ ସୁନେଲି ଭବିଷ୍ୟତର କଳ୍ପନା କରିଥିଲା । କିନ୍ତୁ ଶେଷରେ ସେ ଜଳିଗଲା ମଶାଣି ଭୂଇଁର ଯୂଇ ନିଆଁରେ ପାଉଁଶ ହୋଇ ବିକଳ ସ୍ୱରେ କାନ୍ଦି କାନ୍ଦି, ମଶାଣୀ ଭୂଇଁ ଥରାଇବା ପାଇଁ । ଆଉ ରାନୁ ରହିଗଲା ବିପ୍ରଚରଣଙ୍କ ନିକଟରେ ସେଇ ମଶାଣୀରେ ଲୁଚିଯାଇଥିବା ହାତଟିର ଉଷ୍ମତା, ସନ୍ତାନବତ୍ସଳତା କଲ୍ୟାଣୀଙ୍କ କୋଳର ସନ୍ଧାନ କରିବା ପାଇଁ ।

କିନ୍ତୁ କାହିଁ ତା' ମା' ? କାହିଁ ତା' ମା' ?

ଏକ ତାରା, ମା' ନିରା ! ଆକାଶରେ ଗୋଟିଏ ତାରାକୁ କ'ଣ ସେ ଭୁଲରେ ଦେଖି ପକାଇଲା ?

ଦୁନିଆର ଫୁଲ ଉପବନରେ ତା' ପାଇଁ କିଅଣ ସତେ ସବୁ ଫୁଲ କାହିଁ କେଉଁଠି ହଜିଗଲା, ଆଉ ତା'ର ପ୍ରତିବଦଳରେ ରହିଗଲା କେବଳ ତିକ୍ତ ତୀକ୍ଷ୍ଣ କଣ୍ଟା ? ମଳୟ ଝଳିଗଲା, ଉଷୀର ଲୁଚିଗଲା, ଲୁଚିଗଲା ମଧୁ

ମଧୁ ନିର୍ଝର, ଆଉ ଆସିଲା ଊଷର ମରୁର ଅନନ୍ତ ଶୂନ୍ୟତା, ଅଦୃଶ୍ୟ ଉତ୍ତପ୍ତ ଆଉ ଉତ୍ତପ୍ତ ଯନ୍ତ୍ରଣାଦାୟକ ବୃଷ୍ଟି ?

ଏ ଦୁନିଆର ଗାଢ଼ ଜନଗହଳି ଭିତରେ, ଅସୁମାରି ହାଉଯାଉ ଲୋକ ଭିତରେ, ରିନୁ ଯେତେବେଳେ ତା'ର ସେଇ ପରମ ସ୍ନେହମୟୀ ଜନ୍ମଦାତ୍ରୀ ମା'ର ମୁହଁଟିକୁ ପୁନର୍ବାର ଦେଖିବାପାଇଁ ବ୍ୟାକୁଳ ହୋଇ ଉଠିଲା ଠିକ୍ ସେତିକିବେଳେ ରିନୁକୁ କାଖରୁ ଓହ୍ଲାଇ ବିପ୍ରଚରଣ ତାକୁ କଲ୍ୟାଣୀକୁ ଦେଖାଇ ତାକୁ କହିଥିଲେ—ଏଇ ତୋ' ମା' ଲୋ ଝିଅ, ଏଇ ତୋ' ମା' ।

ରିନୁ କଲ୍ୟାଣୀଙ୍କୁ ଜାବୁଡ଼ି ଧରି ତାଙ୍କ ଗ୍ଲୁତରେ ଲାଗିଯାଇଥିଲା ଏବଂ କଲ୍ୟାଣୀଙ୍କ ମୁହଁକୁ ଚାହିଁ ଭାବିଥିଲା—ସତେ କ'ଣ ଏଇ ତା'ର ମା' ?

କଲ୍ୟାଣୀ ହସି କହିଲେ—ଜଳ ଜଳ କରି ମୋ ମୁହଁକୁ ଚାହିଁ କ'ଣ ଦେଖୁଛୁ ଝିଅ ? ମୁଁ କ'ଣ ତୋ'ର ମା' ଭଳି ଦିଶୁନି ? ମୁଁ ପରା ତୋ' ମା'ଲୋ ଝିଅ ।

ମା'... !

ମା'... !

କିନ୍ତୁ ଏ ଦୁନିଆଟା କି ନିଷ୍ଠୁର !

ଏ ଦୁନିଆରେ ସବୁ ମିଳିପାରେ—ଟଙ୍କା ମିଳିପାରେ, କୋଠା ମିଳିପାରେ, ଗାଡ଼ି ମଟର, ଯାନ ବାହାନ, ଦାସୀ-ପରିଚ୍ଛଦ, ଭୋଗ ବିଳାସ ମିଳିପାରେ; କିନ୍ତୁ ସବୁ ମିଳି ଯାଇ ସତେ ଯେପରି କଅଣ ଗୋଟାଏ ବିରାଟ ଅପୂର୍ଣ୍ଣ ରହିଯାଏ, ଯାହାର ଶୂନ୍ୟସ୍ଥାନ ଆଦୌ ପୂରଣ ହୋଇପାରେନା —ଅପୂରଣୀୟ ସେହି ହେଉଛି ମା' । ସେହି ଅମୃତମୟୀ, ସେହି କରୁଣାମୟୀ ମା' । ସେ ସ୍ୱତନ୍ତ୍ର । ସେ ନିଜେ ହିଁ ନିଜେ । ତା'ର ପରିପୂରକ ହିଁ ସେ ନିଜେ । ତା'ଛଡ଼ା କେହି ନାହାନ୍ତି, ଆଉ ସେଇ ଜଣକଠାରୁ ତା'ର ସନ୍ତାନ ସବୁ ଦାବୀ କରିପାରେ । ଅଶ୍ରୁ ଦାବୀ କରିପାରେ । ସ୍ୱେଦ ଦାବୀ କରି-ପାରେ । ରକ୍ତ ବି ଦାବୀ କରିପାରେ । ଏପରିକି ଜୀବନ ବି ଦାବୀ କରି-ପାରେ । ସେ ତା'ର ସନ୍ତାନ ପାଇଁ ନିଜକୁ ଦୀପ ସଳିତା ପରି ଦାନ ନ କରିବ ତ କରିବ କିଏ ?

ଅତ୍ମବଳ । ଆତ୍ମବଳ ।

ରାନୁ ଏଥିପାଇଁ ବିଦ୍ରୋହ କରି ନଥିଲା । ଏକ ତୁମୁଳକାଣ୍ଡ ସୃଷ୍ଟି କରି ବିପ୍ରଚରଣଙ୍କ ପରିବାରରେ ଅଚଳ ପରିସ୍ଥିତି ସୃଷ୍ଟି କରି ନଥିଲା । ସେ ତ କେବଳ ଜାଣିଥିଲା ଏଇ କଲ୍ୟାଣୀ ହଉଛନ୍ତି ତା'ର ମା'—ଏଇ କଲ୍ୟାଣୀ କେବଳ ହିଁ ହଉଛନ୍ତି ସେହି ତା'ର କଲ୍ୟାଣମୟୀ ମା' ଯାହାଙ୍କ ହୃଦୟରେ ରାନୁପାଇଁ ଫଲ୍‌ଗୁର ସ୍ନେହଭରା ଝରଣା ଉତସ୍ରୋତ ହୋଇ ମଧୁସଙ୍ଗୀତ ଗାନ କରି ନଖିଳ ମା'ମନର ଚିରନ୍ତନ ସତ୍ୟ ପ୍ରକଟ କରୁଛି । ରାନୁର ଆଖିରେ କଲ୍ୟାଣୀଙ୍କଠାରେ ସେହି ଭରସା, ସେହି ଉଚ୍ଛଳ ଭାବ, ସେହି ପ୍ରତ୍ୟୟ ।

ତୁମେ ହିଁ ତ ମୋର ମା' । ଏ ସାରା ସଂସାରରେ ଅଗଣିତ ଜନ ପଟୁଆର ଭିତରେ ତୁମେ ହିଁ ତ ମୋର ମା' । ତୁମେ ନିଷ୍ପଲକ ଆଖିରେ ହାତ ପୋଟାଳ ଚାହିଁ ରହିଛ କେବଳ ମୋ'ର ପାଇଁ, ମୋ'ର ପାଇଁ । ତୁମର କୋଳରେ ଗୁଡ଼ାଏ ଜାଗା ଖାଲି ରଖି । ଗୁଡ଼ାଏ ସ୍ନେହ, ଗୁଡ଼ାଏ ମମତା ପସରା ମେଲି ଦେଇ ।

ରାନୁ ଯେତେବେଳେ କଲ୍ୟାଣୀଙ୍କ ପାଖକୁ ବୋଉ ବୋଉ କହି ତାଙ୍କ ଗୋଡ଼କୁ ଲାଗି ଆସୁଥିଲା, ସେତେବେଳେ କଲ୍ୟାଣୀ ଦୂରକୁ ଦୂରକୁ ଚାଲିଯାଉଥିଲେ ।

ରାନୁ ଯେତେବେଳେ ହସି ହସି ଉଲ୍ଲାସରେ କଲ୍ୟାଣୀଙ୍କର କାନି ଧରିବାପାଇଁ ଧାଇଁ ଆସୁଥିଲା, କଲ୍ୟାଣୀ ସେତେବେଳେ ରାନୁକୁ କହୁଥିଲେ—ଚାଲୁ ସେ ବାରଣ୍ଡାଟା ଅଳିଆ ହୋଇପଡ଼ିଛି, ଝାଡ଼ିଦେବୁ । ଏଡ଼େ ବଡ଼ ଝିଅଟାଏ ହେଲୁଣି ଆସି, ଗେଲ ହବାକୁ କେଜାଣି କେମିତି ଲୋ ତୋ'ର ମନ !

ରାନୁ ଯେତେବେଳେ କାମ କରି କରି ଏକ ପଡ଼ ଉଦାସ କ୍ଳାନ୍ତ ଆଖିରେ କଲ୍ୟାଣୀଙ୍କୁ ଚାହିଁ ରହେ, ଠିକ୍ ସେତିକବେଳେ କଲ୍ୟାଣୀ କହି ଉଠନ୍ତି କ'ଣ ଚନ୍ଦନ ଝୁଲଣା ଖଞ୍ଜି ଦେବ କଲେ ରାଜଦୁହିତା ରାନୁ ! ଆଲୋ ସେଠି ଖୁଣ୍ଟା ପରି ବସି ରହିଛୁ କାହିଁକି ?

ହାୟରେ ମା'··· ! ତୁମର ସେଇ କୋଳରେ ଏଇ ସାନମାନଙ୍କ ସାଥ ରାନୁଟାର ସ୍ଥାନ କ'ଣ ଆଦୌ ନାହିଁ !!

ନମିତାକୁ ବୁଲାବାକୁ ଛାଡ଼ିଦେଲାବେଳେ, ତମେ ତ ବନୁକୁ ତା’ ସାଥୀରେ ଛାଡ଼ି ଦେଇ ପାରିଥାନ୍ତ ?

ନମିତାକୁ ବେଶଭୂଷାକରି ସ୍କୁଲକୁ ପଠାଇଦେଲା ବେଳେ, ତୁମେ ତୁଏର ଭାବିଥାନ୍ତ ବନୁ କଥା ?

ତୁମେ ପିଲା ଜନ୍ମ କରିବ; ଅଥଚ ତମେ ଧରିବନି । ଧରିବ ଏଇ ବନୁ, ସ୍କୁଲକୁ ନ ଯାଇ, ଘ’ଠ ମାଗି କରି ?

ଅମାକୁ କୋଳରେ ସେହିପରି ଧରି ବିପ୍ରଚରଣ ବନୁକୁ ଚାହିଁ ଭାବି ଯାଉଥିଲେ କେତେ କଥା ।

ବନୁ ଆଗ୍ରହରେ ପଚାରିଲା—ପିଜୁଳି ଗଛଟା ତ ବଢ଼ୁନି ବାପା ?

ଏଁ… ? କ’ଣ କହିଲୁ ?

ପିଜୁଳି ଗଛଟା ତ ବଢ଼ୁନି ?

ବଢ଼ିବ ଯେ ! ତୁ ଏମିତି ବ୍ୟସ୍ତ ହେଲେ କ’ଣ ସେ ସାଙ୍ଗେ ସାଙ୍ଗେ ବଢ଼ିଯିବ ?

ବନୁ ବିସ୍ମୟରେ ପିଜୁଳି ଗଛଟାକୁ ଚାହିଁରହିଲା ।

ବିପ୍ରଚରଣ ଶୂନ୍ୟ ଆଖିରେ ବନୁକୁ ଆଉ ପିଜୁଳି ଗଛକୁ ଚାହିଁ ରହିଥିଲେ ।

ସୁବୋଧ ଯେତେବେଳେ ଉଠିପଡ଼ିଲା ନିଦରୁ, ଦେଖିଲା ସୂର୍ଯ୍ୟର କିରଣ ଦୁଆରଟା ସାରା ବିଛୁଡ଼ି ପଡ଼ିଛି । ସୂର୍ଯ୍ୟକୁ ଦେଖି ସୁବୋଧ ଅନ୍ଦାଜ କଲା ଦିନ ଆସି ସାଢ଼େ ସାତ ବାଜିଯିବଣି ।

ଆରେ, ଏତେ ଡେରି ହୋଇଗଲା ଆଜି ଉଠୁ ଉଠୁ ?

ଏତେ ଡେରିରେ ଉଠି ସୁଦ୍ଧା ତାକୁ ଜଣାପଡ଼ୁଥିଲା, ଏ ନିଦଟା ତା’ ପାଇଁ ଯଥେଷ୍ଟ ହୋଇ ନାହିଁ । କାଲି ତ ରାତିରେ ଶୋଉ ଶୋଉ ବହୁତ ଡେରି ହୋଇଯାଇଥିଲା । ଖାଇସାରି ସେ ବହିଟାକୁ ନେଇ ସେମିତି ବସିଛି ଯେ, ପୃଷ୍ଠା ପରେ ପୃଷ୍ଠା ଓଲଟାଇ ଚାଲିଛି, ପେନ୍‌ସିଲରେ ଅଣ୍ଡର୍ ଲାଇନ୍

କରି ଚାଲିଛି, କୁଆଡ଼େ ଯିବାକୁ ବେଳ ନାହିଁ, କଲେଜ ଘଣ୍ଟାରେ ଯେତେବେଳେ ଛଅଟା ବାଜିଲା, ତା'ର ଧ୍ୟାନ ଭାଙ୍ଗିଗଲା। କଲେକ୍ଟରଙ୍କର ଅଫିସ ବଣାକାନ୍ତ ସୁପର୍‌ନାଚୁରାଲ ଆଟମସ୍‌ଫିଅର୍‌ରୁ ଦୂଲ୍ କନା ଖସି ଚଢ଼ି ସେ ଦେଖିଲା, କେଉଁଠି ସମୁଦ୍ରର ଉଦ୍‌ବେଳନ ନାହିଁ, କେଉଁଠି ଆନ୍‌ସିଏଣ୍ଟ ମ୍ୟାରିନ୍‌ର ବକ୍ତୃତା ଶୁଣାଉ ନାହିଁ, କେବଳ ଭଙ୍ଗା ଚଉକଟା ଉପରେ ଲଣ୍ଠନଟା ଦକ ଦକ ଜଳୁଛି।

ଲଣ୍ଠନ୍‌ଟାକୁ ଦେଖି ସୁବୋଧର ମୁଣ୍ଡ ବିଗିଡ଼ିଗଲା—ଓଃ...କି ଅନ୍ଧାରିଆ ଏଇ ଲଣ୍ଠନ୍‌ର ଆଲୁଅଟା !

ଏଇ ଆଲୁଅରେ ପୁଣି ସେ ପଢ଼ିବ ?

ଧେତ୍, କହି ସୁବୋଧ ଲଣ୍ଠନଟାକୁ ଲିଭାଇ ଦେଇ ସେଇ ଦଉଡ଼ିଆ ଖଟଟାରେ ଶୋଇଥିଲା ଯେ ଉଠୁ ଉଠୁ ଏତେବେଳ।

କଲ୍ୟାଣୀ ଦେବୀ ବର୍ତ୍ତମାନ ହୁଏତ ଭକ୍ତବତ୍ସଳ ଶୋଇବାଇ ସାରିବେଣି। କଲ୍ୟାଣୀଙ୍କର ସେଇ ପ୍ରତିହିଂସାପୂର୍ଣ୍ଣ ମୁଖମଣ୍ଡଳଟିକୁ ମନେ ପକାଇ ସୁବୋଧ ବ୍ୟସ୍ତ ହୋଇ ଉଠିଲା।

ଆଃ...ତା'ର ଭଲ ନବ ଆଗରୁ ଟିକେ ଭାଙ୍ଗିଯାଇଥା'ନ୍ତା।

ତାକୁ ଭଲଭାବେ ଜଣାଅଛି ଯେ, ସେ ଯେତେବେଳେ ବିପ୍ରଚରଣ ଘରକୁ ଯାଏ, କଲ୍ୟାଣୀ ତାଙ୍କର ହାତ ଘଣ୍ଟାଟିକୁ ଦେଖିବାକୁ ଭୁଲନ୍ତି ନାହିଁ, ଏବଂ ସେ ଫେରିଲାବେଳେ ମଧ୍ୟ କଲ୍ୟାଣୀ ଦେବୀଙ୍କର ଆଖି ପୁଣି ସେହି ହାତ ଘଣ୍ଟାଟି ଉପରକୁ ଚାଲିଯାଏ।

ସୁବୋଧ ତରତରରେ ଦାନ୍ତ ଘଷିବାକୁ ଲାଗିଲା।

ଯମଦୂତ ଏଇ କଲ୍ୟାଣୀ।

ସବୁ କାମରେ ହୁଏତ ତ୍ରୁଟି ଅଛି, କିନ୍ତୁ ଏଇ କଲ୍ୟାଣୀଙ୍କ ପାଖରୁ ଆଦୌ ତ୍ରୁଟି ନାହିଁ। ନିସ୍ତାର ନାହିଁ। ପ୍ରତିଦିନ ନିଶ୍ଚୟ ସେ କିଛି କାମ ବତାଇ ଦେବେ। ନକଲେ ବି ନଚଳେ। ଉପାୟ ନାହିଁ।

ସୁବୋଧର ଜୀବନଟା ଉପରେ ଦାରିଦ୍ର୍ୟ ଯେତେବେଳେ ଖିଆଲମତ ଆଖିବୁଜା ଶାସନ, ଅତ୍ୟାଚାର ଚଳାଉଛି, ସେତେବେଳେ ସୁବୋଧ ଏଇ ପେଷଣ ଭିତରେ ତା'ର ଯେ ନିଜର ଗୋଟାଏ ଅସ୍ତିତ୍ୱ ଅଛି, ସେ କଥା ସେ ନିଜେ ଖୋଜି ଖୋଜି ପାଇପାରେନା।

ସେ ଡେପୁଟିବାବୁ ବିପ୍ରଚରଣଙ୍କର ନିହାତ ନଗଣ୍ୟ, ଅକଅଁଜ ଡ୍ରାଇଭରର ପୁଅ । ଏହା ହିଁ ଯଥେଷ୍ଟ ତା'ର ଚରିତ୍ର । ସେ ବିଶ୍ୱବିଦ୍ୟାଳୟର କୃତି, ମେଧାବୀ ଛାତ୍ର ହଉ, କି ଅନ୍ୟକିଛି ଗୁଣରେ ଭୂଷିତ ହୋଇଥାଉ, ଏଥିରେ କଲ୍ୟାଣୀଙ୍କର କିଛି ଯାଏ ଆସେ ନାହିଁ ।

ଡ୍ରାଇଭର ଯେପରି କଲ୍ୟାଣୀଙ୍କର ଅନୁଗତ, ସୁବୋଧ ମଧ୍ୟ ସେହିପରି ଅନୁଗତ ହୋଇ ରହିବା ଉଚିତ୍ । ତାହାର ଅବାଧ୍ୟତାରେ ହୁଏତ ଅଧିକ ଖରାପ ବାପାଙ୍କର ଚାକିରୀରେ ବାଧା ଆସିପାରେ ।

ତା'ପରେ··· ?

ତା'ପରେ ହୁଏତ ସେ ଦେଖିବ ଯେ ଗୁଣ୍ଡାଏ ଠେଙ୍ଗା, ଗୁଣ୍ଡାଏ ପାହାର ଧରି ଖୁବ୍ ଓଜନିଆ ଚୋବଦସା ବୁଟ୍ ପିନ୍ଧି, ଗ୍ରୀଷ୍ମ ଫୁଲେଇ, ନାଲି ଫୁଲେଇ, ରଙ୍ଗା ଆଖିରେ ପିଶାଚ ଭଳି କିଏ ଗୋଟାଏ ଦଉଡ଼ି ଆସୁଛି, ବାପ ପୁଅଙ୍କୁ ବାନ୍ଧିବାନ୍ଧି ପକେଇ ଗୋଇଠା ପରେ ମାରୁଛି ଗୋଇଠା, ଠେଙ୍ଗାରେ ପ୍ରହାର କରୁଛି, ଆଉ ତାଙ୍କୁ ତଳେ ପକେଇ ପିଠିଉପରେ ତା'ର ଗୋବଦସା ବୁଟ୍ ପିନ୍ଧି ମାଡ଼ି ଚକଟୁଛି । ତା'ପରେ ଖୁବ୍ ଠୋ' ଠୋ' ହସି, ଆଖି ନଚେଇ କହୁଛି—କ'ଣ ମଜା ପାଇଲ ? ମଜା ପାଇଲ ? ବାହାଦୂରୀ ଦେଖାଇ କଲ୍ୟାଣୀ ପରି ବଡ଼ ଲୋକଙ୍କ କଥା ଶୁଣୁ ନଥିଲ ଟିକେ, ଏଥର ମଜା ପାଅ ।

ଆଉ ସେଇ ଅତ୍ୟାଚାରୀ ପିଶାଚଟା ହେଉଛି :—ଦାରିଦ୍ର୍ୟ, ଯିଏ କି ତା'ର ମ୍ୟାଜିକ୍ ଓ୍ୱାଣ୍ଡ୍ ଟା ଧରି ଘର ଭିତରେ ଗୋଟାଏ ମାଲିକ ପରି ଠିଆ ହୋଇ କହୁଛି—ହୁସ୍··· , ହୁସ୍··· , ଯାଃ··· , ଗୋଟାଏ ଲୁଗା ଚିରି ଯା' । ଲୁଗାଟିଏ ଚିରିଯାଇଛି । ଯାଃ··· , ଗୋଟାଏ ଚଉକିର ଗୋଡ଼ ଭାଙ୍ଗି ଯା' । ଚଉକିର ଗୋଡ଼ ଭାଙ୍ଗିଯାଇଛି । ଘର ଛପର, ଫୁର୍ ର୍ । ଘର ଛପର ଉଡ଼ିଯାଇଛି । ପାଚେରୀ କାନ୍ଥଟା ଅଧା ଭୁଷୁଡ଼ି ଯା'··· । ଭୁଷୁଡ଼ି ଯାଇଛି । ଆଉ ସେଇ କାନ୍ଥ ଭିତରେ ରହି ଯା' ଗୋଟାଏ ବିଷଧର ଚନ୍ଦ୍ର । ସାପଟାଏ ରହିଛି । ଡରି ବାପ ପୁଅଙ୍କୁ । ଅଧରାତିରେ ସୁଁ ସୁଁ ପବନ ତୋଳି ସୁବୋଧକୁ ଡରାଇଛି । ଘରେ ବହୁତ ଜନ୍ତୁ ବୁଲୁଛନ୍ତି ; ଚୂଚୁନ୍ଦ୍ରା, ମୂଷା, ଅସରପା ବୁଲ୍ । ସେମାନେ କାହାକୁ ନଡ଼ରି ବୁଲୁଛନ୍ତି । ଗୋଟାଏ ଖାତ ପୂର୍ବ ଦାଣ୍ଡିଏ ହୁଅନ୍ତି ।

ପୂର୍ବ ହାଣ୍ଡିଏ ଭାତ ଗୋଟାଏ ଭାତ ହେଇଯାଅ । ପ୍ରକୃତରେ ଭାତ ହାଣ୍ଡିଟା ଖାଲି ହୋଇଯାଉଛି । ମନିବ୍ୟାଗର ଟଙ୍କା, ଉଡ଼ ଉଡ଼ ଯ··· । ମାସର ପ୍ରଥମ ସପ୍ତାହରେ ଟଙ୍କା ନାହିଁ । ଗୁଡ଼ାଏ ଶିଉଳି, ଗୁଡ଼ାଏ ଅଳନ୍ଧୁ, କଳା, ଅଳିଆ ଘରଟା ସାରା ଲଗି ଯାଅ । ଘରଟା ଯାକ ତା'ର କଥାରେ ପୂର୍ଣ୍ଣ ହେଇଯାଉଛି । ମଶା, ମାଛି ଘରଟା ସାରା ସବୁବେଳେ ପୂରି ଥାଅ, ଯେତେ ସଫା କଲେ ବି ପୁଣି ଯାଅନ୍ତି, ବରଂ ବେଳକୁ ବେଳ ବଢ଼ି ଉଠ । ସେମାନେ ସେଇ ପିଶାଚଟା କଥା ମାନନ୍ତି । ତା'ପରେ ସେଇ ପିଶାଚଟା ଯେତେବେଳେ ତା'ର ଛଡ଼ିଟା ଧରି ସୁବୋଧର ବକ୍ଷ ଉପରେ ବୁଲେଇ ଆଣିଲା ଆଉ କହିଲା—ଓଁ··· ହ୍ରୀଁ ହ୍ରୀଁ—ବଦ୍ୟା ! ବଦ୍ୟା ଯା' ପଳା—ଯା' ପଳା; ସୁବୋଧ ଫେଲ ହଉ, ଟଙ୍କା ଖରଚ ହେଇ ଯାଉ, ସେତିକବେଳେ ସୁବୋଧ ଚିତ୍କାର କରି ଉଠିଲା—ସାବଧାନ୍ !

ପିଶାଚଟା ଆଖି ନଚେଇ ସୁବୋଧକୁ ଚାହିଁଲା—ଟୋକାଟାର ଆଣ୍ଠୁ ଏତେବେଳେ ଯାଏ ଭାଙ୍ଗିନ ।

ପିଶାଚଟା ହୋ' ହୋ' ହସି ଉଠିଲା ।

ତା'ର ହସ ପ୍ରତି ଭ୍ରୂକ୍ଷେପ ନକରି ସୁବୋଧ ତା'ର ସମସ୍ତ ଶକ୍ତି ଖଟାଇ, ପାଟିକରି ଉଠିଲା—ମୁଁ ବି ଡେପୁଟୀ ହେବି । ମୁଁ ବି ଡେପୁଟୀ ହେବି । ଦାରିଦ୍ର୍ୟ, ତୁ ସିନା ଘରଟା ଉପରେ, ମୋ ଉପରେ, ମୋ ବାପାଙ୍କ ଉପରେ ଶାସନ ଚଳାଇ ପାରିବୁ, କିନ୍ତୁ ମୋର ମୁଣ୍ଡ ଭିତରେ ସେଇ ଯୋଉ ବୁଦ୍ଧିଟା ନିହାତି ସୂକ୍ଷ୍ମ ଭାବରେ ରହିଛି, ତା' ଉପରେ ଶାସନ ଚଳାଇପାରିବୁନି । ସେଇ ବୁଦ୍ଧି ହିଁ ମତେ ପରୀକ୍ଷାରେ ଫାଷ୍ଟ କରିବ, ସେଇ ହିଁ ମତେ ଡେପୁଟୀ କରାଇବ ।

ଘୁଷ୍ଟିପିଷ୍ଟି ହେଇ, ଗୋଟାଏ ଚିର କାମିଜ୍ ପିନ୍ଧି ସୁବୋଧ କଲ୍ୟାଣୀଙ୍କଘରକୁ ମୁହାଁଇଲା । କାମିଜ୍‌ଟାର ପିଠି ପାଖେ ପନ୍ଦର ଦିନ ତଳେ ରାନ୍ଧୁ ସିଲାଇ କରି ଦେଇଥିଲା, ଆଜି ପୁଣି ସେଇ ସିଲାଇ ପାଖରେ ଗୋଟାଏ ଚିର ଦେଖାଯାଉଛି ।

ସେ ଚିରଟା ସୁବୋଧର ଆଖିକୁ ଦେଖା ଯାଉ ନ ଥିଲା ।

ପ୍ରକୃତରେ ଏଇ ଚସ୍ମଗୁଡ଼ାକ ସୁବୋଧ ଶ୍ରେଣୀୟ ଗରିବଗୁଡ଼ାଙ୍କୁ ଆଦୌ ବଶେନା ।

ସୁବୋଧର ଘର କଲ୍ୟାଣୀଙ୍କ ଘରଠାରୁ ବେଶୀ ବାଟ ନୁହେଁ, ପ୍ରାୟ କହିବାକୁ ଗଲେ ତାଙ୍କ ଘରକୁ ଲାଗି । କଲ୍ୟାଣୀଙ୍କର ହତା ଆର-ପାଖେ ଯେଉଁ ଗୁଳଘରଟା ଥିଲା, ସେଇଠି ସୁବୋଧ ରହୁଥିଲା । ଟୁର୍ରେ ଗଲାବେଳେ କମ୍ବା ଅନ୍ୟକୌଣସି କାମରେ ସୁବିଧା ହେବ ବୋଲି ସୁବୋଧର ବାପା ରହୁଥିଲେ ସେହି ଘରେ ଅବଶ୍ୟ ବଡ଼ଚରଣଙ୍କ ନିର୍ଦ୍ଦେଶରେ ।

ସୁବୋଧ ଓ କଲ୍ୟାଣୀଙ୍କର ଘର ମଝିରେ ଥିଲା ଗୋଟାଏ ସାନ ପଡ଼ିଆ । ଏଇ ପଡ଼ିଆକୁ ଟପି ସୁବୋଧକୁ ଆସିବାକୁ ହୁଏ ସବୁଦିନ ସକାଳେ କଲ୍ୟାଣୀଙ୍କର ଘରକୁ । ସକାଳେ କାହିଁକି ଅନେକ ସମୟରେ ତାକୁ ଆସିବାକୁ ପଡ଼େ, ଏଥିରେ ତା'ର ଇଚ୍ଛା, ଅନିଚ୍ଛାର କୌଣସି ପ୍ରଶ୍ନ ଉଠେନା ।

ସୁବୋଧ ଅମିତାକୁ ପଢ଼ାଉଥିଲା । ଅମିତା ପାଇଁ ଯେତେବେଳେ ଏଡ଼େ ବଡ଼ କଟକଣାରେ କୌଣସି ମାଷ୍ଟର ମିଳୁ ନ ଥିଲେ ଏବଂ ଯେଉଁ-ମାନେ ମିଳୁଥିଲେ ସେମାନେ ଯେତେବେଳେ ଗୁଣ୍ଡାର ଘରକୁ ଆସିବାକୁ ବିଲ୍କୁଲ ନାରାଜ ହେଉଥିଲେ ଏବଂ ଆସିଲେ ମାସିକ ଶହେଟଙ୍କା କେବଳ ଦିନକୁ ଘଣ୍ଟାଏ ପାଠ ପଢ଼ାଇ ଦବାକୁ କହୁଥିଲେ, ସେତେବେଳେ କଲ୍ୟାଣୀଙ୍କର ଝିଅକୁ ଟ୍ୟୁସନ୍ ପଢ଼ାଇବା ନିଶା ଏକଦମ୍ ଛାଡ଼ିଯାଇଥିଲା । କିନ୍ତୁ ସେ ଛାଡ଼ିବାର ପାତ୍ରୀ ନୁହନ୍ତି, ଯେମିତି ହେଲେ ଅମିତାକୁ ପଢ଼ାଇବେ ଅମିତାଟାକୁ ଯଦି ବୃତ୍ତିଟିଏ ନ ପାଏ ତେବେ ସେ ହୁଏତ ପରୀକ୍ଷାରେ ଖରାପ କରିବ । କୌଣସିମତେ ତାକୁ କରାଇବ ଫାଷ୍ଟ ।

କଲ୍ୟାଣୀ ଧରିଲେ ଏଇ ସୁବୋଧକୁ । ମାସକୁ ତିରିଶ ଟଙ୍କା ।

ଏଇ ତିରିଶ ଟଙ୍କାରେ ସୁବୋଧ ନ କରେ କ'ଣ ? ଝିଅକୁ ପାଠ ପଢ଼େଇବା, ବଜାରରୁ ସଉଦା ଆଣିବା, ପରିବା ଆଣିବା, ଏପରି ଅନେକ ସମୟରେ ତା'ର ହାତରେ ରିକ୍ସା ପର୍ଯ୍ୟନ୍ତ ଡକାଯାଏ ।

ଏ ଘରେ ବଡ଼ଚରଣ ପ୍ରାୟ କେତେବେଳେ ରହନ୍ତି ତାହା ଜଣା ପଡ଼େନା । ସେ ତ ସରକାରଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀ । ନଇଲେ

କସ୍ମା କ'ଣ ଏତେ ଚଞ୍ଚଳ ଜଣେ ସିନିଅର ଡେପୁଟି କଲେକ୍ଟର ହୋଇପାରେ ? ସ୍ୱପ୍ନଚରଣ ପ୍ରାୟ ସଦାବେଳେ ତାଙ୍କ ଫାଇଲ ପତ୍ର ଅଫିସ କାମରେ ବ୍ୟସ୍ତ । ନଚେତ୍ ଟୁର୍ । ଏଇ ଟୁର୍ ଆଉ ଅଫିସ ଫାଇଲ୍‌ଛଡ଼ା ଆଉ ଅଛି ଗୋଟାଏ ଜିନିଷ, ଯେଉଁଟା କି ତାଙ୍କର ଘର, ସେ କଥା ପ୍ରାୟ ବୁଝିବାକୁ ତାଙ୍କର ସମୟ ନ ଥାଏ । ଅବଶ୍ୟ ସେ ନ ବୁଝିଲେ ଯେ ଘରର କିଛିଟା ହାନି ହୋଇଯାଏ, ସେ କଥା ନୁହେଁ । କାରଣ ସେ କଥାଟାକୁ ଥାଆନ୍ତି କଲ୍ୟାଣୀ ।

ଅସମ୍ଭବ ବିଷୟବୁଦ୍ଧି ଏଇ କଲ୍ୟାଣୀଙ୍କର ।

କିନ୍ତୁ ସେ ବିଷୟବୁଦ୍ଧିରେ ଦେଖାଯାଏ କେମିତି ଗୋଟାଏ ହିଂସ୍ର ସ୍ୱାର୍ଥପରତା, ପରଠାରୁ ସବୁ ଲୁଟି ନେବେ, ସବୁ ଶୋଷିନେବେ, ଅଥଚ କାହାକୁ କିଛି ଦେବେ ନାହିଁ ।

ସୁବୋଧ ଅନେକ ସମୟରେ ଭାବେ, ଏଇ କଲ୍ୟାଣୀ ଦେବୀ ଯଦି ଗୃହିଣୀ ନ ହୋଇ କଲେଜର ଅଧ୍ୟାପିକା କିମ୍ବା କଚେରୀର ଉକିଲ ଭୂମିକାରେ ଅବତୀର୍ଣ୍ଣା ହୋଇଥାନ୍ତେ, ତେବେ ତାଙ୍କର ପ୍ରଖର ବୁଦ୍ଧି କିମ୍ବା ସେଇ ଯେଉଁ ଏକ୍ସପ୍ରେସ ତୀବ୍ର କଥାପଟୁତା; ଯାହାକି କୌଣସି କାରଣରୁ ଆରମ୍ଭ ହେଲେ ଆଦୌ ଚଞ୍ଚଳ ବନ୍ଦ ହୁଏନା— ଘରଟାସାରା କାନ୍ଥବାଡ଼ ଥରିଉଠେ, କାନ ଅତଡ଼ା ପଡ଼ିଯାଏ, ଗୋଡ଼ଠାରୁ ଆରମ୍ଭ କରି ସୁର୍କିଯାଏ ସମସ୍ତେ ହୋଇଯା'ନ୍ତି ସ୍ତବ୍ଧ-କାକୁସ୍ଥ—ସତେ ଯେପରି କଥା ନୁହେଁ, ଗୁଡ଼ାଏ ହାବେଲୀ ବାଣ ଶବ୍ଦ କରି ଫାଟିରୁ ଫଟ୍‌ଫାସ୍ କାହାରିପଛ ଘରଟା ସାରା ଏଣେତେଣେ ବୁଲୁଛନ୍ତି, ଘୁମ୍‌ଚକଗ୍ନି ଖାଉଛନ୍ତି, କାନ୍ଥପାକ କବାଟପାକ ମୁଣ୍ଡ ବାଡ଼େଇ ହଉଛନ୍ତି, ଆଉ ଚେଷ୍ଟା କରୁଛନ୍ତି ଘରର ଛାତଟା ଉଠାଇ ଦେବାପାଇଁ,—ସେଇ ବାକ୍‌ପଟୁତା ଯୋଗୁ ସେ ଖୁବ୍ ଉନ୍ନତି କରିପାରିଥାନ୍ତେ ।

ଆଃ···ଏତେ ବଡ଼ ଜିନିଷ୍ ଯାହା ଘରର ଚାରିକାନ୍ଥ ଭିତରେ ବଣର ମଲ୍ଲୀ ପରି ଝାଉଁଳିଗଲା !

ସୁବୋଧ ଦୂରରୁ ଦେଖିଲା—କଲ୍ୟାଣୀ ଦେବୀ ଘରର ଲନ୍ ନୁହେଁ, ପଡ଼ିଆ ଆଗରେ ଠିଆ ହୋଇ ତା'ର ଆଡ଼କୁ ଚାହିଁ ରହିଛନ୍ତି । ଦୂରରୁ

ଦିଶୁଛି ନାଗ ରୂପରେ ଯେପରି ଏକ କୃଷ୍ଣ ମାତଙ୍ଗୀ ଠିଆ ହୋଇଛି, ନିତ-ମ୍ବରେ ଆଉ ବକ୍ଷରେ ଗୁଡ଼ାଏ ଗୁଡ଼ାଏ ମାଂସର ସ୍ତୂପୀକୃତ ବନ୍ୟତା ଧରି ।

ସୁବୋଧ କଲ୍ୟାଣୀଙ୍କୁ ନମସ୍କାର କଲା । ସେ ସବୁଦିନ ଏପରି କରେ ।

କଲ୍ୟାଣୀ କହିଲେ—ଆଜି ଏତେ ଡେରି ଯେ ?

ସୁବୋଧ କେବଳ ନୀରବ ରହିଲା ।

ଏମିତି ପଢ଼ାଇଲେ ଅମିତା କ'ଣ ତା'ର ପରୀକ୍ଷାରେ ଫାଷ୍ଟ ହବ ? ମୁଁ ଚାହେଁ, ଅମିତା ତା'ର ପରୀକ୍ଷାରେ ଯେମିତି ହବ ଫାଷ୍ଟ—ଫାଷ୍ଟ । ବୁଝିଲ ?

ସୁବୋଧ ଚାହିଁ ରହିଥିଲା କଲ୍ୟାଣୀଙ୍କ ମୁହଁକୁ; କହିଲା—ବୁଝିଲି ।

ଅମିତାଠାକୁ ସବୁ ଆସେ ନା ! ମୋ ପିଲାଗୁଡ଼ା କ'ଣ ଯାହାତାହା ଘର ପିଲା ହୋଇଛନ୍ତି ଯେ ବୋକା ହୋଇଯିବେ ? ଖାଲି ତାକୁ ଟିକେ ବାଟ ଦେଖେଇ ଦେଲେ ସେ ମନକୁ ମନ ମାଡ଼ିଯିବ ! ମାଷ୍ଟର ନଥିଲେ ସେ ହୁଏତ ସେକେଣ୍ଡ ଥାର୍ଡ଼ ହୁଅନ୍ତା । କିନ୍ତୁ ମୁଁ ତ ଚାହେଁ ସେ ହବ ଫାଷ୍ଟ । ଏଥିପାଇଁ ତୁମକୁ ସୁବୋଧ ଯାହା ଟିକେ ପରିଶ୍ରମ କରିବାକୁ ପଡ଼ିବ ।

ସୁବୋଧ ନୀରବରେ ପରି ଚାହିଁରହିଥିଲା କଲ୍ୟାଣୀଙ୍କ ମୁହଁକୁ ।

ଜାଣିଛ ସୁବୋଧ, ପିଲାଗୁଡ଼ା ଫାଷ୍ଟ ନ ହେଲେ ମୋ ମୁଣ୍ଡରେ ସଇତାନ ପଶିଯାଏ; କାରଣ ପିଲାବେଳେ ମୁଁ ସବୁ ପରୀକ୍ଷାରେ ହଉଥିଲି ଫାଷ୍ଟ । ମୋଇ ଫାଷ୍ଟ ହବାଟା ପିଲାମାନେ ମା'ଠାରୁ ଶିଖିବା ଉଚିତ୍, ନା କ'ଣ କହୁଚ ତମେ ?

ଆଜ୍ଞା ହଁ ।

ହଉ ଯାଅ । ତମକୁ ପଢ଼ାଘରେ ଅମିତା ଅପେକ୍ଷା କରିଛି ।

ସୁବୋଧ ଧୀରେ ଧୀରେ ଘର ଭିତରକୁ ଚାଲିଯାଇଥିଲା । ପଢ଼ା-ଘରର ଝରକା ଫାଙ୍କରେ ରାନୁ ଦିଶୁଛି ।

ସୁବୋଧ ଦେଖିଲା ପିଜୁଳି ଗଛ ତଳେ ବନ୍ଧା ହୋଇଥିବା ଗାଈ ପାଖରେ ଠିଆହୋଇ ରାନୁ ଗୋଟାଏ ନଡ଼ାବିଡ଼ା ଖୋଲି ଦଉଚି ।

ପିଜୁଳି ଗଛର ଫୁଲ ପାଖୁଡ଼ା ଆଉ ଫୁଲର ମହୁ ଝିରି ଝିରି ଝରିପଡ଼ୁଛି ରାନୁର ମଥା ଉପରେ ।

ଏ ଭରା ପିଜୁଳି ଗଛ— ଫୁଲ ଫଳଭରା ପିଜୁଳି ଗଛ । ଅସୁମାରି ମହୁମାଛିଙ୍କର ଗୁଣୁ ଗୁଣୁ ଗୁଞ୍ଜନ ଭରା ପିଜୁଳି ଗଛ ତଳେ ରାନୁଟା କାହିଁକି ଅସାମାନ୍ୟ ସୁନ୍ଦରୀ ଦେଖାଯାଉଥିଲା ।

ଚାରିଆଡ଼େ ପିଜୁଳି ଫୁଲର ହାଲୁକା, ଅଥଚ ମାଦକତାଭରା ସୁରଭିର ଆବେଶ ।

ଚାରିଆଡ଼େ ରାନୁର ରୂପ ଦ୍ୟୁତି । ଝଲକ ଝିଲମିଲ ।

ଆଃ, ଝିଅଟାର ମଥାର କେଶ ପୁଣି ଏତେ ଲମ୍ବ ହୋଇପାରେ ! ସକାଳୁ ସୂର୍ଯ୍ୟ ଉଦୟ ନ ହଉଣୁ ସାରା ପୃଥିବୀଟାଯାକରେ ଖେଳେଇ ହୋଇପଡ଼ିଥିବା ବଢ଼ିଲଇ ହୋଇ ଚଢ଼ିଥିବା ରାତି ଯେମିତି ଗୋଟାଏ ହୋଇ, ଘନୀଭୂତ ହୋଇ ଖୁନ୍ଦାଖାନ୍ଦ ଏଇ ଦୋଳିଖେଳୁଥିବା କେଶ ଭିତରେ ଲୁଚିଯାଇଛି ସୂର୍ଯ୍ୟଙ୍କୁ ଡରି । ଖୁବ୍ କଳା । ଖୁବ୍ ନିବିଡ଼ । ଖୁବ୍ ପ୍ରଗାଢ଼ ।

ସୁବୋଧ ଭାବିଲା— ଏ ଝିଅଟା ରାନୁ ନୁହଁ, ଏ ବୋଧହୁଏ କୋଣାର୍କର ଅଳସୀ କନ୍ୟା । ଶୁଣାଯାଏ କୋଣାର୍କର ପଥରମୂର୍ତ୍ତିଗୁଡ଼ା ରାତିରେ ଜୀବ ପାଇ ରାତିର ନିଜନ ବାଲୁକାବେଳାରେ ନାଚନ୍ତି । ବୁଲିଚାଲି କରନ୍ତି । ପୁଣି ସକାଳ ହୋଇଗଲେ ଯୋଉ ପଥରକୁ ସେଇ ପଥର ହୋଇ ଯାଆନ୍ତି । କିନ୍ତୁ ଏଇ ମୂର୍ତ୍ତିଟା ବାଟ ଭୁଲି ଏଠାକୁ ଚାଲିଆସିଲା ରାତିରାତି; ଆଉ ସକାଳୁ ଯାଇପାରିଲା ନାହିଁ ତାର ଯଥାସ୍ଥାନକୁ । ହୋଇଗଲା ରାନୁ । ରକ୍ତ ମାଂସର ରାନୁ ।

ସେ ଚଗଙ୍ଗା ନୁହେଁ କି ଗେଡ଼ା ନୁହେଁ । ଉଚ୍ଚତା ଯାହା ହବାର କଥା ଠିକ୍ ତାହା ଥିଲା । ସ୍ଥୂଳଭାବେ ଦେଖିଲେ ସେ ସୁନ୍ଦରୀ । ସୂକ୍ଷ୍ମ ଭାବରେ ଦେଖିଲେ ଜଣାପଡ଼ିବ ଯେ ସେ ଅପରୂପା, ଅନନ୍ୟ ମନୋହାରିଣୀ । ପ୍ରଚୁର— ପ୍ରଚୁର ରୂପର ଏକ ହୀରା-ନୀଳା-ମାଣିକ୍ୟର ଖଣି । ତାଙ୍କ ଖଞ୍ଜନ ନୟନରେ ନାହିଁ ପିପାସା, ନୀଳିମାମୟୀ ଆକାଶର ସୁବ୍ୟାପ୍ତ ପ୍ରଶାନ୍ତି, ଯେପରି ନୟନ ଦୁଇଟିରେ ନୀଡ଼ ବାନ୍ଧି ରହିଯାଇଛି । ଖୁବ୍ ସୁନ୍ଦର ମୁହଁ । ଖୁବ୍ ସୁନ୍ଦର ନାସିକା । ଖୁବ୍ ସୁନ୍ଦର ଅଧର । ସବୁକିଛି ସୁନ୍ଦର । ତାର

। ଶ୍ରୀ ।

ବାହୁ, ତାର ବକ୍ଷ, ତାର କଟି, ତାର ନିତମ୍ବ, ତାର ପାଦରେ ଯେପରି ଅସମ୍ଭବ ସିମେଟ୍ରୀ—ଯୌବନୋଚିତ ସିମେଟ୍ରୀ । ନିଖୁଣ । ନିର୍ଭୁଲ ।

ସୁବୋଧ ଭାବିଲା—ଏ ରୂପେ ପ୍ରଖରତା ନାହିଁ; ଏ ରୂପରେ ହୁ' ହୁ' ଜ୍ୱଳନର ତୀବ୍ରତା ନାହିଁ । ଏ ରୂପରେ ଗୁଡ଼ାଏ ହା' ହୁତାଶମୟ ତୃଷ୍ଣାର ଭସ୍ମାବହତା ନାହିଁ । ଏ ରୂପ ଯେପରି ଶୀତ ସକାଳର ଶିଶିର ଟୋପାଏ । ଏ ରୂପ ଯେପରି ପ୍ରଥମ ଆଷାଢ଼ର ପ୍ରଥମ ବର୍ଷା ଟୋପାଏ । ପବିତ୍ର । ନିର୍ମଳ । ଅନୁପମ । ଗଇଣ ଫୁଲଟି ପରି ହସି ଉଠିଛି ।

ସୁବୋଧର ମନେହେଲା—ଏ ରାନୁଟା ଗୋଟାଏ ସନ୍ନ୍ୟାସିନୀ, କାରଣ ପ୍ରଗଲ୍ଭତା ନୁହେଁ, ଉଚ୍ଛୃଙ୍ଖଳତା ନୁହେଁ, ଚପଳତା ନୁହେଁ, ସ୍ଥୈର୍ଯ୍ୟ, ସଂକଳ୍ପ, ଆତ୍ମନିଷ୍ଠା, ଐକାନ୍ତିକତାର ଉଜ୍ଜ୍ୱଳ ଆଭା ତାର ମୁହଁର ଚତୁଃପାର୍ଶ୍ୱରେ ଝଳ ଉଠୁଛି ।

ସେ ପିନ୍ଧିଥିଲା ଗୋଟାଏ ମୋଟା, ଅଥଚ ସଫା ପରିଷ୍କାର ଧଳା ଲୁଗା । ଖୁବ୍ ଉଜ୍ଜ୍ୱଳ ନାଲି ଧଡ଼ି, ସେ ଲୁଗାକୁ ବେଢ଼ିଥିଲା, ଆଉ ପିନ୍ଧିଥିଲା ନାଲିରଙ୍ଗର ବ୍ଲାଉଜ ।

କିଛି ବେଶଭୂଷା ନାହିଁ । କିଛି ଆଡ଼ମ୍ବର ନାହିଁ । କିଛି ସ୍ୱଚ୍ଛ୍ୟ-ଚିକଣ ଦେଖାଇଲା ଭାବ ନାହିଁ । କେବଳ ସେ ସହଜ ଭାବରେ ବଢ଼ି ଉଠିଛି । ସରଳ ଭାବରେ ନିଜକୁ ପ୍ରକାଶ କରିଛି । ସାବଲୀଳ, ସ୍ୱଚ୍ଛନ୍ଦ ସହଜ ଆତ୍ମବିକାଶ । ସେଠାରେ ସକଳ କୃତ୍ରିମତା ବହୁଦୂରରେ । ଇତରପଣ ବହୁଦୂରରେ । କପଟତା ବହୁଦୂରରେ ।

ସୁବୋଧ ଦେଖିଲା ଯେ, ଦଶମ ଶ୍ରେଣୀର ଛାତ୍ରୀ ଅନିତାକୁ ସେ ଯେଉଁ ଗଣିତ ବୁଝାଉଥିଲା, ସେ ଗଣିତ ଏହା ଭିତରେ ଭୁମୁଳ ଗୋଲକ-ଧନ୍ଦାରେ ପରିଣତ ହୋଇ ଯାଇଛି । ସେ ଗଣିତର ଧାରା, ଉପଧାରା ତା ମୁଣ୍ଡରେ କିଛି ପଶୁନାହିଁ ।

ଗଣିତ ବଦଳରେ ରାନୁର ଚିନ୍ତା ତାକୁ ସମ୍ପୂର୍ଣ୍ଣ ଗ୍ରାସ କରିଛି ।

ରାନୁ ଗାଈଟାକୁ ନଡ଼ା ମୁହାଇଁ ଗୁହାଳ ସଫାକରିବାରେ ବ୍ୟସ୍ତ ଥିଲା ।

ତାର ଆଦୌ ବିତୃଷ୍ଣା ନାହିଁ, ଆଦୌ ଘୃଣା ନାହିଁ, ଆଦୌ ବିକାର ନାହିଁ । ସେ ଶାନ୍ତ ଧୀର ସ୍ଥିର ଭାବରେ ଗୋବର, ମୂତଗୁଡ଼ାକ ତାର ସୁନା ସରୁ ଆଙ୍ଗୁଳରେ ଘାଣ୍ଟୁଛି, ପୋଛୁଛି । ପରିଶ୍ରମରେ ମୁହଁ ତାର ନାଲି । ବାହୁର ମାଂସପେଶୀ ସବୁ ଫୁଲି ଉଠୁଛି । ଦେହସାରା ଝାଳର ବିନ୍ଦୁ ଫୁଟି ଉଠୁଛି ।

ଏ ଘରେ ଚାକର ନାହିଁ ।

ଏ ଘରେ ଚାକର ବି ରହିପାରିବ ନାହିଁ, ଯଦି ରହିବ, ଦଶ ପନର ଦିନରେ ଚାଲିଯିବ, କାରଣ କଲ୍ୟାଣୀଙ୍କର ବ୍ୟବହାର । ତା ଛଡ଼ା ନମିତା, ଅସ୍ମିତାଙ୍କର ବହୁ କଥିବ ତା ଉପରେ ଗୋଟାଏ କ୍ରୋଧ ହୋଇପଡ଼ିବ ।

କେତେ ଚାକର ଆସିଛନ୍ତି, କେତେ ଚାକର ଚାଲିଯାଇଛନ୍ତି; କେହି ବର୍ଷେ ଦି' ବର୍ଷ ରହିନାହିଁ; କିନ୍ତୁ କେହି ଚାକରର ଅଭାବ ଅନୁଭବ କରିନାହିଁ । ବିନା ଚାକରରେ ଏ ଘରେ ସବୁ କାମ ସୁରୁଖୁରୁରେ ଚାଲି ଯାଉଛି ।

ଘରର କାମରୁ ରିହାତି ମିଳିବାପାଇଁ ବିପ୍ରଚରଣ ଅନେକ ସମୟରେ ଚାକରଖୋଜି ଆଣିଛନ୍ତି; କିନ୍ତୁ କଲ୍ୟାଣୀ ସେ ଚାକରକୁ ବାହାର କରି ଦେଇଛନ୍ତି । ବିପ୍ରଚରଣ କେତେ ଖୋଜି କେଉଁଠୁ ଆଣିବେ ଏଇ ଚାକରଦଳଙ୍କୁ ? ସେ ନିରସ୍ତ ହୋଇଯାଆନ୍ତି ଅନେକ ସମୟରେ । ଠିକ୍ ଏତିକିବେଳେ ବିପ୍ରଚରଣ ଦେଖନ୍ତି, ତାଙ୍କର ଝିଅ ଘରୁ ସବୁ କାମ ହସି ହସି ତୁଲେଇ ଦିଉଛି । ବିଦ୍ରୋହ ନାହିଁ — ବିକ୍ଷୋଭ ନାଇଁ, ସେ ଏ ପାଖ ସେପାଖ ଦଉଡ଼ି, ବୁଲି, ଘଣ୍ଟାକର କାମ ମୁହୂର୍ତ୍ତକରେ ସାରି ଦଉଛି ।

ଆହା···, ଘରଟା ଝିଅ ହଉ ହଉ ଚାକରାଣୀ ହୋଇଗଲା ।

ସୁବୋଧ ସେଇ ପାଠ ପଢ଼ାଉଥିବା ସମୟରେ ଦେଖିଲା — ଘରୁ ଗାଣ୍ଡୁଆ ପରେ ଗାଣ୍ଡୁଆ ଗୋବର ଟେକି ଅଣନିଃଶ୍ୱାସୀ ହୋଇ ପକାଉଛି ଗୋଟାଏ ଖତଗଦାରେ ।

ସେପାଖ ଘରେ ନମିତା ବୋଧହୁଏ ଅଛନ୍ତି; କାରଣ ସେ ତ ନଷ୍ଟପ୍ରୁ ରେଡ଼ିଓ ବଜାଉଛନ୍ତି । ସେ ରେଡ଼ିଓ ବଜାଇଲା ବେଳେ ହାଇଷ୍ପିଡ଼୍‌ରେ ବଜାନ୍ତି । ଖଟଟା ଉପରେ ତକିଆକୁ କୁଣ୍ଢେଇ ତାଙ୍କର ବାଳ ଗୁଡ଼ାକୁ

ମେଳ ଦେଇ ରେଡ଼ିଓ ଶୁଣୁଥିବେ । ବଦ୍ଧଳ ଗନ୍ଧ, ବଦ୍ଧଳ ଚକଅ ଆଉ ଏଇ ଉଦାସ ସକାଳରେ ଟିକେ ଶୋଇରହିବାକୁ ତାଙ୍କୁ ଭାରି ଭଲଲାଗୁଛି; ନଇଲେ ସେ ଏ ଘରଟାରେ ଏତେବେଳଯାଏ ପଡ଼ିନଥାନ୍ତେ । ଘରୁ ବାହାରି ଏ ପାଖ ସେ ପାଖ ବୁଲି ଫୁଲଗଛ ନଇଲେ ଫୁଲଦାନୀରେ କୋଉ ଫୁଲ ରହିବ, ଡୋର ସ୍କ୍ରିନ୍; ଉଇଣ୍ଡୋସ୍କ୍ରିନ୍ ବଦଳିବ ନା ନାହିଁ ସେ ବିଷୟରେ ବିଚାର କରୁଥା'ନ୍ତେ ।

ନମିତା ବୋଧହୁଏ ଆଜି କଲେଜ ଯିବେନି—ସୁବୋଧ ଭାବିଲା, କାରଣ କଲେଜ ଯିବାର କିଛି ଲକ୍ଷଣ ନାହିଁ । ତା' ବଦଳରେ ଶୁଭୁଛି ଗୁଡ଼ାଏ ଗୁଣୁ ଗୁଣୁ ଗୀତ, ଗୁଡ଼ାଏ ଖଣ୍ଡିକାଶ ଆଉ କିଛି ଖସ୍ ଖାସ୍ ଶବ୍ଦ ଆଉ କମର୍ସିଆଲ ରେଡ଼ିଓ ସିଲୋନ୍‌ର ଇଂରାଜୀ ବିଭାଗ ବିଟ୍‌ଲସ ଗୀତ । ଖାଲି ଗୁଡ଼ାଏ ଟ୍ରୁ ଟିକଟୁ ଜ୍ୟାଜ୍ ।

ସୁବୋଧର ଦୁ'କାନକୁ ଦୁ ପ୍ରକାର ଶବ୍ଦ ଶୁଭିଲା—ଗୋଟାଏ କାନରେ ଶୁଭୁଛି, ଗୋବର ପକାଇବାର ଶବ୍ଦ ଆଉ ଅନ୍ୟକାନରେ ଶୁଭୁଛି ବିଟଲସ୍ ବ୍ରଦର୍ସଙ୍କର ହଇଚଇ ଶବ୍ଦ । ଗୋଟାଏ ଦିଗରେ ଗୋଟାଏ ଝିଅ ଗୋବରରେ ସାଉଁଟି ହେଉଛି, ଅନ୍ୟ ଦିଗରେ ଆଉ ଗୋଟାଏ ଝିଅ ତା'ର ଦେହକୁ ଅସାଡ଼ ଭାବେ ବଦ୍ଧୁଳ ଭୁଲା ଗନ୍ଧରେ ଲୋଟାଇ ରେଡ଼ିଓକୁ କୁଣ୍ଢେଇ ଧରିଛି ।

କଲ୍ୟାଣୀଙ୍କର ପାଟି ଶୁଭୁଥିଲା । ସେ ଦାଣ ପାଖକୁ ଆସି କହିଲେ—କ'ଣ ଗୁହାଳ ପୋଛା ସରିଲା ନାହିଁ ? ଚଞ୍ଚଳ ସାରି ଆସ, ତେଣେ ଭାତଗୁଡ଼ା ନକେଇ ହେଇଯିବ ।

ରାନୁ କହିଲା—ନାହିଁ ବୋଉ, ଭାତ କାହିଁକି ଜାଉ ହବ ? ମୁଁ ତ ବର୍ତ୍ତମାନ ଚୁଲିଜାଳ ପକାଇ ଆସିଛି ।

ତୁ ଗଲୁ, ଚଞ୍ଚଳ ଟିକେ ଚା' କରି ଆଣିବୁ ।

ହଁ କରି ଦଉଛି; ଏଇ ଗାଣ୍ଡୁ ଆଠା ପକାଇ ଦିଏ ।

ଏଇନା ଯୋଉ କପ୍‌ଟା କରି ଦେଇଥିଲୁ ମତେ ଭଲ ଲାଗିଲାନି । ତୁ କ'ଣ ମନଧ୍ୟାନ ଦେଇ ଚା' କରୁନୁ ? ଚା' କରିବାଟା ଗୋଟାଏ ବଡ଼ କଳା । ସମସ୍ତଙ୍କ ହାତରେ ଚା' ଭଲ ହୁଏନା । ମୁଁ ତ ପ୍ରାୟ ସବୁଦିନ ଖୁବ୍

ଭଲ ଗ୍ଲ' କରେ । ତୋ' ବାପା ଅନେକ ଥର କହନ୍ତି—ମୋ ହାତରେ ଲୁଆଡ଼େ ଅମୃତ ପୂରି ରହିଛି । ମାନେ ଫାଷ୍ଟ୍ରେ ।

ଗଲୁ ହସି ହସି କହିଲା—ଦୁଧ ପକାଇବାରେ, ଗ୍ଲ' ପକାଇବାରେ କୋଉଠି ଟିକେ ଭୁଲ ହୋଇଯାଇଥିବ ବୋଉ ।

କଲ୍ୟାଣୀ ବକ୍ତୃତା ଦେଇ କହିଲେ—ସବୁ ଭୁଲ ମାଫ୍ କରାଯାଇ ପାରେ, କିନ୍ତୁ ନିଆଁ ପାଣିରେ ଭୁଲ···! ହଉ ଶୁଣ, ହୋଇଛି ଗଲୁ ! ଗ୍ଲ' ଟିକେ ସିଝାଇ ଦବୁ, ଟିକେ ବେଶୀ ଦୁଧ ଦବୁ, ଚିନି ଟିକେ ବେଶୀ । ତା' ପରେ ଗ୍ଲ' ପରିଲ ପରେ ଟିକେ ବେଶୀ—ମାନେ ବେଶୀ ସର ଦବୁ, ବୁଝିଲୁ ?

ହଁ ବୋଉ···!

ଯା' ଚଞ୍ଚଳ ଗଲୁ । ସକାଳବେଳା ତିନିଥର ଗ୍ଲ' ନ ଖାଇଲେ ମୋର ଖାଲି ଗୁଡ଼ାଏ ଛିଙ୍କ ବାହାରିବ । ମୁଣ୍ଡ ବୁଲେଇବ । ବାହାରେ ଥଣ୍ଡା ସର୍ଦ୍ଦି ମାଡ଼ି ଆସିବ ।

ଯାଉଛି ବୋଉ, ଏଇ ସାଙ୍ଗେ ସାଙ୍ଗେ ଗ୍ଲ' ତିଆରି କରି ନେଇ ଆସିବି ।

ହଁ, ଗ୍ଲ' ସାଥିରେ ଗ୍ଲର ପାଞ୍ଚ ଖଣ୍ଡ ଲୁଣି ବିସ୍କୁଟ ଆଣିବୁ, ବୁଝିଲୁ ? ଯଦି ମିକ୍ସ୍ଚର ଚିକ୍ସ୍ଚର ଆଣିପାରୁ ଆହୁରି ଭଲ । ମିକ୍ସ୍ଚର ଗୁଡ଼ାକ ଘରେ ଯାହା ଅଛି ସେଗୁଡ଼ାକ ଏକଦମ୍ ଖରାପ । କୋଉଠୁ ଖରାପ ଜିନିଷ କଣିକ ବାପା ନେଇ ଆସିଲେ । ମୁଁ ସେଗୁଡ଼ା ଖାଇ ଦେବି, ନଇଲେ ତୁମେ ସବୁ ଖାଇଲେ; ତୁମ ଦେହ ଖରାପ ହେବ । ମୁଁ ତ ବୁଢ଼ୀ ଲୋକ, ମୋର ଦେହ ଖରାପ ହେଲେ କିଛି ଚିନ୍ତା ନାହିଁ । କ'ଣ କହୁଛୁ ଗଲୁ ?

ଗଲୁ କିଛି କହିଲା ନାହିଁ; ଖାଲି ଚାହିଁରହିଥିଲା କଲ୍ୟାଣୀଙ୍କ ମୁହଁକୁ ।

ହଁ ତୁ ଯା', ସେ ନିଆଁଲଗା ମାଷ୍ଟରଟାର ପାଟି କେଜାଣି ଜମା ଶୁଭୁନି । ହୁଁ···ଏ ପୁଣି କରିବ ଆମକୁ ଫାଷ୍ଟ୍ରେ—ଫାଷ୍ଟ୍ରେ ।

ସୁବୋଧ ବ୍ୟସ୍ତ ହୋଇ ଉଠିଲା ।

ତାଙ୍କୁ ଶୁଣିଲା କଲ୍ୟାଣୀ ଗୁଣୁ ଗୁଣୁ ହୋଇ ମନକୁ ମନ କହୁଛନ୍ତି—ସବୁତକ ଠିକ୍ ଫୁଟିଉଠନ୍ତି ମୋର କପାଳକୁ । ଟିକେ ଆଖି ଯଦି ଅନ୍ୟ ଆଡ଼କୁ ନେଇଯିବ, ତେବେ ସମସ୍ତେ ଆଖିରେ ଧୂଳି ପକେଇ ଦେବେ ।

କଲ୍ୟାଣୀଙ୍କ ପାଦ ଶବ୍ଦ ନିକଟରୁ ନିକଟତର ହୋଇ ଆସୁଥିଲା ।

ସୁବୋଧ ଅନଙ୍କୁ କହିଲା—ସଦାବେଳେ ନାଚିବ ତ ପାଠ ପଢ଼ିବ କେମିତି ? ଯଦି ପାଠ ପଢ଼ିବାକୁ ଚାହୁଁଛ, ତେବେ ଏଇ ନାଚ ଫାଚ ଛାଡ଼ ।

କଲ୍ୟାଣୀ ଗର୍ଜନ କରି ଉଠିଲେ—କ'ଣ କହିଲ ?

ଆଜ୍ଞା, ଏଇ ନାଚ କଥା କହୁଥିଲି; ମାନେ, ନାଚିଲେ ନାଚର ତାଳ ଲୟ ମନେରଖି ଗଣିତର ଫର୍ମୁଲାଗୁଡ଼ା ଅମ ସବୁ ଭୁଲିଯାଉଛି ।

କିନ୍ତୁ ସବୁ ମନେରଖିବା ଯେ ନିହାତି ଦରକାର । ନଇଲେ ସବୁ ଭୁଲିଗଲେ ସେ ହୋଇ ପାରିବ ନାହିଁ ଫାଷ୍ଟ । ନାଚ ମନେ ରଖିବ ଆଉ ପାଠ ବି ମନେ ରଖିବ । ଓଡ଼ିଶୀ ମନେ ରଖିବ, ମଣିପୁରୀ ମନେ ରଖିବ, କୁଚିପୁଡ଼ି ଭରତ ନାଟ୍ୟମ୍ ମନେରଖିବ, ଆଉ ମନେ ରଖିବ ଇସ୍କୁଲରେ ପଢ଼ି କେମିତି ଫାଷ୍ଟ ହେବ ।

ସୁବୋଧ ବୋକାଙ୍କ ପରି ଚାହିଁ ରହିଥିଲା କଲ୍ୟାଣୀଙ୍କ ମୁହଁକୁ । ହାତ ହଲେଇ, ଅକାରଣରେ ବାରମ୍ବାର ଗୁଡ଼ର ଶାଢ଼ୀକୁ ସଜାଡ଼ି କଲ୍ୟାଣୀ କହିଲେ-- କିନ୍ତୁ ତୁମର ବି ଗୋଟାଏ ବିଷୟ ମନେରଖିବା ଉଚିତ !

ଆଜ୍ଞା··· ?

ଏଇ ତୁମେ ଏତିକି ଜାଣ ଯେ ଏଥର ପରୀକ୍ଷାରେ ତୁମେ ଅମାକୁ କରିବ ଫାଷ୍ଟ ।

ମୁଁ ଜାଣିଛି ଆଜ୍ଞା !

ଆଉ ଏତିକି ଜାଣ ଯେ, ଏଇ ନାଚ ଫାଚ ବିଷୟରେ ଅମାତାକୁ ତୁମେ ଆଉ କେବେ କିଛି କହିବନି । କାରଣ ଏ ସବୁ ନିର୍ବଣାର କଥା ଶୁଣିଲେ ହିଁ ଅଁଠା ମୋର ବିଲକୁଲ ହୋଇଯିବ ମାଟି—ମାନେ, ଛତ୍ରୁ ! ହିଁ ହିଁ ଛତ୍ରୁ ।

ସୁବୋଧ, ସୁବୋଧ ଗୁଡ଼ଏ ପରି କେବଳ ଠିଆ ହୋଇଥିଲା ।

କଲ୍ୟାଣୀ ଶାଢ଼ୀର ପଣତକୁ ଘୁଞ୍ଚି ଦେଇ, ଚଷମାର ଫ୍ରେମକୁ ଆଖି ଉପରେ ସଜାଡ଼ି ଦେଇ, ମୁହଁରେ ଓ ଓଠରେ ରୁମାଲକୁ ଥାପି, ଚଟିକୁ ଘୋଷାରି ଘୋଷାରି ଚାଲିଗଲେ ।

ଅମୀ କହିଲା— କ'ଣ ସାର ! ଆପଣ ଆଜି ନାଚ ବିଷୟରେ କିଛି କହିପାରିବେ ନାହିଁ ବୋଲି ତ ବୋର୍ଡ଼ କହୁଛନ୍ତି ।

ସୁବୋଧ ଆହତ ହେଲେ— ଚଉଦ ପନ୍ଦର ବର୍ଷର ଗୋଟାଏ ଝିଅ, ତାର ମୁହଁ ଉପରେ ବ୍ୟଙ୍ଗ କରୁଛି ।

କିନ୍ତୁ କିଛି ଉପାୟ ନାହିଁ । ସବୁ କଥାକୁ ହିଁ ମାନିବାକୁ ପଡ଼ିବ । କଲ୍ୟାଣୀଙ୍କୁ ନମାନିଲେ ସବୁ ଯେପରି ହୋଇଯିବ ଗୋଳମାଳ ।

ଏହି ସମୟରେ ଘର ଭିତରକୁ ପଶି ଆସିଲା ନମି ।

ସୁବୋଧବାବୁ !

ଆଜ୍ଞା··· !

ଏଇ ମୋ ଫ୍ରେଣ୍ଡର ନୋଟ୍ ଖାତାରୁ କିଛିଟା ପେଜ୍ କପି କରି-ଦେଇ ପାରିବେ ମୋ ଖାତାକୁ ?

କପି କରିବି ?

ହଁ, ଏଇ ଦେଖନ୍ତୁ, କିଛି ମନେକରିବେ ନାହିଁ, ମୁଁ ଏପରି କହୁଛି ବୋଲି । କଲେଜରେ ନୋଟ୍ କରି ପାରିନଥିଲି, ଆପଣ ଦୁଏତ ଟିକେ କପି କରି ଦେଲେ ମୁଁ ଆଶ୍ୱସ୍ତ ହୁଅନ୍ତି ।

ସୁବୋଧ କ'ଣ କହିବ କିଛି ଠିକ୍ କରିପାରୁ ନଥିଲା । ମନା କରି ଦବ ଯେ ତାର ସମୟ ନାହିଁ ? କହିବ ଯେ କ୍ଲାସରେ ରେଗୁଲାର ହେବା ଉଚିତ୍ ? କହିବ ଯେ ଆପଣ ଫେରି ଯା'ନ୍ତୁ ନମିତା ଦେବି ?

କିନ୍ତୁ ନମିତା ମୁହଁରେ ଗୁଡ଼ାଏ ହସ ଭରି ଖାତାଟାକୁ ଧରିଥିଲା, ଏବଂ କହିଲା— ପ୍ଲିଜ୍···

ନିଜ ପ୍ରତି ଘୃଣା ଭରି ସୁବୋଧ କହିଲା—ହଉ ରଖନ୍ତୁ ।

କାଲି ମୁଁ ଯେମିତି ଫେରିପାଏ ।

ହଉ ।

କଟିକୁ ଅସମ୍ଭବ ଭାବେ ଦୋଳାଇ ନମିତା ଚାଲିଗଲା । ପାଇପ୍ ସ୍କାର୍ଟ ଭିତରୁ ସୁବୋଧ ଦେଖୁଥିଲା ଗୁଡ଼ାଏ ମାଂସ ଯେପରି ଏପାଖ ସେପାଖ ହୋଇ ବଳାପ କରୁଛନ୍ତି, ବାହାରି ପଡ଼ିବାକୁ ବାଟ ଖୋଜୁଛନ୍ତି । କିନ୍ତୁ ସ୍କାର୍ଟଟା ଅସମ୍ଭବଭାବେ ଚାରିଆଡ଼ୁ ଚାପି ଧରିଛି ।

ଅଗ୍ନି ଯିବାପରେ ଅମିତା କହିଲା—ସାର୍ ଆପଣ କ'ଣ ଫେର ପଢ଼ାଇବେ ?

କାହିଁକି ?

ଆଜି ଏତିକି ଥାଉ, ମୋର ତ ସ୍କୁଲବେଳ ହୋଇଗଲାଣି । ଆପଣ ଚଞ୍ଚଳ ଆସିଲେ ସିନା ମୁଁ ବେଶୀ ପଢ଼ିବାକୁ ସମୟ ପାଇବି ?

ମୋର ଆଜି ଟିକେ ଡେରି ହୋଇଗଲା ଅମିତା । କ୍ଷୁଣ୍ଣ ସ୍ୱରରେ ସୁବୋଧ କହିଲା ।

କିନ୍ତୁ ସାର୍, ମୁଁ ତ ଆଉ ଆଜି ଅଧିକ ପଢ଼ିପାରିବି ନାହିଁ !

ସୁବୋଧର କୌଣସି କଥାକୁ ଅପେକ୍ଷା ନକରି ଅମି ଘର ଭିତରୁ ଚାଲିଗଲା ।

ସୁବୋଧ ଯେତେବେଳେ ଘରୁ ବାହାରି ଆସିଲା, ସେ ଦେଖିଲା ଯେ—କଲ୍ୟାଣୀ ସାନ୍ତୁକୁ କହୁଛନ୍ତି—ହଁ, ପୋଟଳ ଭଜା କରିବୁନି, କରିବୁ କାଲିଆ । ସବୁଦିନ ସେଇ ଭଜାଗୁଡ଼ା ଖାଇ ଖାଇ ଚିଟା ଲାଗିଲାଣି । ସେଇ ଯୋଉ ବାବୁର ମାଛଟା ସରପଞ୍ଚ ଦେଇଛି, ପିଲାଙ୍କପାଇଁ ଭାଜି ଦବୁ । କିନ୍ତୁ ମୋ ପାଇଁ କରିଦବୁ ତରକାରି । ହୋଇଛି ମାଛ ମୁଣ୍ଡଟା ରାନ୍ଧିଲାବେଳେ ଟିକେ ଭଲଭାବରେ ତେଲ ଦବୁ । ମୁଁ ମାଛ ମୁଣ୍ଡ ଖାଇବାକୁ ଭାରି ଭଲପାଏ । ଆମର ଗୋଟାଏ ବଡ଼ ପୋଖରୀ ଥିଲା ମୋ ବାପାଙ୍କର ।

ପାଖରେ ବସିଥିଲା ବୁଢ଼ା ।

ସରପଞ୍ଚଠାରୁ ବୋଉ ତୁ ମାଛ ଆଣିଛୁ ? ବାପାଙ୍କୁ କହିଦେବି ।

କ'ଣ କହିବୁ ?

କହିବ ଯେ, ବାପା ତମେ ନଥିଲାବେଳେ ବୋଉ ଲୁଚେଇ ସରପଞ୍ଚଠାରୁ ମାଛ ଆଣିଛି ।

ହଠାତ୍ କଲ୍ୟାଣୀ ବୁଢ଼ା ଉପରେ ପାଟି କରି ଉଠୁଥିଲେ, କିନ୍ତୁ ଯେତେବେଳେ ତାଙ୍କର ସୁବୋଧ ଉପରେ ଦୃଷ୍ଟି ପଡ଼ିଲା, ବୁଢ଼ା ଉପର ରାଗଟା ସୁବୋଧ ଉପରେ ଫିଟି ପଡ଼ିଲା—ତମେ ଏଠି ଠିଆ ହେଇ କଅଣ ଶୁଣୁଛ ?

ନାଇଁ ଆଜ୍ଞା, ଆପଣଙ୍କୁ କହିକି ଯିବି ବୋଲି ଠିଆ ହେଇଛି ।

କଅଣ ଅନୁମତି ? ଯାଅ—ଯାଅ । କଲ୍ୟାଣୀ ଚିତ୍କାର କରି ଉଠିଲେ ।

ରାନୁ ଦେଖିଲା, ସେ ଅତି ଧୀର ଭାବେ ସୁବୋଧ ଚାଲିଯାଉଛି ଘରୁ ।
ରାନୁ ସୁବୋଧକୁ ବୁଝିପାରିଲା ନାହିଁ ।
ଲୁଚାଚୋରେଇ ଖାଇଲେ ପାପ ହୁଏ ବୋଉ ?
ବୁଢ଼ା··· !

ବାପା କହନ୍ତି ଯେ, ଉପବାସରେ ମରିବ ପଛେ କାହାଠାରୁ କିଛି ନେବ ନାହିଁ ।

କ'ଣ କହିଲୁ ? କଲ୍ୟାଣୀ ଚିତ୍କାରି ଉଠିଲେ । ତୋ ବାପା ମୋର କ'ଣ କରିବ ?

ବାପା ଟୁରରୁ ଫେରିଲେ ମୁଁ ତାଙ୍କୁ ସବୁ ବିଷୟ କହିଦେବି, କହିବି ଯେ ଗୋଟାଏ ଲୋକଠାରୁ ବୋଉ ମାଛ ଆଣିଚି ।

ହଠାତ୍ କଲ୍ୟାଣୀ ଦେଖି ବୁଢ଼ାକୁ ପେଲିଦେଲେ ।
ରାନୁର ଛୋଟ ଛାତିଟା ଦମ୍କି ଗଲା ।
ବୁଢ଼ାଟା ତଳେ ପଡ଼ି କାନ୍ଦୁଛି । ହାମୁଡ଼ି ପଡ଼ିଛି ନଳା ପାଖରେ ।
ରାନୁ ତାକୁ ଟେକି ଉଠାଇ ଆଣିଲା ।

କିନ୍ତୁ କଲ୍ୟାଣୀଙ୍କର ଗର୍ଜ୍ଜନ ବନ୍ଦ ହେବାର ନୁହେଁ । ସେ ପାଟିକରି କହିଲେ—ଛାଡ଼ ତାକୁ, ଛାଡ଼ ତାକୁ ! ମୁଁ ଆଜି ତାକୁ ଦଉଛି । ଟୋକାଟା ବୋଲି କିଛି ନ କହିଲାରୁ ବେଶୀ ମୁହଁ ବଢ଼ିଯାଉଛି ।

ରନ୍ତୁ କିନ୍ତୁ ବିଲ୍କୁଲ ବୁଢ଼ାକୁ ଛାଡ଼ି ନଥିଲା । କୋଳରେ ଧରି ତାର ମୁହଁରେ ଗଡ଼ି ଆସିଥିବା ଆଖିର ଲୁହକୁ ପୋଛିଦେଲା । ଇସ୍...ସାର୍ଟ ଯାକ ଲାଗିଛି ନଳାର ପାଣି । ଆଣ୍ଠୁଟା ଛିଣ୍ଡି ଯାଇ ରକ୍ତ ବାହାରୁଛି । ପୁଅର ଗୋଡ଼ରୁ ରକ୍ତ ବାହାରିବାର ଦେଖି ଦୋଷୀଟି ପରି କଲ୍ୟାଣୀ ଚାଲିଗଲେ ।

ରନ୍ତୁର ଆଖି ଛଳ ଛଳ ହୋଇ ଉଠିଲା-ବୁଢ଼ା ବାବୁ !

ରନ୍ତୁର ଛାତିରେ ମୁହଁ ଗୁଞ୍ଜି ବୁଢ଼ା କହିଲା—ମୁଁ ଟେଣ୍ଟା ବୋଲି କ'ଣ ବୋଉ ମତେ ଭଲପାଏନା ?

ବୁଢ଼ାବାବୁ ! ନା—ନା ବୁଢ଼ା ବାବୁ, ଏ କଥା ତମେ କୁହନା । ବୋଉ ତ ତୁମକୁ ଖୁବ୍ ଭଲପାଆନ୍ତି ।

ତୁ ମତେ ଭୁଲଉଛୁ ରନ୍ତୁଅପା, ବୋଉ ତ ମତେ ସବୁବେଳେ ମାରେ । ମୁଁ ଟେଣ୍ଟା, ଏଥିପାଇଁ ସେ ମତେ ଭଲ ପାଏନା । ମୁଁ କୁଆଡ଼େ ତା'ର ଗୋଟାଏ ବୋଝ ।

କିଏ କହିଲା ତମେ ବୋଝ ? ତମେ ତ ଏ ବଂଶର ଉଜ୍ଜ୍ୱଳ ଦୀପ ବୁଢ଼ାବାବୁ । ଏ ବଂଶ ତୁମକୁ ଚାହିଁ ରହିଛି । ତୁମକୁ ପିପାସିତ ଆଖିରେ ଚାହିଁ ରହିଛନ୍ତି ଏ ବଂଶର ପୂର୍ବପୁରୁଷମାନେ । ତୁମ ପ୍ରତି ତାଙ୍କର ଅଶେଷ କରୁଣା ।

ବୋଉ ମତେ ସିନେମା ନିଏନି । ମତେ ବଜାରକୁ ସାଥିରେ ନିଏନି । କାହାଘରକୁ ବୁଲିଗଲାବେଳେ ମୁଁ ଯେତେବେଳେ ବାହାରେ ମନା କରେ ।

ରନ୍ତୁ କାନ୍ଦଉଠି ବୁଢ଼ାକୁ ଛାତିରେ ଚାପି ଧରିଲା । ଧୀରେ ଧୀରେ ତାର କାନ ପାଖରେ କହିଲା—ତୁମେ ବୁଝିପାରିବନି ବୁଢ଼ାବାବୁ, ତମେ ଆଦୌ ବୁଝି ପାରିବନି, ବୋଉ ଆମ ସମସ୍ତଙ୍କୁ କେତେ ଭଲ ପାଆନ୍ତି । ଆମପାଇଁ ତ ତାଙ୍କ ହୃଦୟରେ ଚିରପ୍ରବାହମାନା ଫଲ୍‌ଗୁର ସ୍ନେହଧାରା ସବୁଦିନ ସେହିପରି ବହୁଛି । ସେ ସ୍ନେହର ପ୍ରବାହ ସିନା ଶକ୍ତ ହାଡ଼ ମାଂସ ଭେଦକରି ଉପରକୁ ଜାଣି ହେଉନାହିଁ, କି ଆମେ ତାର ସନ୍ଧାନ ପାଇପାରୁ ନଥାଇ, କିନ୍ତୁ ସେ ସବୁଦିନ ସେହିପରି ତାଙ୍କର ଅନ୍ତରକୁ କରୁଣା, ମମତା, ବାତ୍ସଲ୍ୟ ଭାବରେ ଆର୍ଦ୍ର କରିଛି ।

ବୁଢ଼ା ଆଶ୍ଚର୍ଯ୍ୟ ଭାବେ କହିଲା—ଅପା !

ହଁ ସୁନାବାବୁ; ବୋଉଙ୍କୁ କେବେ ଭୁଲ ବୁଝିବ ନାହିଁ। ସେ ସମସ୍ତଙ୍କଠାରୁ ଉଚ୍ଚରେ। ସମସ୍ତଙ୍କ ସମ୍ମାନର ଅଧିକାରିଣୀ ସେ। ଭକ୍ତିର ପାତ୍ରୀ ସେ। ତାଙ୍କ ଭୁଲ ଦେଖିଲେ ଆମର ପାପ ହବ। ଏଥର ତମେ ଯାଅ ତ ! ଅମ୍ମା ଅପା ପଖ ଖାଇ ସ୍କୁଲକୁ ଯିବ।

ବୁଢ଼ା ଘୁଷୁରି ଘୁଷୁରି ରାନୁର କୋଳରୁ ଚାଲିଯାଇଥିଲା।

ରାନୁ ବୁଢ଼ାକୁ ଚାହିଁ ରହିଥିଲା।

ଏଇ ବୁଢ଼ା ଅଣ୍ଟାକୁ ନହାଡି ବକ୍ରତ ଭାବରେ ବଙ୍କାଇ ଘୁଷୁରୁଛି, ତାର ହ'ହାତକୁ ଗୋଡ଼ ପରି ବ୍ୟବହାର କରି ଆଗକୁ ଯାଉଛି ମୁଣ୍ଡକୁ ତଳକୁ ଝୁଲାଇ। ପିନ୍ଧିଛି ଗୋଟାଏ ଗାରଗାରିଆ କାମିଜ୍ ଆଉ ଗୋଟାଏ ଖାକି ପ୍ୟାଣ୍ଟ।

ବୁଢ଼ାକୁ ରାନୁର ଭାଇ କହିଲେ ଭୁଲ ହେବ, ସେ ସତେ ଯେପରି ରାନୁର ସାଥୀଟିଏ। ରାନୁ ସାଥୀରେ ଖାଏ, ରାନୁ ସାଥୀରେ ଶୁଏ, ସଦାବେଳେ ରାନୁର ପଛେ ପଛେ ଗୋଡ଼ାଏ। ରାନୁ ସାଥୀରେ ଅଳି କରେ, ଅଝଟ କରେ, ତାକୁ ବ୍ୟସ୍ତ କରେ।

ବୁଢ଼ାର ଆଖିରେ ଲୁହ ଦେଖିଲେ, ରାନୁକୁ ଜଣାଯାଏ, ସତେ ଯେପରି କେତେ ବିନ୍ଦୁ ଲହୁ ତାର ଦେହରୁ ଶୁଖିଯାଉଛି।

ତାର ଅଖି ଆଗରେ ବୋଉ ବୁଢ଼ାକୁ ନଳାମୁହଁକୁ ଠେଲିଦେଲେ ? ରାନୁ ଥକ୍କା ମାରି ଠିଆ ହୋଇଥିଲା।

କାହା ପାଇଁ ସକାଳର ସୂର୍ଯ୍ୟ ଉଦୟ ହୁଏ ଗୁଡ଼ାଏ ସ୍ଫୁର୍ତ୍ତି, ଗୁଡ଼ାଏ ଉନ୍ମାଦନା ବହନ କରି, ଆଉ କାହା ପାଇଁ ସକାଳର ସୂର୍ଯ୍ୟ ହ ଉଦୟ ହୁଏ କେବଳ ଗୁଡ଼ାଏ ଯାତନା, ଗୁଡ଼ାଏ ହତାଶ, ଗୁଡ଼ାଏ ବେଦନା ବହନ କରି। ତାକୁ ଜଣାଯାଏ ଯେ, ଏ ଦିନ ନୁହେଁ, ଏଥିରେ ଆଦୌ ଆଲୋକ ନାହିଁ, ସତେ ଏ ଯେପରି ଅନ୍ଧକାର, ଘନୀଭୂତ ଅନ୍ଧକାର। କୁଆଡ଼େ ରାହା ନାହିଁ। କୁଆଡ଼େ ଛିଦ୍ର ବି ନାହିଁ।

ବୁଢ଼ାପାଇଁ ଏ ସକାଳ କି ସଂକେତ ବହନ କରି ଆସିଛି ?

କଲ୍ୟାଣୀ ସେପାଖ ଖଞ୍ଜାରୁ ପାଟିକରି ଡାକଲେ—ପାନ ପେଡ଼ିଟା ଆଣିଲୁ ଲୋ ରନୁ—

ରନୁର ଧ୍ୟାନ ଭାଙ୍ଗିଗଲା । ସେ ଚଞ୍ଚଳ ହୋଇ ଉଠି କହିଲା—ଯାଉଛି ବୋଉ !

ନନିଅପା ତା'ର ଦଣ୍ଡାଘରୁ ପାଟିକରି କହିଲା—ପାଣି ଗ୍ଲାସେ ଆଣିଲୁ ରନୁ—

ରନୁ କହିଲା—ଯାଉଛି ଅପା !

ଅମୃତା ରୋଷେଇ ଘରୁ ଚିତ୍କାର କଲା—ମୁଁ କ'ଣ ଖାଇବିନି କିଲୋ ରନୁ ଅପା ?

ରନୁ କହିଲା—ହଁ ହଁ ମୁଁ ଯାଉଛି—ମୁଁ ଯାଉଛି ।

ପିଞ୍ଜରାର ସାରୀ ଡାକ ଉଠିଲା—ରନୁ, ରନୁଲୋ !

ରନୁ ଦେଖିଲା—ସବୁଆଡ଼ୁ ଶୁଭି ଉଠୁଛି—ରନୁ—ରନୁ । ସେ କୁଆଡ଼େ ଯିବ ? କାହା କଥା ଆଗେ ଶୁଣିବ ? କାହାକୁ କଅଣ ଦେବ ?

ଗୋଟାଏ ରନୁ ! ସେ କାହାର କେତୁଟା ରନୁ ହେବ ?

ଏହି ସମୟରେ ପାଖ ବାରଣ୍ଡାରେ ବନ୍ଧାହୋଇଥିବା କୁକୁରଟା ଚିତ୍କାର କରି ଉଠିଲା—ଭୋ'...ଭୋ'...

ରନୁ କୁକୁରକୁ ଚାହିଁ ହସିଦେଲା । ହଁ, ସେ ବି ତାକୁ ଚାହିଁ ରହିଛି । ତା ପାଖରେ ଲାଙ୍ଗୁଳ ହଲାଉଛି ।

ରନୁ ଦେଖିଲା ବାରଣ୍ଡାର ସେ ପାଖରେ ବସିଛି ପୁଷିଟା । ଜୁଳୁ ଜୁଳୁ କରି ତାକୁ ଚାହିଁ ରହିଛି । ସେ ମଧ୍ୟ ଏଇ ପୁଷିର । ଏ ଘରର ଯେତେ ଜନ୍ତୁ ଅଛନ୍ତି, ମଣିଷ ଅଛନ୍ତି ସମସ୍ତଙ୍କର ।

ଅଥଚ ସେ କ'ଣ ତାର ନିଜର ? ତାର ନିଜର ? ତାର ନିଜର ?

ମୁହଁରେ ପହଁଶି ଯାଉଥିବା କେତେଟା ଚୂର୍ଣ୍ଣକୁନ୍ତଳକୁ ସଜାଡ଼ି ରନୁ ଧାଇଁଗଲା ପାନ ପେଡ଼ିଟା ଧରି କଲ୍ୟାଣୀଙ୍କ ପାଖକୁ ବୁଢ଼ା ପାଇଁ ବହି ଯାଉଥିବା ନିଜ ଆଖିର ଲୁହକୁ ପୋଛି ।

ଏତେ ବଡ଼ ଘରଟାରେ କେହି ନାହାନ୍ତି । ସବୁ ଚୁପ୍ ଚାପ୍ । ବୁଢ଼ା କାନ୍ଦୁଥିଲା ଯେ ତାକୁ ବୁଝାବୁଝି ଗନୁ କରିବାରୁ ସେ ଆଉ କାନ୍ଦୁ ନାହିଁ – ଖେଳୁଛି, କ'ଣ ଗୋଟାଏ ଖେଳନା ଧରି । ଶାଗୁଟା ତା'ର ଡେଣା ଭିତରେ ମୁହଁକୁ ଯାକି ଘୁମେଇ ପଡ଼ୁଛି । କୁକୁରର ଘୋରଙ୍ଗେ ଶୁଭୁନି । ଖାଲି ଧଳା ପୁଷୀଟା ଲାଙ୍ଗୁଳ ଟେକି ଗନୁର ଗୋଡ଼ ପାଖରେ ମିଆଁଉ ମିଆଁଉ ହେଉଛି ।

ଗନୁ ସଞ୍ଜ ସଳିତା ବଳୁଥିଲା । ଅବିକା ତ ସଞ୍ଜ ମାଡ଼ି ଆସିବ, ଆଉ ଟିକେ ଗଲେ । ବଡ଼ ଖଞ୍ଜା । ବହୁତ ଘର । ଦଶ ବାର ବଖରା ଘର । ପ୍ରତି ଘର ପାଇଁ ସଞ୍ଜ ସଳିତା । ଗନୁ ତା'ର ହଳଦୀ ଗଣ୍ଠି ଗୁରୁଗୁରୁ ଜଙ୍ଘ ଉପରେ ସଳିତା ବଳୁଥିଲା ।

ଘରେ କେହି ନାହାନ୍ତି । ବାପା ଯାଇଛନ୍ତି ତ କାଲିଠାରୁ ଟୁର୍‌ରେ । କାଲି ଆସିବେ । ବୋଉ ବାପାଙ୍କ ସାଥିରେ ଟୁର୍‌ରେ ଯିବେ ବୋଲି ଲଗାଇଥିଲେ । ତାଙ୍କୁ କୁଆଡ଼େ ଗୋଟାଏ ଜାଗାରେ ରହିବାକୁ ଭାରି ଖରାପ ଲାଗେ । ସେ ଚାହାନ୍ତି ଚେଞ୍ଜ୍ । ଡାକବଙ୍ଗଳାରେ ଦିନେ ଦି'ଦିନ ରହିଲେ ମନଟା କୁଆଡ଼େ ତାଙ୍କର ସଫା ନିର୍ମଳ ହୋଇଯିବ । ସେ ଚାହାନ୍ତି ଉପଭୋଗ କରିବାକୁ ଧାଡ଼ି ଧାଡ଼ି ବୃକ୍ଷ ବୀଥିମାଳାର ଶ୍ୟାମଳ ରୂପଶ୍ରୀ । ନଗ୍ନ ପ୍ରକୃତି । କଳା ମୁଣ୍ଡିଆ ମାଳର କମନୀୟ ମହିମା । ଦିଗନ୍ତ ଛୁଆଁ କ୍ଷେତମାଳାର ଫସଲ ଲହଡ଼ି । ପକ୍ଷୀର କୂଜନ । ବନନର୍ତ୍ତକୀର ରୁଣୁଝୁଣୁ ଚରଣ ନିକ୍ୱଣ । ଏହି ସବୁ—ଏହି ସବୁ ସେ ଉପଭୋଗ କରିବାକୁ ଚାହାନ୍ତି ମର୍ମେ ମର୍ମେ, ଚିତ୍ତରେ ଚିତ୍ତରେ ।

ବାପା ମନା କରିଦେଲେ ।

ବୋଉ ହେଇଗଲେ ଖାପଣ ଖପ୍‌ପା ।

ବାପା କହୁଥିଲେ; ଗାଡ଼ି ତାଙ୍କର ନୁହେଁ, ସରକାରଙ୍କର । ଗାଡ଼ି କିଣିବାରେ ବଳ ବି ତାଙ୍କର ନାହିଁ । ନିଜର ହୁଏତ ଗାଡ଼ିଥିଲେ ସ୍ତ୍ରୀଙ୍କୁ ବସାଇ ସେ କେତେ କୁଆଡ଼େ ବୁଲେଇ ନିଅନ୍ତେ, କିନ୍ତୁ ପର ଗାଡ଼ିରେ···

ପର ଗାଡ଼ି ? ବୋଉ ପଚାରିଲେ ।

ହଁ, ପରଗାଡ଼ି ନୁହେଁ ତ ଆଉ କ'ଣ ?

ସବୁ ଅଫିସର ତ ନିଜର ସ୍ତ୍ରୀଙ୍କୁ ବୁଲେଇ ନେଉଛନ୍ତି କେତେ ଜାଗା ଏଇ ସରକାରୀ ଜିପ୍‌ରେ ।

ମୁଁ କିନ୍ତୁ ସବୁ ଅଫିସରଙ୍କ ସହିତ ସମାନ ନୁହେଁ କଲ୍ୟାଣୀ । କାମ ବଳରେ କିରାଣୀରୁ ଉଠି ଉଠି ଅଫିସର୍ ହୋଇଛି । ସରକାରୀ କାମରେ ମୁଁ ଯାଉଛି, ଗୁଡ଼ାଏ ଦାୟିତ୍ୱ, କର୍ତ୍ତବ୍ୟକୁ ତୁଲାଇବା ପାଇଁ, ଯାଉ ନାହିଁ ଫୁର୍ତ୍ତି କରିବାକୁ । କୁହ ତୁମକୁ କେମିତି ନେବି ?

ସେଇ ରାଗରେ ବୋଉ ଖୁବ୍ ଗୋଟାଏ ବଡ଼ ପାଟି କରି ଉଠି ଆସିଲେ ସେ, ଦେଖିଲେ ବାରି ପାଖ ବାରଣ୍ଡାରେ ବସି ରାନୁ ଗୋଟାଏ ସାର୍ଟ ସିଲାଇ କରୁଛି ।

କ'ଣ କରୁଛୁ କଲେ ପୋଡ଼ାମୁହିଁ ?

ବୋଉ ତ ରାନୁକୁ ପ୍ରାୟ ପୋଡ଼ାମୁହିଁ ଡାକନ୍ତି । ରାନୁର ନାଁ ଅନେକ ସମୟରେ ସେ ବୋଧହୁଏ ଭୁଲି ଯାଆନ୍ତି, ନଚେତ୍ ରାନୁକୁ ତା'ର ନାଁ ଧରି ଡାକନ୍ତେ ନାହିଁ କାହିଁକି ?

ରାନୁ କିଛି କହିଲା ନାହିଁ । କେବଳ ଚୁପ୍ ହୋଇ ମୁହଁ ପୋତି ଠିଆ ହୋଇଥିଲା ।

ମୁଁ ପରା ପଚାରୁଛି, ତତେ କ'ଣ ଶୁଭୁନି ?

ଗୋଟାଏ ସାର୍ଟ ସିଲାଇ କରୁଛି ।

କାହାର ? କଲ୍ୟାଣୀ ସାର୍ଟଟା ଝିକି ଆଣିଲେ ରାନୁ ହାତରୁ । ସାର୍ଟ ଦେଖି ଆଖି ତାଙ୍କର ତାଳୁରେ ଖୋସି ହୋଇଗଲା ।

ସେଇଟା ସୁବୋଧବାବୁର ସାର୍ଟ, ବୋଉ ।

ଏଁ ? ସୁବୋଧର ସାର୍ଟଟା ତୁ କାହିଁକି ସିଲେଇ କରୁଛୁ ? ବାବାଲେ···ବାବା···ଏ କି କଥା !

ସାର୍ଟଟା ଚିର ଯାଇଥିଲା ଯେ, ସେ ଦୁ'ଦିନ ତଳେ ଏ ସାର୍ଟଟା ଦେଇଥିଲେ ମତେ ।

ରୁମାଲ ବୁଣିବାକୁ କହୁ ନାହିଁ ?
କୋଉ ?
ଫୁଲ—ଫୁଲ ?

ରଘୁ କିଛି ବୁଝିପାରିଲା ନାହିଁ । କାହିଁକି କଲ୍ୟାଣୀ ଏ ରୁମାଲ, ଫୁଲ କଥା କହୁଛନ୍ତି ।

କଲ୍ୟାଣୀ ଉପହାସମିଶା ସ୍ୱରରେ ପଚାରିଲେ—ଆହା ନୋ···, ମୋ ଦୁଧଖିଆ ଝୁଅଟା କିଛି ବୁଝିପାରୁନୁ ?

ରଘୁ ଅନାହତ ସ୍ୱରରେ କହିଲା—ନାଇଁ କୋଉ ।

ପାଟିକରି କଲ୍ୟାଣୀ କହିଲେ—ରୁମାଲରେ ଫୁଲ ବୁଣିବାକୁ କହୁନାହିଁ ?

ରଘୁ ସେହିପରି ଶାନ୍ତ ନିର୍ଲିପ୍ତ ଭାବରେ କହିଲା—ରୁମାଲରେ ଫୁଲ ପକାଇବା କଥା ସେ କାହିଁକି କହିବେ କୋଉ ? କେବଳ ଏଇ ସାର୍ଟର ଚିରିଟାକୁ ସିଲାଇ କରିଦେବା ପାଇଁ କହିଥିଲେ ।

ଏଥର କ'ଣ ରୁମାଲରେ ଫୁଲ ପାଇଁ ଅଳି କରିବ ନୋ ନିର୍ଲଜ୍ଜ !
କୋଉ !
ଆଲୋ ପ୍ରେମ ଲୋ—ପ୍ରେମ !
ରଘୁ ଚିତ୍କାର କରି ଉଠିଲା—କୋଉ !

ସାର୍ଟଟାକୁ ଏକାଠି କୁଟୁକୁଟୁ କରି ଦଳି ମାଡ଼ି ଫୋପାଡ଼ିଦେଇ କଲ୍ୟାଣୀ କହିଲେ—କାମ କରିବାକୁ କହିଲେ, ସବୁ କଥାରେ ବାର ଆଳ । ଅଥଚ ଏଠି କୁରୁଚା ସିଲେଇ ହଉଛି । ବଳଲଇ ଯେତେ ଆଖି ବୁଜି ଦୁଧ ପିଇଲେ, ଧରାପଡ଼େ ନୋ ସତ୍ୟାନାଶୀ, ଧରାପଡ଼େ ।

ରଘୁ ପାଣି କାଦୁଅରୁ ସାର୍ଟଟାକୁ ଉଠାଇ ପାରି ନଥିଲା । ସାହସରେ ତାକୁ ଜଣାଯାଉଥିଲା ଏ ତ ସାର୍ଟ ଦଳି ମକଚି ମାଟିରେ ପଡ଼ିନ, ପଡ଼ିଚି

ଯେପରି ସୁବୋଧ, ସୁବୋଧର ବ୍ୟକ୍ତିତ୍ୱ, ସୁବୋଧର ଅସ୍ତିତ୍ୱ, ସୁବୋଧର ସବୁକିଛି । ତା'ର ମାନ, ସମ୍ମାନ ଇଜ୍ଜତ୍ । ସେ ସେହି ସାର୍ଟ ଭିତରେ ଥାଇ ଯେପରି ଆଖିରୁ ଲୁହ ଗଡ଼ାଉଛି । ମାଟିରେ ପାଣି କାଦୁଅ ହୋଇ ରାନୁକୁ ଗୁହିଁ ରହିଛି ।

ରାନୁ ଥକ୍କା ମାରି ଠିଆ ହୋଇଥିଲା ।

କଲ୍ୟାଣୀ ଊର୍ଦ୍ଧ୍ୱଶ୍ୱାସରେ ପାଟି କରୁଥିଲେ—ଆଲୋ, ଆଲୋ ଏ ଭଦ୍ରଲୋକଙ୍କ ଘର । ଏ ସବୁ ନଆଁ ଲଗା କଥା ମୋ ଦେହରେ ଯାଏନି । ଆମେ କ'ଣ ଦିନେ ଝିଅ ହୋଇ ନଥିଲୁ ? ଆମ ଦିହରେ କ'ଣ ଯୌବନ ଲାଗି ନ ଥିଲା ? ହେଲେ ପରପୁରୁଷ ପାଖରେ···

ରାନୁ ଛଳ ଛଳ ଆଖିରେ କହିଲା—ବୋଉ ! ବନ୍ଦକର ବୋଉ, ବନ୍ଦକର ! ଆଉ କୁହନି ।

ଏତିକିବେଳେ ବିପ୍ରଚରଣ ସେମାନଙ୍କ ପାଖକୁ ଆସିଲେ । ଦେଖିଲେ ଲୁଗାର କାନିକୁ ଦାନ୍ତରେ ଛିଣ୍ଡାଇ ରାନୁ ଦୋଷୀଟି ପରି ଠିଆ ହୋଇଛି ।

କଅଣ ହେଲା ?

ତୁମ ଝିଅଙ୍କ ଗୁଣ ଦେଖ, ରାନୁ କାହାର ସାର୍ଟସିଲେଇ କରୁଛି ?

ହଁ, ସୁବୋଧର କରୁଛି ତ କଅଣ ହେଲା ?

କଅଣ ହେଲା ? ତାଚ୍ଛଲ୍ୟ ସ୍ୱରରେ କଲ୍ୟାଣୀ ପାଟି କରି ଉଠିଲେ ।

ଏଇଥିପାଇଁ ତୁମେ ଏତେ ପାଟି କରୁଛ ?

ହଁ; ମୋର ପାଟି ତ ତୁମକୁ ସଦାବେଳେ ଶୁଭୁଯାଉଛି । ହେଲେ ଝିଅଙ୍କ ଗୁଣଗ୍ରାମ କିଛି ଜାଣୁନ ।

ଗୋଟାଏ ସାର୍ଟ ସିଲେଇ କରିବା କ'ଣ ରାନୁର ପାପ ?

କଲ୍ୟାଣୀ ବିରକ୍ତିରେ କହିଲେ—ମୁଁ ଜାଣେ ମ, ତୁମେ ରାନୁ ପକ୍ଷରେ ସଦାବେଳେ କହିବ । ରାନୁ ଯେତେ ଦୋଷ କଲେ ମଧ୍ୟ ତୁମ ଆଖିରେ ସେ ସବୁ ଆଦୌ ଦିଶିବ ନାହିଁ ।

ବିପ୍ରଚରଣ କହିଲେ—ଦେଖ କଲ୍ୟାଣୀ ! ରାନୁ ଉପରେ ମୋର ଅଖଣ୍ଡ ବିଶ୍ୱାସ । କାହାର କ'ଣ ଗୋଟାଏ ସାର୍ଟସିଲାଇ କରିଦେଲା ବୋଲି

ଯେ ସେ ଗୋଟାଏ ଅକ୍ଷମଣୀୟ ଅପରାଧ କରିଦେବ ତା' ନୁହେଁ । ତା' ଛଡ଼ା ସୁବୋଧର ସାର୍ଟ ସିଲାଇ କରି ସେ ତ କଷ୍ଟ ଭୁଲ୍ କରିନି । ସୁବୋଧ ଗରିବ; ଅଥଚ ମେଧାବୀ । ହୁଏତ ବଡ଼ଲୋକର ପିଲା ହୋଇଥିଲେ ସେ ତା'ର ବିଦ୍ୟାରେ ଆହୁରି ଅଧିକ କଷ୍ଟ କରି ପାରନ୍ତା । ଗୋଟାଏ ମେଧାବୀ ଛାତ୍ରକୁ ଆଦୌ ଯେତେବେଳେ ଆମେ ସାହାଯ୍ୟ କରି ପାରୁନୁ ସେତେ-ବେଳେ ତା'ର ଚିରା ସାର୍ଟଟାଏ ସିଲାଇ କରିବା କ'ଣ ଦୋଷ ? ତୁମେ ଗୋଟାଏ କାମ କର କଲ୍ୟାଣୀ !

କଅଣ ?

ସୁବୋଧ ପାଇଁ ଗୋଟାଏ ସାର୍ଟ କିଣି ଆଣ । ବିଚାରା ବାପଟା ଯେ ତା'ର ଏତେ ଗରିବ, ତୁମେ ତା'ର ଦୁର୍ଦ୍ଦଶା ଦେଖିଲେ ଉପୁରେ ଶିହରି ଉଠିବ ।

ତୁମର କଅଣ ମତେ ଜଳାଇବା ଅଭ୍ୟାସ ? ଟୋକାଟା ପାଇଁ ଯଦି ତୁମର ଏତେ ଦରଦ ଉଚ୍ଛୁଳି ପଡ଼ୁଛି, ନିଜେ ଯାଇଁ ଗୋଟାଏ କିଣି ଆଣୁନ ?

ଆମେ ତା'ର ବାପ ମା' କଲ୍ୟାଣୀ !

ମୋର କିନ୍ତୁ ବେଳ ନାହିଁ ।

ତୁମ ହାତରୁ ସାର୍ଟଟାଏ ପାଇଲେ ସେ ହୁଏତ ଖୁବ୍ ଖୁସି ହୁଅନ୍ତା । ନିଜର ପିଲାମାନଙ୍କ ଛଡ଼ା ଅନ୍ୟ କାହାର ମୁହଁରେ ଖୁସିର ଚିହ୍ନ ଦେଖିବାକୁ ତମେ କ'ଣ ଭଲ ପାଅନି କଲ୍ୟାଣୀ ? ଦୁଃଖିତ ଗଳାରେ ବିପ୍ରଚରଣ କହିଲେ ।

ତୁମେ ମୋର ଚରିତ୍ର ଉପରେ ଆକ୍ଷେପ କରୁଛ ? ମତେ ତୁମେ କାହିଁକି କହିବ ମ ? ମତେ କହିଲାବାଲା ଏ ଦୁନିଆରେ କେହି ନାହାନ୍ତି । କୁଆଡ଼କାର ଗୋଟାଏ ଅରକ୍ଷିତଟାଏ, ମୁଁ ପୁଣି ଆଣିବି ତା' ପାଇଁ ଗୋଟାଏ ସାର୍ଟ ?

ଆହତ ଫଣିନୀ ପରି କଲ୍ୟାଣୀ ଚାଲିଯାଇଥିଲେ ଘର ଭିତରକୁ । ରାନୁ ଠିଆ ହୋଇଥିଲା ଅତି ସଙ୍କୋଚରେ ।

ବିପ୍ରଚରଣ ଧୀରେ ଧୀରେ ସାର୍ଟଟାକୁ ପାଣି କାଦୁଅରୁ ଟେକି ଧରିଲେ, ଝାଡ଼ିଲେ । ଚିରା ଜାଗାକୁ ଦେଖିଲେ । କହିଲେ—ଆରେ ଏତେ ବଡ଼ ଚିରାକୁ ତୁ ସିଲାଇ କରୁଛୁ ମା ? ଏ ସାର୍ଟରେ ତ ସିଲାଇ ସବୁଆଡ଼େ ।

ରନୁ କିଛି କହି ନ ଥିଲା ।

ସାର୍ଟକୁ ଭାଙ୍ଗିଭୁଙ୍ଗି ଚଢ଼ାଇ, ପକେଟରୁ ଟଙ୍କା ବାହାର କରି ବିପ୍ରଚରଣ କହିଲେ––ଏଇ ଟଙ୍କା ପଚିଶଟା ନେ ମା, ସୁବୋଧ ପାଇଁ ଗୋଟାଏ ଭଲ ସାର୍ଟ କିଣିଦେବୁ । ମୁଁ ତ ଆଜି ଯାଉଛି ଟୁର୍‌ରେ, କାଲି ଆସି ଯେମିତି ଦେଖିବି ତୋ'ର କିଣା ସାର୍ଟ ସୁବୋଧ ପିନ୍ଧିଥିବ ।

ସେ ସୁବୋଧ ପାଇଁ ସାର୍ଟ କିଣିବ ? ସେ କିଣିବ ? କ'ଣ ବା ସେ କିଣିବ ? ତା'ର ହୃଦୟର ପ୍ରତ୍ୟେକ ତନ୍ତ୍ରୀରେ ଅଜଣା ଶିହରଣ ! ତା'ର ପ୍ରତ୍ୟେକ ଲୋମକୂପରେ ପୁଲକ ! ଥର ଥର ସ୍ପନ୍ଦନ । କେଜାଣି କଅଣ ଗୋଟାଏ ଅଜଣା ଚେତନାରେ ରନୁର ହୃଦୟଟା ଦୋହଲିଗଲା । ମୁହଁକୁ ତଳକୁ ପୋତି ପାଦନଖରେ ଭୂଇଁ ଖୋଳିବାକୁ ଲାଗିଲା ।

ଆରେ, ତୁ କ'ଣ ଭାବୁଛୁ ? ବିପ୍ରଚରଣ ପଚାରିଲେ ।

ରନୁ କିନ୍ତୁ ସେହିପରି ମଥା ତଳକୁ ପୋତିଥିଲା । ଭୂଇଁ ଖୋଳୁଥିଲା । ଆଉ ଦୁଇହାତରେ ତା'ର ପଣତକୁ ମୋଡ଼ୁଥିଲା । ତାକୁ ଭାରି ଲାଜ ଲାଗୁଥିଲା । ବାପାଙ୍କ ହାତରୁ ସେ କିପରି ଏଇ ସୁବୋଧଟା ପାଇଁ ଟଙ୍କା ନେବ ?

ବିପ୍ରଚରଣ ତା'ର ହାତକୁ ଟଙ୍କା ଯେତେବେଳେ ବଢ଼ାଇ ଦେଲେ ରନୁ ଦେଖିଲା ତା'ର ହାତ ଦୁଇଟା ଯେପରି ଥରୁଛି ।

ବିପ୍ରଚରଣ ତା'ର ମଥାକୁ ସାଉଁଳାଇ କହିଲେ––ବୋଉର କଥା ଧରିବୁ ନି ମା'! ବୋଉ ଟିକେ ବଦରାଗୀ । କିନ୍ତୁ ସେ ତ ତତେ ଖୁବ୍ ଭଲ ପାଆନ୍ତି––ଖୁବ୍ ଭଲ ପାଆନ୍ତି ।

ରନୁ କେବଳ ମୃଦୁ ହସିଥିଲା । ସଂକ୍ଷିପ୍ତ ହସ ।

ବିପ୍ରଚରଣ କହିଲେ––ଏଇ ତୋ'ର ବୋଉପାଇଁ ମୋର ବହୁତ ଡେରି ହୋଇଗଲାଣି ମା' । ତେଣେ ଗାଡ଼ି ଅପେକ୍ଷା କରିଛି । ମୁଁ ଯାଉଛି କାଲି ଫେରିବି ।

ହଉ ।

ତୋ' ପାଇଁ କଅଣ ଆଣିବି କହିଲୁ ନି ତ ମା' ? ବିପ୍ରଚରଣ ରନୁକୁ ପ୍ରଶ୍ନ କଲେ ।

ରାଜୁର ମନେପଡ଼ିଲା, ଏଇମିତି ପଚାରୁଥିଲେ ବାପା—ଏଇ ହାତୀ ନା, ମଟର ନା, ଘୋଡ଼ା ? ପିଲାବେଳେ ଫ୍ରକ୍ ପିନ୍ଧି ସେ ବାପାଙ୍କ କୋଳରେ ଲାଗିଯାଇ କହୁଥିଲା—ମୋର ମଟର କଅଣ ହବ ବାପା ? ମୁଁ ତ ମଟର ସବୁବେଳେ ଦେଖୁଛି । ହାତୀ ଦେଖିନ । ହାତୀ ଗୋଟିଏ ଆଣିବ ।

ବାପା ଯେତେବେଳେ ଯୋଉଆଡ଼େ ଯାଆନ୍ତି, ତାକୁ ପଚାରନ୍ତି, ସବୁଦିନେ ତ ଏହିପରି ଶୁଣିଛି । କିନ୍ତୁ ଆଜ ତାକୁ କାନ୍ଦ ଲାଗିଲା ।

ବୋଉ ସୁବୋଧର ସାର୍ଟ ପାଇଁ କେତେ କଥା ଯେ ନ କହିଲେ ! ସାର୍ଟ ସିଲାଇ କରିବା ମାନେ କଅଣ ପ୍ରେମ କରିବା ?

ରାଜୁ କହିଲା—ମୋର କିଛି ଦରକାର ନାହିଁ ବାପା ।

ଏଇ ! ଏମିତି ତ ସବୁଦିନ କହୁଛୁ ମୋର କିଛି ଦରକାର ନାହିଁ । କିନ୍ତୁ ତୋ' ପାଇଁ ତ ଗୋଟାଏ ଶାଢ଼ୀ ପାଇଁ କେବେ କହିନୁ । ତୁ ସୁବୋଧ ପାଇଁ ଗୋଟାଏ ସାର୍ଟ କଲ, ଆଉ ମୁଁ ତୋ' ପାଇଁ ଗୋଟାଏ ଭଲ ଶାଢ଼ୀ ଆଣିବି ।

ବାପା··· !

ବିପ୍ରଚରଣ ହସି ହସି ଚାଲିଯାଇଥିଲେ ·

କାଲି ସେ ଫେରିବେ ।

ରାଜୁ ସଞ୍ଜ ସକାଳ ଗଣିଲା ।

ବହୁତ କାମ ଅଛି । ବୋଉ, ନମି, ଅମ୍ମା ସିନେମା ଯାଇଛନ୍ତି । ସେ କିନ୍ତୁ ଯାଇନ । ତା'ର ସିନେମା ଯିବାକୁ ବା ସମୟ କାହିଁ ? ବୋଉ ଗୁଡ଼ାଏ କାମ ବରାଦ କରି ଯାଇଛନ୍ତି । ସବୁ କାମରେ ଟିକେ ହେଳା କରାଯାଇପାରେ, କିନ୍ତୁ ଏଇ ରନ୍ଧାରନ୍ଧି ବ୍ୟାପାରରେ ହେଳା କଲେ ମହା ମୁସ୍କିଲ । ବାପାଙ୍କୁ ଯାହା ତାହା ଖାଇବାକୁ ଦେଲେ ସେ ବିନା ଓଜର ଆପତ୍ତିରେ ଖାଇଦେବେ । କିନ୍ତୁ ବୋଉଙ୍କ ପାଖରେ ସେସବୁ ଚଳିବନି । ତାଙ୍କ ପାଇଁ ନଅ ତୁଣ ଛଅ ଭଜା । ସେ ରନ୍ଧାରନ୍ଧି ପୂର୍ବରୁ ସବୁ ବରାଦ ଦେଇଥିବେ । ଆଜ ବି ବରାଦ ଅଛି । ତାଙ୍କ ବରାଦ ଅନୁସାରେ ସବୁ ଗୋଟେଇ ତୁଲେଇବାକୁ ପଡ଼ିବ ।

ପାଖ ଲକ୍ଷ୍ମୀନାରାୟଣ ମନ୍ଦିରରେ ଘଣ୍ଟା ଆଳତି ଶୁଭିଲାଣି ।

ରାନୁ ଉଠିଗଲା ସନ୍ଧ୍ୟା ଦେବାପାଇଁ, ପ୍ରତି ଘରେ, କୂଅମୂଳରେ, ଅଗଣାରେ, ତୁଳସୀ ଚଉରାମୂଳରେ ।

ରନୁ ଠାକୁର ପୂଜା ପ୍ରତିଦିନ କରେ । ଏ ଘରେ ଠାକୁର ପୂଜା ଆଗବେଳେ ହେଉ ନଥିଲା । ଠାକୁର ପୂଜା କରିବା ଅର୍ଥ ଗୁଡ଼ାଏ ଝାମେଲାକୁ ମୁଣ୍ଡରେ ପୂରେଇବା କଥା । ସବୁଦିନ ସକାଳୁ ଗାଧୁଆ, ଫୁଲତୋଳା, ଘରଧୁଆ ଏହିପରି ନାନା ଫେଚକାମି । କିଏ କରିବ ? କଲ୍ୟାଣୀ ତ ଏସବୁ ପୂଜାଫୂଜା କରିପାରିବେନି, କାରଣ ଚଞ୍ଚଳ ଗାଧୋଇବାଟା ତାଙ୍କ ପାଇଁ ମହା ମୁସ୍କିଲ । ଶୀତଦିନ ତ ଚନ୍ଦ୍ରିକୁ ଦଳେ । କିଏ ଏତେ ଛୁଟୁରୁ ସୁଟୁରୁ ହେଇ ଫୁଲ ତୋଳିବ, ଘର ଧୋଇବ, ଫଳ ସଳିତା ତିଆରି କରିବ ? ଆଉ କ'ଣ ନମି ଅପା ? ଆରେ ବାବା ! ସେ କ'ଣ ଏସବୁ ପୁରୁଣା କାଳିଆ କଥା କରନ୍ତା ? ମୁଣ୍ଡ ବାନ୍ଧିବାକୁ ତ ତା'ର ଘଣ୍ଟାଏ । ସ୍ନୋ-ପାଉଡର ଲଗାଇବାକୁ, ରୁଜ୍‌ଲିପଷ୍ଟିକ୍ ଲଗାଇବାକୁ ତା'ର ସମୟ ନାହିଁ । ତା' ଛଡ଼ା ସକାଳୁ କେତେବେଳେ ଉଠିବ ଯେ ଏ ସବୁ କାମ କରିବ ? ନିଦ ଛଡ଼ାଉ ଛଡ଼ାଉ, ଅଳସ ଭାଙ୍ଗୁ ଭାଙ୍ଗୁ, ଏଠି ସେଠି ହେଇ ଫେର୍ ହେଇ ସବୁ ଜିନିଷ ତନଖି କରୁ କରୁ ଆଉ ଟାଇମ୍ କାହିଁ ? ତା' ଛଡ଼ା ଅଛି ଏଇ ସ୍ନୋ ସ୍ନୋ କଥା । ସୁର୍ମା କଥା ତ ଅଛି । ଗୁଡ଼ାଏ ଶାଢ଼ୀରୁ ବାଛି ଗୋଟାଏ ପିନ୍ଧିବାକୁ ପଡ଼ିବ, ତା' ସାଥିରେ କୋଉ ବ୍ଲାଉଜ । ଶାଢ଼ୀ ପିନ୍ଧିଲା ଦିନ କପରେ ଜୁଡ଼ା ପଡ଼ିବ, ଖାଲି ଗୋଟିଏ ବେଣୀ ପଡ଼ିବ ନା ଦି'ଟା ବେଣୀ ପଡ଼ିବ ଏ ଚିନ୍ତା ବି ଅଛି । ସାଲ୍‌ଓ୍ୱାର କାମିଜ ପିନ୍ଧିଲା ଦିନ କପରେ ଜୁଡ଼ା ବନ୍ଧା ହେବ—ପନିଟେଲ୍ ନା ବି' ହାଇଭ ? ଖଗନନ ନା ବନ୍ ? ଏ ସବୁ କଥା ବୁଝିବାକୁ ଅଛି । ସାଧା ଚପ୍‌ପଲ, ବାଲେରିନ ସୁ', ଯୋଧପୁରୀ, ହାଇହିଲଡ୍ ସୁ କି ପ୍ଲାଟଫର୍ମ ହିଲ ଚପଲ, ଏ ବିଷୟରେ ଚିନ୍ତା କରିବାକୁ ପଡ଼ିବ । ଏତେ ଚିନ୍ତାରେ ବ୍ୟସ୍ତ ନମିଅପାଟା ଯେ କେତେବେଳେ ଠାକୁର ପୂଜା କରିବ ? ଏ ସବୁ ବାଛୁ ପିନ୍ଧୁ ପିନ୍ଧୁ ତ ପ୍ରାୟ ସବୁଦିନ କଲେଜ ଟାଇମ୍ ହେଇଯାଉଛି । ତା'ଛଡ଼ା ଅଛି ଅମା, ସେ ପିଲା ଲୋକ, ସେ କରିପାରିବେନି । କରିବ ରନୁ, ହଁ ସେ ତ ନିଶ୍ଚୟ—ନିଶ୍ଚୟ—ନିଶ୍ଚୟ ଠାକୁର ପୂଜା କରିବ । ଠାକୁର ତା'ର । ଠାକୁର ପୂଜା ସେ ନିଜେ ନକରିବ ତ କରିବ କିଏ ?

ରନୁ ଲୁଗା ବଦଳି ଠାକୁର ଘରେ ପଶିଲା । ମୂର୍ତ୍ତି ନୁହେଁ ଫଟୋ । ବାଲିଯାତ୍ରାରୁ ପିଲାବେଳେ ବାପାଙ୍କୁ କହି ଗୋଟାଏ ବିଷ୍ଣୁ ଫଟୋ ଆଣିଥିଲା

ଯେ ଖେଳିବା ପାଇଁ, ସେଇ ଫଟୋଟା ଖେଳଘରୁ ଠାକୁର ଘରେ ପୂଜା ପାଇଲା । ବହୁତ ଚନ୍ଦନ, ବହୁତ ଫୁଲ ଭିତରେ ବସ୍ତୁ ପୋତି ହୋଇ ପଡ଼ିଛନ୍ତି ।

ଆଜି କୁଜ ଶଙ୍ଖ ଫୁଙ୍କିଲା ରାନୁ । ଥୁଆ ହୋଇଛି ଭୋଗ ଥାଳିଆରେ କେତୋଟି ଲଡୁଁ, ଜମାରୁ ଗୋଟିଏ କଦଳୀ । ଧୂପଦାନୀ । ପିଲସଜର ଦୀପ । ଘଣ୍ଟି । ରାନୁ ଘଣ୍ଟି ବଜାଇ ପୂଜା ଆରମ୍ଭ କଲା । କୌଣସି ମନ୍ତ୍ର ତନ୍ତ୍ର ସେ ଜାଣେନା । ଶାସ୍ତ୍ରର ଧାର ଧାରେନା । କେବଳ ମନର ଅବ୍ୟକ୍ତ ଭାଷାକୁ ନିର୍ବାକ୍ ଆଖିରେ ଠାକୁର ଆଗରେ ଜଣାଏ । ଆଡ଼ମ୍ବର ନାହିଁ । ମହାର୍ଘ ପୂଜା ଉପକରଣ ନାହିଁ । କେବଳ ଠାକୁରର ଅଭୟଚରଣ ତଳେ ନିଜକୁ ଝପି ଦେଲା ଭାବ । ଉନ୍ମାଦ ଦେଲା ଭାବ ।

ଲକ୍ଷ୍ମୀ କଅଣ ତା'ର ବସ୍ତୁର ଚରଣତଳେ ପୂଜା କରୁଛି ? ଲକ୍ଷ୍ମୀ କି ?

ଏକଥା ଥରେ ହସି ହସି ବିପ୍ରଚରଣ ପଚାରିଲେ ରାନୁକୁ । ସେତେବେଳକୁ ଚଉଦ ପନ୍ଦର ବର୍ଷ । ପ୍ରାୟ ଦୁଇବର୍ଷ ତଳର କଥା ।

ରାନୁ ଲାଜରେ ଝାଉଁଳି ପଡ଼ିଥିଲା ।

ସେଇ ବସ୍ତୁଙ୍କୁ ଯାହାକୁ ଫଟୋ ଭାବି ବିପ୍ରଚରଣ ହସିଥିଲେ, କେଜାଣି କଅଣ ହେଲା ରାନୁକୁ ଦେଖି ସେ ମଧ୍ୟ ପୂଜା କରିବାକୁ ଲାଗିଲେ ।

ବାପ ଝିଅ ପୂଜା କରନ୍ତି ।

ତା'ଛଡ଼ା ଝିଅଟା ତ ବାପର ଜୀବନର ସବୁ ! ତାର କଥା ବାପା ରଖିବ ନାହିଁ ତ କିଏ ରଖିବ ? ଏଣୁ ବିପ୍ରଚରଣ ସବୁଦିନେ ସକାଳେ ପୂଜା କରନ୍ତି ଏଇ ବସ୍ତୁଙ୍କୁ ।

ଠାକୁର ପୂଜା ସାରି ରାନୁ ପଶିଗଲା ତା ନିଜ ଘରକୁ ଲୁଗା ବଦଳିବା ପାଇଁ ।

ଏଇ ତାର ଘର ।

ପ୍ରଥମେ ପଡ଼ିବ ତାର ଦାଣ୍ଡଘର, ମାନେ ପ୍ୟାସେଜ । ତାପରେ ଡ୍ରଇଂ ରୁମ୍ । ତାପରେ ବେଡ଼ରୁମ୍, ବାପା ଶୁଅନ୍ତି । ତାପରେ ବ ବେଡ଼୍ରୁମ, ବୋଉ ଓ ଅପା ଶୁଅନ୍ତି । ତାପରେ ପଡ଼ିବ ନମି ଅପାର ରୁମ୍ । ତାପରେ ଷ୍ଟୋର ରୁମ୍ । ଷ୍ଟୋରରୁମ୍‌କୁ ଲାଗି କଚେଡ୍ ।

ସେପାଖ ଡଗରେ ଅର୍ଥାତ୍ ଉତ୍ତରକୁ ଠାକୁର ଘର, ଗନ୍ନୁ ଘର, ଗାଧୁଆ ଘର, ଗୁହାଳ, ଲାଟ୍ରିନ୍ ।

ଗନ୍ନୁ ଅଲଗୁଣୀରୁ ଲୁଗାଟିଏ ଆଣି ଦେହରେ ବେଢ଼େଇ ନେଲା । ଆଲନା ନୁହେଁ କେବଳ ଅଲଗୁଣୀ । ଦୁ ଖଣ୍ଡ ଲୁଗା ଝୁଲୁଛି । ବ୍ଲାଉଜ ଦୁ' ଖଣ୍ଡ, ଗାମୁଛା ଗୋଟାଏ, ଗୋଟାଏ ଛୋଟ ବାଉଁଶିଆ ଖଟ । ତା ଉପରେ ଗୋଟାଏ ସତରଞ୍ଜି । ବାପା ଦେଇଥିବା ଗୋଟାଏ ରେଜେଇ । ବିଛଣା ଚଦର ଗୋଟାଏ, ତକିଆଟାଏ ।

ଘରର ପଶ୍ଚିମ ପାଖ କାନ୍ଥରେ ଗୋଟାଏ ଥାକ । ଥାକରେ ଗୋଟାଏ ଛୋଟ ଦର୍ପଣ । ପାନିଆଟିଏ । ଆଉ କିଛି ନାହିଁ । ସ୍ନୋ ନାହିଁ, ପାଉଡ଼ର ନାହିଁ, ସାବୁନ ନାହିଁ । ନଡ଼ିଆ ତେଲ ଶିଶିଟାଏ ରହିଛି ।

ଘରେ କୋଉଠି ହେଲେ ଆଉ ଗୋଟାଏ ଜିନିଷ କିଛି ନାହିଁ । କିନ୍ତୁ ସବୁ ସଫା । ସବୁ ପରିଚ୍ଛନ୍ନ । କୁଣ୍ଡାଖିଏ, ମଳଟାଏ ଘର ଚଟାଣ ଉପରେ ପଡ଼ିନ । କିନ୍ତୁ ଆସୁଛି ଘରର ଝରକା ବାଟ ଦେଇ ପ୍ରଚୁର ପବନ, ଦିନରେ ବି ଆସୁଥିବ ସୂର୍ଯ୍ୟାଲୋକ । ଜ୍ୟୋତ ସୂର୍ଯ୍ୟାଲୋକ । ଏଇ ଖୋଲା ଘରେ, ଖୋଲା ପବନରେ ଆଉ ଖୋଲା ଆଲୁଅରେ ଗନ୍ନୁଟା ତାର ଦିନ କାଟୁଛି । କୋଉଠି ଅନ୍ଧାର ନାହିଁ କୋଉଠି କାଳିମା ନାହିଁ ।

ଆଉ କାନ୍ଥର ଥାକରେ ଥୁଆ ହୋଇଛି ଗୋଟାଏ ରାମାୟଣ । ବୋଧହୁଏ ସବୁଦିନ ଟିକେ ସମୟ ପାଇଲେ ଗନ୍ନୁ ଏ ବହିଟା ପଢ଼େ ।

ଗନ୍ନୁ ଲୁଗା ବଦଳ ପରିବା କାଟିବା ପାଇଁ ରୋଷାଇ ଘରକୁ ଆସିଲା । ବୋଉ କହିଦେଇଛନ୍ତି ତାଙ୍କର ପସନ୍ଦ ଅନୁସାରେ ରନ୍ଧା-ହେବ । ସିନେମାରୁ ଫେରି, ଯଦି ଦେଖିବେ ଯେ ସେମିତିଇ ସରିନି, ତେବେ ବିରକ୍ତ ହେବେ ।

କାଲି ବାପା ବୋଉଙ୍କୁ ଟ୍ରକ୍‌ରେ ନେଲେ ନାହିଁ ପଲ୍ଲୀଦୃଶ୍ୟ ଦେଖିବା ପାଇଁ । ଏଥିପାଇଁ ବୋଉ ଆଜି ସମସ୍ତଙ୍କୁ ଧରି ସିନେମା ଗଲେ ଏକଦମ୍ କାଶ୍ମୀରର ପ୍ରକୃତି ଦେଖିବା ପାଇଁ ।

ବୋଉ ସୋଫିଷ୍ଟିକେଟେଡ୍ ।

କିନ୍ତୁ ଗନ୍ନୁ ··· ଗନ୍ନୁଟା —

କିଏ କବାଟ ଖଟ୍ ଖଟ କରୁଛି ।

କିଏ କବାଟ ଖଟ୍ ଖଟ୍ କରୁଛି ? କିଏ ··· ?

କୁକୁରଟା ଭୁକି ଉଠିଲା ।

ରାନୁ କହିଲା—ବାବୁ ନାହାନ୍ତି ।

କବାଟ ଖୋଲ ।

ଆରେ, ଏ କାହାର ସ୍ୱର ? ରାନୁ ଥମ୍‌କି ଗଲା । କାହାର ସ୍ୱର ସେ ଶୁଣୁଛି ? ରାନୁର କାନର ପର୍ଦ୍ଦାଟା ଥରି ଉଠିଲା । ରାନୁର ମଥାରେ ଝାଳ ବିନ୍ଦୁ ବିନ୍ଦୁ ଝରି ଉଠିଲା । ଛାତି ଦକ ଦକ ହୋଇ ଉଠିଲା । ତାର ଓଠ ପାଖୁଡ଼ାରେ କମ୍ପନ ଖେଳିଗଲା ।

ରାନୁ !

ରାନୁ କଅଣ କରିବ କିଛି ବୁଝିପାରୁ ନ ଥିଲା ।

ରାନୁ, ଆରେ କବାଟ ଖୋଲ । ରାନୁ !

ରାନୁ ସ୍ଥାଣୁ ପରି ଠିଆ ହୋଇଥିଲା ।

ବାହାରେ ଡାକୁଚି ସୁବୋଧ ।

ସୁବୋଧ ! ହେ ଭଗବାନ—!

ରାନୁକୁ ଶୁଭିଲା ସେଇ କଥା, ସେଇ କଲ୍ୟାଣୀଙ୍କର କଥା—"ପ୍ରେମ ଲୋ ପ୍ରେମ ! ବିଲେଇ ଯେତେ ଆଖିବୁଜି ଦୁଧ ପିଇଲେ ସୁଦ୍ଧା ଧରାପଡ଼େ ଲୋ ସତ୍ୟାନାଶୀ । ଧରା ପଡ଼େ ।"

ରାନୁ କାତର ହୋଇପଡ଼ିଲା । ଲଜ୍ଜା, ସଂକୋଚ, ଭୟ ତାକୁ ଯେପରି ଗ୍ରାସ କରିଛି । ଏଇ ସୁବୋଧକୁ କ'ଣ ପ୍ରେମ କରାଯାଇପାରେ ? ଏଇ ସୁବୋଧ ସହିତ ତାର ନାଁକୁ କ'ଣ ଯୋଡ଼ି ଦିଆଯାଇପାରେ ?

ତାହାହେଲେ ତୁମେ କଅଣ ଖୋଲିବନି ରାନୁ ?

ଘରଟା ଭିତରେ ସେ ଅଭିଆଡ଼ୀ କସ୍ତୁରୀ ଝିଅଟାଏ । ଖାଲି ସାର୍ଟଟାଏ ସିଲାଇ କରି ଦେଇଥିଲା ବୋଲି ତ ଏତେ କଥା ଶୁଣିଲା । ଯଦି କବାଟ ଖୋଲି ସୁବୋଧକୁ ଆସିବାକୁ ଦିଏ,—ତେବେ—ତେବେ ?

ଗନୁ ଦୋଖାଇରେ ପଡ଼ିଥିଲା । ହାତ ତାର କବାଟ ଜଞ୍ଜିରରେ, ଅଥଚ ସେଥିପାଇଁ ନଦଦ । ଖୋଲୁନାହିଁ କି ଛାଡ଼ୁନାହିଁ । ତା ମୁଣ୍ଡରେ କିଛି ବୁଦ୍ଧି ପଶୁ ନଥିଲା ।

ତାହାହେଲେ ମୁଁ ଫେରିଯାଉଛି ଗନୁ ।

ଫେରି ଯିବେ ? ଫେରି ଯିବେ ? ନା—ନା—ନା, ଯାଆନ୍ତୁନି ସୁବୋଧ ବାବୁ, ଆପଣ ଯାଆନ୍ତୁନି । ମୁଁ ଗନୁ ଡାକୁଛି ।

ସୁବୋଧ ବୁଲି ଚାହିଁଲା ।

କବାଟ ଖୋଲି ଗନୁ ଖୁଣ୍ଟଟାକୁ ଧରି ଡାକୁଛି ହାତ ବଢ଼େଇ ।

ସୁବୋଧ କହିଲା—ମୁଁ ନମିତା ଦେବୀଙ୍କର ନୋଟ୍ ଖାତାଟା ନେଇ ଆସିଥିଲି ଗନୁ ।

ହଁଅନ୍ତୁ ।

ନମିତା ଦେବୀ କ'ଣ ନାହାନ୍ତି ?

ନା, ସିନେମା ଯାଇଛନ୍ତି ।

ସେ ଆସିଲେ ତମେ ଏ ଖାତାଟା ତାଙ୍କୁ ଦେଇଦେବ ଗନୁ ।

ହଁ ଦେଇ ଦେବି ।

ମୋ ସାର୍ଟଟା ସିଲେଇ କରିଛ ?

ଗନୁ କିଛି କହିଲା ନାହିଁ । ସୁବୋଧର ମୁହଁକୁ ଚାହିଁବାକୁ ତାକୁ ଭାରି ଖରାପ ଲାଗିଲା ।

ଗନୁକୁ କିଛି ନ କହିବାର ଦେଖି ସୁବୋଧ କହିଲା—ଓଃ..., ସିଲେଇ କରିନ ବୋଧହୁଏ, ହଉ କାଲି କରିଦେବ, ମୁଁ ନେଇଯିବି ।

ଗନୁ ସେଥିପାଇଁ ନୀରବ ହୋଇ ଠିଆ ହୋଇଥିଲା । ଆଜି ସୁବୋଧ ଆଗରେ କଥା କହିବାକୁ ତାର କାହିଁକି ଖୁବ୍ ଲଜ୍ଜା ଆସୁଛି । ଖୁବ୍ ଲଜ୍ଜା । ଆଗରୁ ସେ ସୁବୋଧ ସହିତ କଥାବାର୍ତ୍ତା କରୁଥିଲା । କିନ୍ତୁ ଏପରି ସଙ୍କୋଚର ତ ସମ୍ମୁଖୀନ ସେ କେବେ ହୋଇ ନ ଥିଲା ? ସବୁତକ ସଙ୍କୋଚ ଆଜି ତାର ଗଳାରୁଦ୍ଧ କରିଛି । ଆଉ ସେ କିଛି କହିପାରୁନି । କାହିଁକି ଏ ସଙ୍କୋଚ ? କାହିଁକି ଏ ଆନମନା ଭାବ ? କାହିଁକି ହୃଦୟର ଏ ଦ୍ରୁତ ସ୍ପନ୍ଦନ ? ସୁବୋଧ ମୁହଁକୁ ଚାହିଁବାକୁ ଲାଜ ଲାଗୁଛି । ଏ ଲାଜ, ବହୁତ

ମଧୁର, ସୁନ୍ଦର ଏ ଲାଜ । ସତେ ଯେପରି ଗୋଟାଏ ଫୁଲ ଲାଜରେ ଝାଉଁଳି ଯାଉଛି । ଆଗରୁ ସେ ସୁବୋଧକୁ ଲାଜ କରୁ ନ ଥିଲା । କିନ୍ତୁ ଆଜ ଅଙ୍ଗେ ଅଙ୍ଗେ ସରମର ବେପଥୁ । ଶିହରଣ । ସେ କେବଳ ଅନୁଭବ କରୁଥିଲା ଗୁଡ଼ାଏ ହସ, ଗୁଡ଼ାଏ ଖୁସି, ଗୁଡ଼ାଏ ବେହୋସୀ ତାକୁ ଯେପରି ଅଣନିଃଶ୍ୱାସୀ କରି ତୋଳୁଛି । ରାନୁ ତାର ପାଦ ଆଙ୍ଗୁଳିରେ ବାର ବାର ଭୂଇଁ ରଚୁଥିଲା । ସେ ତ କିଛି କହିବ, କହିବ ବୋଲି ହେଉଥିଲା; କିନ୍ତୁ କିଛି କହିପାରୁ ନଥିଲା । ମଣିଷ ମନରେ ଯେତେବେଳେ ଗୁଡ଼ାଏ ଆବେଗ ପୁରି ଭରିଯାଏ, ସେ ସତେ କାହିଁକି କିଛି କହି ନପାରେ ଯେ !

ସୁବୋଧ ରାନୁକୁ ଚାହିଁ ରହିଥିଲା ।

ରାନୁ କିନ୍ତୁ ସୁବୋଧକୁ ଚାହିଁ ନ ଥିଲା । ଚାହିଁଥିଲା କାନ୍ଥର ସେଇ ବଳୁଆ ଆଲୁଅକୁ । ଯେଉଁଠି ଗୁଡ଼ାଏ ପତଙ୍ଗ ଶୂନ୍‌ଚକ୍କୀ ମାରୁଛନ୍ତି ।

ସୁବୋଧ କିଛିକ୍ଷଣ ପରେ ନୀରବତା ଭଙ୍ଗ କରି କହିଲା—ମୁଁ ଯାଉଛି ରାନୁ । ତମେ ତ ଏଠି ଠିଆ ହୋଇଛ, ଘର କାମ କେଣେ ବାକି ରହିଥିବ ।

ରାନୁ କିଛି ଉତ୍ତର ଦେଇପାରିଲା ନାହିଁ । ସୁବୋଧକୁ ଭିତରୁ ଡାକି ପାରିଲା ନାହିଁ, କି ଯିବାକୁ କହିପାରିଲା ନାହିଁ ।

ସୁବୋଧ ଯେତେବେଳେ ଯିବାକୁ ବାହାରିଛି, ହଠାତ୍ ସେ ଦେଖିଲା ଘରର ଫାଟକ ଟପି ପଶିଆସୁଛି ଜଣେ ଟାଏ । କିଏ ? ହରପ୍ରଚରଣ ?

ହରପ୍ରଚରଣ ଜିପରୁ ଓହ୍ଲାଇ ପଡ଼ିଲେ । ସୁବୋଧକୁ ଦେଖି ହସିଉଠି କହିଲେ—କିଓ ସୁବୋଧ, ତମେ ଏ ବାହାରେ ଠିଆହୋଇଛ କାହିଁକି ?

ସୁବୋଧ କିଛି ଉତ୍ତର ଦେଇ ପାରି ନ ଥିଲା । କେବଳ ନମସ୍କାରଟିଏ କରିଥିଲା ।

ଆରେ ଭିତରକୁ ଆସ ।

ସୁବୋଧ ଅଗତ୍ୟା ବାଧ୍ୟ ହୋଇ ଭିତରକୁ ଗଲା ।

ହରପ୍ରଚରଣ ପାଟିକରି ଡାକିଲେ—ରାନୁ, ଆରେ ସୁବୋଧ ଫେରି ଯାଉଛି ଯେ !

ରାନୁ ଘର ଭିତରେ ଅକ୍‌କାଠି ପରି ଠିଆ ହୋଇଥିଲା । ତାର ଗୋଡ଼ରେ ଯେପରି ଜୀବନ ନାହିଁ ।

ରାନୁ ! ଆରେ ସେଠି କ'ଣ କରୁଛୁ ?

ଯାଉଛି ବାପା··· ।

ରାନୁ ଯାଇ କବାଟକୁ ଆଉଜି ଠିଆ ହେଲା ।

ହରପ୍ରଚରଣ ରାନୁପାଇଁ କିଣି ଆଣିଥିବା ଶାଢ଼ୀର ପ୍ୟାକେଟ୍ ରାନୁ ହାତକୁ ବଢ଼ାଇ କହିଲେ—ତୋ ପାଇଁ ଶାଢ଼ୀ ଆଣିବା ପାଇଁ କହିଥିଲି ନା ? ହେଇଟି ନେ··· ।

ରାନୁକୁ ଲାଜ ଲାଗୁଥିଲା ସୁବୋଧ ଆଗରେ ହାତ ବଢ଼ାଇ କପରି ବାପାଙ୍କ ହାତରୁ ଶାଢ଼ୀ ଆଣିବ ।

ରାନୁ ବାଧ୍ୟ ହୋଇ ହାତ ବଢ଼ାଇଲା ।

ହରପ୍ରଚରଣ ଘରର ନିସ୍ତବ୍ଧତା ଦେଖି ପ୍ରଶ୍ନକଲେ— ଘରେ କଣ କେହି ନାହାନ୍ତି ?

ସିନେମା ଯାଇଛନ୍ତି ।

ଓହୋ···! ତା'ପରେ ହରପ୍ରଚରଣ କହିଲେ—କାଲି ମୋର ଆସିବାର ଥିଲା ମା' । କିନ୍ତୁ ଖୁବ୍ ଚଞ୍ଚଳ କାମ ସାରି ଆଜି ଚାଲି ଆସିଲି । ସୁବୋଧକୁ ଲକ୍ଷ୍ୟକରି ପୁଣି କହିଲେ—ଆରେ ସୁବୋଧ ତମେ ଠିଆ ହୋଇଛ ଯେ, ବସ ! ବସ !

ସୁବୋଧ ଅତି ସଙ୍କୁଚିତ ହୋଇ ସୋଫାଟା ଉପରେ ବସିଥିଲା ।

ରାନୁ ମା, ସୁବୋଧର ସାର୍ଟଟା ଦେଲୁଣି ? କଣ ସୁବୋଧ, ସାର୍ଟଟା ତମ ଦେହକୁ ହେଲା ନା ?

ସାର ··· ?

ରାନୁ ବ୍ୟସ୍ତ ହୋଇ କହିଲା—ଆରେ ସେ ତ ସୁବୋଧକୁ ସାର୍ଟ କଥାଟା କହି ନାହିଁ । ତା ପାଇଁ ନିଜେ ଯାଇ ବାଛିବୁଛି ପସନ୍ଦ କରି ସାର୍ଟଟାଏ କିଣିଛି, ଅଥଚ ସେକଥା କହିନି ? ଇସ୍ ··· !

ସୁବୋଧ ବୁଝିପାରୁ ନ ଥିଲା କୋଉ ସାର୍ଟ କଥା କହୁଛନ୍ତି ଏଇ ବିପ୍ରଚରଣ । ସେ ତ ରାନୁକୁ ଦେଇଥିଲା ଗୋଟାଏ ନିହାତି ଛିଣ୍ଡା ସାର୍ଟ ! ସେ ସାର୍ଟ ବିଷୟରେ ବିପ୍ରଚରଣ ଏପରି କଅଣ ଯେ କହୁଛନ୍ତି ?

ଅରେ, ତୁ ଜାଣିନୁ କି ? ଭୁଲିଯାଇଛୁ ? ମୁଁ କାଲି ତୋପାଇଁ ଶାଢ଼ୀଟା କିଣି ଆଣିଛି । ହେଲେ ତୋ ସାର୍ଟଟା—

ଜାଣିଛି ବାପା ।

ଜାଣିଛୁ, ଅଥଚ ତାକୁ ଦେଇନାହୁଁ ?

ରାନୁ ସିନା ମୁହଁରେ କିଛି କହି ପାରୁନଥିଲା—ହେଲେ ମନ ଭିତରେ କହୁଥିଲା—କେମିତି ସେ ଦେଇଥାନ୍ତା ବାପା ? କେମିତି ସୁବୋଧର ମୁହଁକୁ ଚାହିଁ ହାତ ବଢ଼େଇ ତାର ହାତକୁ ସାର୍ଟଟା ଦେଇଥାନ୍ତା ! ସୁବୋଧ ପାଖରେ ଠିଆହେଲେ ମତେ ଏତେ ଲାଜ ଘୋଟି ଆସୁଛି ଯେ ମୁଁ କ'ଣ କରୁଛି, କୋଉଠି ଠିଆ ହୋଇଛି ନିଜେ ଜାଣିପାରୁନି ; ଅଥଚ ତମେ କହୁଚ ସାର୍ଟ କଥା ?

ବିପ୍ରଚରଣ କହିଲେ—ରାନୁ, ଗଲୁ ମା ସାର୍ଟଟା ଆଣିଲୁ ।

ରାନୁ ଧାଇଁଗଲା ।

ବିପ୍ରଚରଣ ସୁବୋଧକୁ ପଚାରିଲେ—କେମିତି ପଢ଼ାପଢ଼ି ଚାଲିଛି ସୁବୋଧ ?

ଆଜ୍ଞା !

ଓ. ଏ. ଏସ୍. ଦେଉଛ ?

ଠିକ୍ କରିନାହିଁ ଆଜ୍ଞା ! ତା ଛଡ଼ା ଏତେ କାମ ଯେ ପଢ଼ାପଢ଼ି କରିବାକୁ ଟାଇମ୍ ବି ନାହିଁ ।

କିନ୍ତୁ ତୁମର ତ ଓ. ଏ. ଏସ୍. ଦବା ଦରକାର । ତମେ ଥରେ ଆପିୟର କଲେ ନିଶ୍ଚୟ ସକ୍‌ସେସ୍‌ଫୁଲ ହବ ।

ସୁବୋଧ କିଛି ଉତ୍ତର ଦେଇ ନ ଥିଲା ।

ଦାରିଦ୍ର୍ୟ ତୁମର ଏକ ନିର୍ମମ ପ୍ରତିବନ୍ଧକ ହୋଇ ଠିଆ ହୋଇଛି ସୁବୋଧ । ଏଇ ଦାରିଦ୍ର୍ୟ ଭୂତକୁ ଦେଖି ତୁମେ କଣ ନିରାଶ ହୋଇପଡ଼ୁଛ

ସୁବୋଧ ? କିନ୍ତୁ ଏ ଦାରିଦ୍ର୍ୟରେ ହିଁ ଅଛି କଠୋର ଅଗ୍ନି ପରୀକ୍ଷା । ଆଉ ଏଇ ପରୀକ୍ଷାରେ ଯଦି ତମେ କୃତକାର୍ଯ୍ୟ ହୁଅ, ତାହାହେଲେ ତୁମେ ତ ମଣିଷ ହେବ ସୁବୋଧ ।

ସୁବୋଧ କିଛି ଉତ୍ତର ଦେଉ ନ ଥିଲା, କେବଳ ବିପ୍ରଚରଣଙ୍କର କଥା ଶୁଣୁଥିଲା ।

ବିପ୍ରଚରଣ କଥା ବନ୍ଦକରି ରାନୁକୁ ଡାକିଲେ—ମା' ରାନୁ, କଟରେ ସାର୍ଟ ଆଣିଲୁ ?

ସେପଟେଇ ଘରେ ରାନୁ ଥାଇ କହିଲା—ହଁ' କରୁଛି ବାପା !

ମୁଁ ତ ହଁ' କରିବା ପାଇଁ କହି ନ ଥିଲି । ମୁଁ କହିଥିଲି ସାର୍ଟଟା ଆଣିବା ପାଇଁ ।

ରାନୁ ମହା ଅସୁବିଧାରେ ପଡ଼ିଲା । ଅଚ୍ଛା ସାର୍ଟ କିଣିବା ଅଭୁଆରେ ବାପା ପକାଇ ଦେଲେ ଯେ, କଳେ ଯାଇ ପୁଣି ସୁବୋଧକୁ ଦବାକୁ ପଡ଼ିବ ! ବାପା କଉଡ଼ି ଇଏ ··· !

ସାର୍ଟଟାକୁ ହାତରେ ଧରି ରାନୁ ଯାଇ ପହଞ୍ଚିଲା ବିପ୍ରଚରଣଙ୍କ ପାଖରେ । ସେ ଆଦୌ ଚାହିଁପାରିଲା ନାହିଁ ସୁବୋଧର ମୁହଁକୁ । ଉଃ···! ସୁବୋଧଟା ଯେ କଣ ମନରେ ଭାବୁଥିବ !

ବିପ୍ରଚରଣ ହସି ହସି କହିଲେ—ଏ ସାର୍ଟଟା ତୁମ ପାଇଁ ରାନୁ ମା କିଣିଛି ସୁବୋଧ । ଦେଖିଲ, କେମିତି ହେଇଛି ?

ସୁବୋଧ କହିଲା—ମୋର ନୂଆ ସାର୍ଟ କଣ ହବ ଆଜ୍ଞା—ମୁଁ ତ ଗୁହେଁ ମୋର ସେଇ ଛିଣ୍ଡା ସାର୍ଟକୁ ।

ବିପ୍ରଚରଣ ସୁବୋଧର କଥା ଶୁଣିଲେ ନାହିଁ । ସେ କହିଲେ, ସାର୍ଟ ଖୋଲି ସୁବୋଧକୁ ଦେଲୁ ତ ମା' ।

ରାନୁ ବାଧ୍ୟ ହେଇ ସାର୍ଟଟା ଖୋଲି ସୁବୋଧକୁ ଦେଲା ।

ବିପ୍ରଚରଣ ସାର୍ଟ ଦେଖି ଖୁସି ହେଇଗଲେ । ହସି ହସି କହିଲେ—ଆରେ, ଏ ତ ଖୁବ୍ ଗୋଟାଏ ସୁନ୍ଦର ସିଲେକ୍‌ସନ୍ ! ଯାହା ହଉ, ଏ ସାର୍ଟ ପାଇଁ ବୋଧହୁଏ ତୁ ରାନୁ ବହୁତ ଖୋଜାଖୋଜି କରିଛୁ ବଜାରଟା ସାରା ।

ରାନୁ ଚିଡ଼ିଗଲା । ସେ କାହିଁକି ଖୋଜିବ ମ ? ବାପ ହୋଇ ଟିଏ ସାଥିରେ ଅଛି । କୌଣସିମତେ ନିଜକୁ ସେଠାରୁ ନେଇଯିବା ପାଇଁ ରାନୁ କହିଲା—ମୁଁ ଯାଉଛି ବାପା, ଚା' ପିଆଡ଼େ ଉତୁରି ଯିବଣି ।

ରାନୁ ଦଉଡ଼ି ଆସିଲା ସେପେଇ ଘରକୁ । ଚୁଲିରେ ଚା' କେଟ୍‌ଲଟା ବସିଛି । ଚା' ଉତୁରି ଆସିବ । ଗୋଟାଏ କପ୍ ଚା' ବାପାଙ୍କୁ ଦବ, ଆଉ ଗୋଟାଏ କପ୍ ଚା' ସୁବୋଧକୁ ଦବ ? ରାନୁକୁ ଜଣାଗଲା ଯେ ଚା' ଫା' କରିବାର ସବୁତକ ପ୍ରଣାଳୀ ଭୁଲିଯାଇଛି । ଚିନି ଖୋଜିଲା ବେଳକୁ ଚିନି ମିଳୁନି । ଚା' ଛଣା ଖୋଜିଲା ବେଳକୁ ଚା' ଛଣା ବି ମିଳୁନାହିଁ । ରାନୁ କାହିଁକି କିଛି ଖୋଜି ପାଉନାହିଁ ? କାହିଁକି ?

ସେ—ଯାହାହେଉ ଦି'କପ୍ ଚା' ଧରି ରାନୁ ବିପ୍ରଚରଣ ଓ ସୁବୋଧଙ୍କ ପାଖକୁ ଗଲା । ଚା' କପ୍ ବିପ୍ରଚରଣ ଓ ସୁବୋଧ ହାତକୁ ବଢ଼ାଇ ଦେଇ ଠିଆ ହେଲା କବାଟକୁ ଧରି ।

ବିପ୍ରଚରଣ ଚା' ଢୋକେ ନେଇ ଥୁ' କରି ଫିଙ୍ଗିଦେଲେ । ଆରେ ...ଚା' ଏମିତି ଲାଗୁଛି କାହିଁକି ?

ସୁବୋଧ କପେ ଚା' ପାଟିକୁ ନେଇ ମୁହଁ ବିକୁତ କରି ବସିଗଲା ।

ହସି ହସି ବିପ୍ରଚରଣ ବେଦମ୍ ହେଇଗଲେ—ଆରେ ମା, ଚା'ରେ ଚିନି ବଦଳରେ ମୋଖାଏ ଲୁଣ ପକେଇ ଦେଇଛୁ କି ?

ଲୁଣ ?

ରାନୁ ଆଡ଼ ଆଖିରେ ଦେଖିଲା ସୁବୋଧ ଓଠରେ ହସର ଫୁଆରା ଝରିପଡୁଛି ।

ଲୁଣ ?

ରାନୁ ଝାମ୍ ମାରିଯିବ । ରାନୁ ଅବଶ ହେଇ ପଡ଼ିବ । ରାନୁର ପାଦ ଦି'ଟା ଭାଙ୍ଗି ପଡ଼ିବ । ରାନୁ ସେଠାରୁ କେମିତି ମୁକୁଳି ଆସିବ ତାକୁ କିଛି ବୁଦ୍ଧିବାଟ ଦିଶିଲା ନାହିଁ । ମଣିଷ ପୁଣି ଏପରି ଅସହାୟ ହୁଏନ୍ତି ! ସବୁତକ ଲାଜର ମୁଣି ତାର ମୁଣ୍ଡ ଉପରେ ଯେପରି ଅଜାଡ଼ି ପଡ଼ିଲା ।

ରଘୁ ସେପାଖର ଘର ଭିତରକୁ ଦୌଡ଼ି ଆସି ଦମ୍ ମାରିଲା । ସେ ଦେଖିଲା ଯେ, ପ୍ରକୃତରେ ସେ ଚିନି ପକେଇ ନାହିଁ, ଚିନି ବଦଳରେ କେତେବେଳେ ମେଞ୍ଚାଏ ଲୁଣ ଭୁଲରେ ଚା'ରେ ଦେଇ ଦେଇଛି । ସେ ନିଜେ ତାର ମନକୁ ମନ ପଚାରିଲା—ଆରେ, ସେ ଆଜ ଏମିତି ହଉଛି କାହିଁକି ? କାହିଁକି ତା ମନଟା ଆଜ ଏମିତି ପାଗଳ ହେଇ ଉଠିଛି ? ଆଉ ସେ ମନଟି, ସେଇ ମନ ହରିଣୀଟି ଆଜ ଆଖି ପାଉନଥିବା ଦିଗନ୍ତଛୁଆଁ ବିସ୍ତୀର୍ଣ୍ଣ ଶ୍ୟାମଳ କେଦାରର ଅସୁମାରି ଫୁଲଗଛ ଭିତରେ କାହିଁକି ଖୁବ୍ ଜୋରରେ ଧାଉଁଛି, ଅଟକି ଠିଆ ହଉଛି, ଗୁଡ଼ାଏ ଚମକ ନେଇ, ପୁଣି ଖେଦି ଯାଉଛି ଲାଙ୍ଗୁଳ ଟେକି କୁଆଡ଼େ, କେଉଁ ଦିଗକୁ କେଉଁଥିପାଇଁ ଗୁଡ଼ାଏ ନୂଆ ନୂଆ ଭାବ ନେଇ, ଗୁଡ଼ାଏ ନୂଆ ଉନ୍ମାଦନା ନେଇ ?

ଏଇ ମନର ସବୁ ପାଇଲା ଭାବ, ପାଇ ସବୁ ହଜାଇ ଦେଲା ଭାବ, ରଘୁ ବୁଝି ବୁଝିପାରି ନଥିଲା । ବଡ଼ ଅଜଣା ଏ ମନ । ଏ ମନରେ ଆଜ କାହିଁକି ସେ ସ୍ବପ୍ନମୟ ଇନ୍ଦ୍ରଧନୁର ସୋରିଷ ଲାଗିଛି, ଏ ମନରେ ଆଜ ଯେ କାହିଁକି ଭ୍ରମରର ମଧୁ ଗୁଞ୍ଜନ ଶତ ଝଙ୍କାର ତୋଳି ଗୁଣୁଗୁଣୁ ହଉଛି, ଏ ମନରେ ଯେ ଆଜ କାହିଁକି ମଳୟ ଫୁଲ ବର୍ଷା କରୁଛି, ଏ ମନରେ ଯେ ଆଜ କାହିଁକି କୋଉଠି କେତେ କେଜାଣି ପରାଗ ବିଞ୍ଚିହେଇ ପଡ଼ିଛି, ରଘୁ ସବୁ ବୁଝିପାରୁ ନଥିଲା ।

ନୂଆ ଚେତନା । ନୂଆ ଉନ୍ମାଦନା । ନୂଆ ପୁଲକ ।
ରଘୁ ଥରି ଉଠିଲା ।

ରଘୁର ମନେହେଲା ତାର ଅମୁହାଁ ମନ ବଗିଚାର ଦୁର୍ଭେଦ୍ୟ କବାଟ କେଜାଣି କେମିତି ତାହାର ଅଜଣାରେ ଫିଟିଯାଇଛି, ଆଉ ସେହି ମନ ବଗିଚା ଭିତରେ ପଶିଯାଇଛି ଗୋଟାଏ ଦୁଷ୍ଟ ଭ୍ରମର । ସବୁଠାରୁ ଯେଉଁ ଫୁଲଟି ଅତି ସୁନ୍ଦର କମନୀୟ, ଏବଂ କୋମଳ ଅଥଚ ସୁଗନ୍ଧମୟ ତାର ସ୍ବରପାଖରେ ଅପୂର୍ବ ରାଗିଣୀ ତୋଳି ଭ୍ରମର ଗୁଞ୍ଜନ ଛାଡୁଛି—ଆଖି ଖୋଲ ଗୋ ଫୁଲରାଣୀ; ସପନ ତେଜ । ଏଇ ମୁଁ ଆସୁଛି । ଯାହାପାଇଁ ରାତି ରାତି ସପନ ଦେଖି ବିଭୋର ହଉଥିଲ, ତରୁଣୀ ମନର ଉଚ୍ଛଳ ବିଭୋରତା ନେଇ, ସେଇ ମୁଁ, ତୁମର ସପନ ମଣିଷ, ଆଜ ତୁମ ପାଖକୁ ଧାଇଁ ଆସିଛି ତୁମକୁ ସଂଗୀତ ଶୁଣାଇବା ପାଇଁ—ପ୍ରେମ ସଂଗୀତ ଶୁଣାଇବା ପାଇଁ ।

ପ୍ରେମ ?

ସନ୍ଧ୍ୟାର କାନମୂଳ ନାଲି ପଡ଼ିଗଲା । ବନୁର କୁରୁତାର ଗୋଟିଏ ବୋତାମ ଫିଟିଗଲା । ସନ୍ଧ୍ୟା ତାର ବଢ଼ିଲ ହାତକୁ ବାହୁରେ ଚୁପି ଧରି ଥରି ଉଠିଲା ।

ତାର ଦେହରେ କଦମ୍ବ । ଶତ କଦମ୍ବର ରେଣୁ ଝରି ଯାଉଛି— ଝରିଯାଉଛି ।

ପ୍ରେମ ?

ଏ ମନ କାହାଁ ? ଏ ମନ କାହାଁ କୋଉଠି ହଜେଇ ଦେଲା ସେ ସନ୍ଧ୍ୟା କାସ୍ତାଣୀ ? ଏ ମନକୁ କଏ, ଓଃ···କଏ ଚୋରେଇ ନେଲା ତାର ଅଜାଣତରେ ?

ଏ ପ୍ରେମ ତ ଚାରିଚକ୍ଷୁର ମିଳନରେ ହୋଇନ । ଏ ପ୍ରେମ ତ ପ୍ରଥମ ସାକ୍ଷାତରେ ହୋଇନ । ସେ ସୁବୋଧକୁ ଆଗରୁ ଦେଖିଥିଲା, ଆଗରୁ କଥା ବାର୍ତ୍ତା କରିଥିଲା । ବୋଧହୁଏ ସୁବୋଧ କେତେବେଳେ ଭ୍ରମରଟିଏ ହୋଇ ତାର ମନ-ସୁମନ ନିକଟରେ ଗୁଞ୍ଜନ ତୋଳିଥିଲା, ସେ ନିଜେ ଜାଣିପାରି ନଥିଲା । ସେ ଗୁଞ୍ଜନ ତାର ପ୍ରାଣରେ ସ୍ପନ୍ଦନ ତୋଳିପାରିଥିଲା ଆଗରୁ କି ନାଇଁ ସେ କଥା ସେ ବୁଝିପାରି ନଥିଲା । ବୋଧହୁଏ ତାର ମନ-ସୁମନଟି ଶୋଇପଡ଼ିଥିଲା । କିନ୍ତୁ ସେ ଆଜି ବୁଝିପାରିଲା ଯେ, ତାର ମନ-ସୁମନଟି ଆଜି ଆଖି ମେଲିଛି । ଆଜି ନିଜେ ଦେଖୁଛି ଏ ଦୁନିଆ ପୃଥିବୀରେ ଖାଲି ବସନ୍ତ ବର୍ଣ୍ଣ ରଙ୍ଗ ମନୋହରର ଅସୁମାରି ଉଡ଼ ଗହଳ । ଅସୁମାରି କବିତା । ଅସୁମାରି ପତ୍ରମର୍ମର । ଅସୁମାରି ପକ୍ଷୀର କାକଳି, କୋକିଳର ପଞ୍ଚମ ତାନ ।

ସୁବୋଧ ପୁଣି ତାର ମନର ମଣିଷ !

ହେ ଭଗବାନ, ସେ କି ନିର୍ଲଜ ପରି ସୁବୋଧର ସାର୍ଟଟାକୁ କରୁଥିଲା ? ସେ ସେତେବେଳେ କ'ଣ ଜାଣି ପାରି ନ ଥିଲା ଯେ ଏ ସାର୍ଟ ସିଲେଇ ପଛରେ ରହିଛି ସେଇ ଅଜଣା ଦୁର୍ବଳତା ?

ବୋଉ ଯଦି ଏ ପ୍ରେମ ଶବ୍ଦଟା କହି ନ ଥା'ନ୍ତେ ? ବୋଉ ଯଦି ସୁବୋଧକୁ ପ୍ରେମ କରାଯାଇପାରେ—ଏ କଥା ତାକୁ ଚେତା'ଇ ଦେଇ ନଥାନ୍ତେ ? ବୋଉ ଯଦି ତାକୁ ସନ୍ଦେହ କରି ନ ଥାନ୍ତେ···?

ଆଉ ବାପା ଯଦି ସାର୍ଟ କିଣିବାକୁ କହି ନଥାନ୍ତେ···?

ଆଜି ସେ ଯଦି ଚା'ରେ ଚିନି ବଦଳରେ ଲୁଣ ପକାଇ ନଥାନ୍ତା ?

ଜନ୍ମ ବୋଉ ଠିକ୍ କଥାଟି କହି ତାର ଘୁମେଇ ପଡ଼ିଥିବା ମନ କଳକାର ନିଦଟାକୁ ଭାଙ୍ଗିଦେଲେ । ପ୍ରକାରାନ୍ତରରେ ସେ ତାକୁ ବୁଝାଇ ଦେଲେ—ଆମେ ବି ସତ୍ୟାନାଶୀ ହୁଣ୍ଡି ! ଆମେ ମନଟାକୁ କେତେ ପଥର କରିଛୁ ? ଏଇ ସୁବୋଧକୁ ପ୍ରେମ କରାଯାଏ ଲୋ—ଏ ସୁବୋଧକୁ ପ୍ରେମ କରାଯାଏ !

ବାପା···, ତୁମେ କଅଣ ମୋ ମନର କଥା ସବୁ ଜାଣିପାରୁଛ ବାପା·· ?

ଜନୁ ଆଜ ଜନୁ ଜାଣିଲା ଯେ,ସେ କେତେବେଳୁ ସୁବୋଧକୁ ତାର ମନ ସିଂହାସନ ଉପରେ ଦେବତାଟି ପରି ଥାପି ତାର ମନର ଅସରନ୍ତି ପୂଜା ଅର୍ଘ୍ୟ ଢ଼ାଳି ଦେଇଛି ଅଜାଣତରେ । ସେ ପୂଜା ମାର୍ମିକ ପୂଜା, ଶାଶ୍ୱତ ପୂଜା । ଧୂଳି ନାହିଁ, ମଳି ନାହିଁ, କୃତ୍ରିମତା ନାହିଁ, ଗୁଡ଼ାଏ ଅଶ୍ଳୀଳ ପିପାସାର ଉପଲବ୍ଧି ନାହିଁ । କେବଳ ନିଜକୁ ଉଜେଇଦେଲାର ଭାବ ନିଜକୁ ସର୍ବତୋଭାବେ ସମର୍ପଣ, ଉତ୍ସର୍ଗ କରିଦେବାର ଭାବ ।

ଜନୁ କହିଲା—ପ୍ରକୃତରେ ଏ ପ୍ରେମଟା ଦୁନିଆରେ ସବୁଠାରୁ ହେଉଛି ସାଂଘାତିକ ସଂକ୍ରାମକ ବ୍ୟାଧି । ଯାହାର କୌଣସି ଔଷଧ ନାହିଁ, ମୁକ୍ତି ପାଇବାର କୌଣସି ପଥ ବି ନାହିଁ । ସେ ନିଶ୍ଚୟ ଦିନେ ନା ଦିନେ କେତେବେଳେ ଆସିବ, ତନୁ-ମନକୁ ଜରଜର କରି ଘାରିଯିବ, ଉଦାସ କରିଦେବ, ନିକମା କରିଦେବ, ତାର ଆସିବା ପଥକୁ ରୋକି ହେବ-ନାହିଁ, ବାରଣ କରିହେବ ନାହିଁ । ସେ ଆସିବ ହିଁ ଆସିବ ! ବୟସର ବସନ୍ତ ପହୁଆର ଭିତରେ ସେ କେତେବେଳେ ପଦଚାରୀ ମନର କବାଟରେ ଆଘାତ ହାଣିବ । ତାପରେ— ?

ତା'ପରେ ନିଜେ ନିଜକୁ ଭୁଲିଯିବ । ଆତ୍ମବିସ୍ମୃତି । କାମରେ ମନ ନାହିଁ, ଖାଇବାରେ ମନ ନାହିଁ, ଶୋଇବାରେ ମନ ନାହିଁ, କେବଳ ଗୁଡ଼ାଏ ଅନୁଚିନ୍ତନ, ଅନୁଭବନ । ସତେ ଯେପରି ମନର ମଣିଷ ତାକୁ କାବୁ କରି ନେଇଛି, ହୃଦୟକୁ ଜୟ କରିବାକୁ ଯାଇ ତା'ର ମନ କାରାଗାରରେ ବନ୍ଦୀ କରି ଦେଇଛି ।

ରାଜୁ ସେଦିନ ଯେତେବେଳେ କାମସାରି ଶୋଇବାକୁ ଗଲା, ତା'ର ମନେହେଲା ସେ ତା' ଆଖିରେ ଆଦୌ ନିଦ ନାହିଁ । ଆଖିବୁଜି ସେତେବେଳେ ଯନ୍ତ୍ରଣାରେ ଛଟପଟ ହଉଥିଲା, ସେ ଦେଖିଲା ସେ ତା'ର ସମ୍ମୁଖରେ ସୁବୋଧ ବସିଛି । ସେ ଚମକି ପଡ଼ିଲା । ଆଖି ଖୋଲି ଯେତେବେଳେ ଚାହିଁଲା, ଦେଖିଲା ଘର ଭିତରଟାଯାକ ଖାଲି ସୁବୋଧ । ଖାଲି ସୁବୋଧ । ସୁବୋଧମୟ ।

ସେ ସେଇମିତି ଠିଆ ହେଇଛି । ପତଳା ଗୋରା ଡେଙ୍ଗା ଲୋକଟିଏ । ନିରୀହ ଲୋକଟିଏ । ମୁହଁଯାକ ଦାଢ଼ୀ । ନଖରେ ଖୁବ୍ ବାଜନ । ମୁଣ୍ଡର ବାଳଗୁଡ଼ା ଅଡ଼ୁଆ ଅଡ଼ୁଆ ! ଶୀର୍ଣ୍ଣକାୟ ହେଲେ କ'ଣ ହବ ମୁହଁଟାରେ ଗୁଡ଼ାଏ ଉଜ୍ଜ୍ୱଳତା ପୂରି ରହିଛି । ଆଖି ଦୁଇଟି ବୁଦ୍ଧିଦୀପ୍ତ—ସପ୍ରଭ । ବୋଧହୁଏ ତା'ର ସେହି ଦୀପ୍ତ ଆଖି ଦୁଇଟି ତା'ର ମେଧାର ପ୍ରଖରତା'ର ସୂଚନା ଦଉଛି । ପିନ୍ଧିଛି ଗୋଟାଏ ହାତଧୂଆ, ଇସ୍ତ୍ରୀ ନଥିବା କୁର୍ତ୍ତାଟିଏ । କାନ୍ଧ ଫାଟିଯାଇଛି, ପିଠି ପାଖରେ ସିଲେଇ, ଆଉ ଗୋଟିଏ କମ୍‌ଦାମୀର ଫୁଲପ୍ୟାଣ୍ଟ । ଗୋଡ଼ର ଦଟି ବାହାରିଛି । ପାଦରେ ଛିଣ୍ଡା ଟଙ୍କିଆ ଚପଲ । ହାତରେ ଘଣ୍ଟା ନାହିଁ । କିନ୍ତୁ ଅଛି ଗୋଟାଏ ମୋଟା କଲମ । ତା'ର ଦୟନୀୟ ବେଶଭୂଷା ତା'ର ଚରମ ନିଃସ୍ୱତା'ର ସୂଚନା ଦେଉଥିବାବେଳେ ମଧ୍ୟ, ତା'ର ଓଠରେ ସେଇ ଯେଉଁ ମୃଦୁହସ ଲାଗିରହିଛି, ସେ ହସ ସୂଚନା ଦଉଛି ସକଳ ଦୈହିକ ଯାତନା—ଦାରିଦ୍ର୍ୟ, ଅନଟନ, ଦୁଃଖ, ନିପୀଡ଼ନ ଭିତରେ ତା'ର ମନଟା ମରିନାହିଁ, ଜୀଇଁଛି, ଅନ୍ତରର ପ୍ରାଚୁର୍ଯ୍ୟ ନେଇ, ଆତ୍ମସନ୍ତୋଷ ନେଇ ।

ଆରେ, ଏ ସୁବୋଧ କ'ଣ ସବୁବେଳେ ତା' ପାଖରେ ? ଶୟନରେ ସପନରେ, ଜାଗରଣରେ ? ଛାଇପରି ଗୋଡ଼ାଉଛି । କେତେବେଳେ

ପାଖରେ, କେତେବେଳେ ଦୂରରେ ମରୀଚିକାପରି ଧାଇଁ ଯାଉଛି, ଅପସରି ଯାଉଛି । କିନ୍ତୁ ସୁନ୍ଦର । ରାନୁକୁ ରହିଁ ସୁନ୍ଦର ହସୁଛି ।

ଏ ସୁବୋଧ କ'ଣ ସତେ ମରୀଚିକା ?

ରାନୁ ବଳଣା ଉପରେ ଆଣୁ କି ଉପରେ ଓଠଟି ଥୋଇ ଥକ୍କା ମାଓ ବସିଥିଲା ଆଉ ଭାବୁଥିଲା ସୁବୋଧ କ'ଣ ସତେ ଏକ ନିଗୂଢ଼ ମରୀଚିକା ?

ଘରଟା ସାରା କେବଳ ନୀରବତା । କେବଳ ରାନୁ । କିନ୍ତୁ ପବନରେ ମିଶିରହି ସୁବୋଧ ରାନୁ ସାଥିରେ ଗପିବାରେ ଲାଗିଛି ।

ରାନୁ ମନର ଏ ଭାବନା ଦେଖି ସୁବୋଧ ରାନୁକୁ କହିଲା—ତମେ ମତେ ଭୁଲ ବୁଝୁଛ ରାନୁ । ମୁଁ ମରୀଚିକା ନୁହେଁ, ମୁଁ କେବଳ ଓଏସିସ୍ । ମୁଁ ତୁମକୁ ରହିଁ ରହିଛି ବର୍ଷ ବର୍ଷ ଧରି କେଉଁ ଦିନଠାରୁ ତୁମକୁ ପାଇବା ପାଇଁ, ତୁମର ସାହଚର୍ଯ୍ୟ ଲାଭ କରିବା ପାଇଁ । ଯେଉଁ ମିଳନ କି ଆମର ବହୁ ଯୁଗର ମିଳନ, ଜନ୍ମ ଜନ୍ମାନ୍ତରର ମିଳନ ।

ରାନୁ ହସି ଉଠିଲା ।

ସୁବୋଧ କହିଲା—ମୁଁ ଦୁଃଖୀ ରାନୁ । ମୁଁ ଦରିଦ୍ର । ଦରିଦ୍ର ତ କେବେ କାହାକୁ ହତାଶ କରେନା, କାହାର ଆଖିର ଲୁହରେ ଲାବଣ୍ୟର ବ୍ୟଞ୍ଜନା ଦେଖିବାକୁ ଆଗ୍ରହୀ ହୁଏନା । ସେ ସମବ୍ୟଥୀ । ସେ ସମବେଦନା-ଶୀଳ । ଏକ ମରୀଚିକା ପରି ତୁମକୁ ଖେଳାଇ ତୁମ ମନରେ ଯେ ଅକାରଣ କଷ୍ଟ ଦେବ, ଏକଥା ତୁମେ ଭାବୁଛ କାହିଁକି ରାନୁ, ମୁଁ ତୁମର ଆସିବା ବାଟକୁ ରହିଁରହିଛି ।

ସୁବୋଧ ରାନୁର ହାତ ଧରିଲା, କହିଲା—ରାନୁ, ମୁଁ ତୁମକୁ ଭଲପାଏ ରାନୁ, ନବଢ଼ ଭାବରେ, ହୃଦୟର ପ୍ରତ୍ୟେକ କୋଣ ଅନୁ-କୋଣରେ ମୁଁ ତୁମକୁ ଭଲପାଏ ।

ରାନୁ ତା'ର ଆଖି ବନ୍ଦ କରି କେବଳ ଆନନ୍ଦର ମୃଦୁ ହସ ହସିଲା । ସେ କି ତ ଭଲପାଏ ଏହି ସୁବୋଧକୁ । କିନ୍ତୁ କେମିତି କହିବ ଯେ—

ସୁବୋଧ ମୁଁ ତୁମକୁ ଭଲପାଏ । ସେ କ'ଣ ଏତିକି କେସରମ୍ନୀ ? ଏକଥା ସେ କେମିତି ଭୁଣ୍ଡଖୋଲ କହିବ ? ସେ ସିନା ମୁହଁରେ କିଛି କହିପାରିଲା ନାହିଁ; କିନ୍ତୁ ତା'ର ଅଧରର ସେଇ ଯେଉଁ ସ୍ନିଗ୍ଧିର ହସ, ସେ ଯେପରି ସୁବୋଧକୁ ଜଣେଇ ଦେଲା ବହୁତ କିଛି, ସେଇ ହସ ଭିତରେ ଯେତେ ଯେପରି ଲୁଚିଥିଲା ନଭିତ ନାରୀ ମନର ଯାବତୀୟ ଭାଷାର, ମୂର୍ଚ୍ଛନାର ଆଲେଖ୍ୟ ।

ସୁବୋଧ ଧୀରେ ଧୀରେ ତା'ର ବଳିଷ୍ଠ ହାତରେ ରାନୁକୁ ଛାତି ଉପରକୁ ନେଇ ଆସିଲା ।

ସୁବୋଧ !

ସୁବୋଧର ଓଠରୁ ଝରିପଡ଼ୁଥିଲା ହସ ।

ସୁବୋଧ ! ମତେ ଛାଡ଼ ସୁବୋଧ !

ରାନୁ, ତୁମେ କ'ଣ ମୋତେ ବୁଝିନି' ରାନୁ ?

ସୁବୋଧ ସେହିପରି ହସୁଥିଲା । ଆଉ ତା'ର ହାତ ରାନୁର ଶରୀରକୁ ଗୁଡ଼ାଇ ନେଇଥିଲା ।

ରାନୁ ଥରି ଥରି କହିଲା—ମୁଁ ଅନୂଢ଼ା । ମୁଁ କୁମାରୀ । ମୋର ବାପ'ମା' ଅଛନ୍ତି । ମୋ ସମାଜ ଅଛି, ଆଖିର ବଗିର ଅଛି । ମତେ ଏପରି ଛାତିରେ ଆକୋର ଧରନା । ମୁଁ ତୁମକୁ ଭଲପାଏ ସୁବୋଧ—ଖୁବ୍ ଭଲପାଏ । ହେଲେ ଏପରି ଛାତିରେ ଧରନା ମତେ, ମୁଁ ଅଣନିଶ୍ୱାସୀ ହୋଇଯିବି ।

ନା ନା-ନା, ଛାଡ଼ ! ରାନୁ ଗୋଟାପଣେ ଭୟରେ ଥରିଗଲା ।

ରାନୁକୁ ସୁବୋଧର ସୁସ୍ଥ ଦେହ, ନିରାକାର ସୁବୋଧ, ଯବନର ସୁବୋଧ ଛାଡ଼ିଦେଲା ।

ରାନୁ ସେହିପର ଖଟଟା ଉପରେ ମୁହଁକୁ ଆଣ୍ଠୁ ଉପରେ ଥୋଇ ସୁବୋଧ କଥା ଭାବୁଛି ସେ ଭାବୁଛି । ତା'ର ଅଲକ୍ଷ୍ୟରେ ସାରା ଦେହଟା ଝାଳରେ ଓଦ୍ରଗଲଣି; କିନ୍ତୁ ସେ ସେହିପର ନିଶ୍ଚଳ ଭାବରେ ବସିଛି ।

କଟେଣ୍ଣ ଘଡ଼ିରେ ରାତି ତିନିଟା ବାଜିଲା ।

ରାନୁ ଦେଖିଲା ଘରେ କେହି ନାହାଁନ୍ତି । ସୁବୋଧ ନାହିଁ । ସୁବୋଧ ବଦଳରେ ତା'ର ଲୁଗାଟା ଅଲଗୁଣୀରେ ଝୁଲୁଛି ।

ରାନୁର ଛାତି ଥରେଇ ଏକ ଦୀର୍ଘ ନିଃଶ୍ୱାସ ବାହାରି ପଡ଼ିଲା, ସେ ଘରର ପ୍ରତ୍ୟେକ ପବନର କଣା ଅଣୁକଣାକୁ ଉତ୍ତପ୍ତ କରି ।

ନମିତା ଲାଜେଇ ଗଲା । ବଡ଼ ରୋମାଣ୍ଟିକ୍ ଏଇ ମନସୁଖ ।

ନମିତା ଦେଖିଲା ଟେଣ୍ଟି ପ୍ରତି ମମତା ନେଇ ମନସୁଖ ଗୋଟାଏ ପୁଷ୍ପ-ସ୍ତବକକୁ ବୃନ୍ତଚ୍ୟୁତ କଲେ ।

ପୁଷ୍ପ ସ୍ତବକଟିକୁ ଧରି ମନସୁଖ ଆଖିରେ କିଛି ଇଙ୍ଗିତଭରି ଅଭିନେତାଟି ପରି କହିଲେ—ଦେଖ ନମିତା, ଆଇ ହ୍ୟାଭ ସିନ୍ ମେନି ଗାର୍ଲସ ଇନ୍ ଇଂଲଣ୍ଡ, ବଟ୍ ନେଭର୍ ସିନ୍ ଏ ଗାର୍ଲ ଲାଇକ୍ ୟୁ । ୟୁ ଆର ମାଇଁ ଡ୍ରିମ୍ !

ପୁଷ୍ପସ୍ତବକକୁ ଯେତେବେଳେ ଅତି ଆଦରରେ ନମିତାର କବରୀରେ ମନସୁଖ ଗୁଞ୍ଜି ଦେଲେ, ନମିତା ଦେଖିଲା ତା'ର ସବୁତକ ବନ୍ଧୁ କାହିଁ କୁଆଡ଼େ ହଜିଯାଇଛି, ଆଜି ସେ ମନସୁଖଙ୍କର ବଳିଷ୍ଠ ବକ୍ଷରେ ଚାପି ହୋଇଯାଇଛି ।

ଉତ୍ତେଜନାରେ ନମିତାର କାନମୂଳ ତାତି ଉଠିଲା ।

ଆଃ... ! ମନସୁଖଙ୍କର କୋର୍ଟରେ ଯେଉଁ ଅତର ଲାଗିଛି, କେତେ ଯେ ବାସ୍ନା ! ନମିତାର ନାସିକାରେ ଅତରର ସବୁତକ ବାସ୍ନା ।

ମନସୁଖଙ୍କର ବାହୁବନ୍ଧନରେ ଧରାଦେଇ ନମିତା ଆଖି ବୁଜିଲା ।

ପତ୍ରଗହ୍ୱଳରୁ ମଥାଟେକି ରଜନୀଗନ୍ଧା ଆଖିମେଲି ଆକାଶକୁ ଚାହିଁଛି ।

ସ୍ତବକିତ ରଜନୀଗନ୍ଧା ଆକାଶକୁ ଚାହିଁ ବୋଧହୁଏ ସ୍ୱପ୍ନ ଦେଖୁଛି ।

ନମିତା ରଜନୀଗନ୍ଧାକୁ ଚାହିଁ ରହିଥିଲା ।

ଖାଲି ପୁଷ୍ପର ଅଙ୍ଗେ ଅଙ୍ଗେ ରୂପର ଚୂଡ଼ାନ୍ତ ଜୁଆର ।

କାରଣ୍ଡାର କୁଣ୍ଡରେ ବଢ଼ି ଉଠି ସପନର ଜାଲସ ମେଲିଛି ଏ ରଜନୀଗନ୍ଧା । ଖରି ସୁନ୍ଦର ।

ପବନର ଧୀର ମଧୁର ଆଘାତରେ ରଜନୀଗନ୍ଧା ତା'ର କୋମଳ ଶରୀରକୁ ଦୋହଲାଇ ଖେଳଉଠୁଛି ।

ପବନର ପ୍ରତ୍ୟେକ କଣାରେ କଣାରେ ଅଳସ ସୁରଭି । ମତାଣିଆ ସୁରଭି ।

ସୁରଭିକୁ ଆକଣ୍ଠ ପାନ କରି ନମିତା ତା'ର ପିପାସା ମେଣ୍ଟାଇ କଲା ।

ଏ ଏକ ସୁରଭିତ ସନ୍ଧ୍ୟା ।

ପୁଲକ, ହର୍ଷ, ରୋମାଞ୍ଚ ଆଉ ବହୁତ କାମନା, ବହୁତ ସନ୍ତୃପ୍ତତା, ଏ ସନ୍ଧ୍ୟାକୁ କାବ୍ୟମୟ—ଗୀତିମୟ କରି ଗଢ଼ି ତୋଳିଛି ।

କାମନା ।

ହଁ, କାମନା ହିଁ ଠିକ୍, କାରଣ ନମିତାର ନୟନ ଅପାଙ୍ଗରେ ଯୌବନର ବହୁତ ଯାତନା ।

ଆକାଶରେ ତାରା ଫୁଲ । ମାଳ ମାଳ ବାଦଲ ।

ଚୈତ୍ରର ବୈଶାଖର ଲୁଚକାଳି ଖେଳ । ଝଲମଲ । ସବୁ ଝଲମଲ ।
ଗୁନ୍ଦ ଉଠେନି ।

ଗୁନ୍ଦ ଯାଇ ବୋହା ବାନ୍ଧି ରହିଛି ନମିତାର ମୁହଁରେ । ନମିତାର ମୁହଁ ଜଳି ଉଠୁଥିଲା । ନମିତାର ମୁହଁ ସଳସଳେଇ ଦିଶୁଛି—ଉଜ୍ଜ୍ୱଳ ମୁହଁ ।

ସରମରେ ଗୁନ୍ଦୁ ଗୁନ୍ଦୁ ତା'ର ସାରା ଦେହ ।

ଏତେ ଲାଜ ଆସୁଛି କାହିଁକି ?

ମନସୁଖ ତାକୁ ବେକୋ ଆଖିରେ ଯୁହିଁ ରହି ପିଇଯାଉଥିଲେ ।

ମନସୁଖଟା କଣ ଡାଆଣା ! ତା'ର ଦେହରେ ଏପରି କଅଣ ଅଛି ଯେ ? ଖାଲି ଏମିତି ଅପଲକ ଆଖିରେ ଚାହିଁରହୁଛନ୍ତି ।

ନମିତା ତା'ର ଦୁଇ ଆଖିକୁ ଟିକେ ଏପାଖ କଲା, ପୁଣି ଟିକେ ସେପାଖ କଲା । ପୁଣି କେଜାଣି କାହିଁକି ଆଖିକୁ ତଳକୁ କଲା । ତାକୁ ବଡ଼ ଲାଜ । ତଳ ଅଧରକୁ ଦାନ୍ତରେ କାମୁଡ଼ି ଗୁଡ଼ାଏ ହସକୁ ଚାପି ଧରିଲା ।

ମନସୁଖ ତାକୁ ସେହିପରି ଚାହିଁ ରହିଛନ୍ତି ।

ଶୂନ୍‌ଶାନ୍ ଘର । ଶୂନ୍‌ଶାନ୍ ସବୁ । ବାହାରେ ଗୁଡ଼ାଏ ନଡ଼ିଆଗଛ ଛାଇ ପରି ଠିଆହୋଇଛନ୍ତି । ବଗିଚାଖଣ୍ଡି ସବୁ ଦୂରରୁ ଠିଆ ହୋଇଛନ୍ତି । ଦୂରରୁ ଦିଶୁଛି କୋଠାମାଳ । ଘରର ଝରକାରୁ ଆଲୋକ ନେଳୀ, ନାଲି । ବାହାରେ ଶୁଭୁଛି ମଟର ହର୍ଣ୍ଣ । ରିକ୍‌ସା ଘଣ୍ଟି । ସାଇକଲ ଘଣ୍ଟି । ଲୋକଙ୍କ ପାଟି ।

କିନ୍ତୁ ଏଠାରେ, ଏଇ ଘରର ବାରଣ୍ଡାରେ କେହି ନାହାନ୍ତି ।

ସେ ଓ ମନସୁଖ ।

ଚୁପ୍‌ଚାପ୍ ଦୁଇଟି ଛାଇ । ଦୁଇଟି ଛାଇ ।

ଦୁ'ଜଣଙ୍କ ମନରେ ଗୁଡ଼ାଏ ଆକାଂକ୍ଷା । ଗୁଡ଼ାଏ ଉଚ୍ଛ୍ୱାଳ ଭାବ । ଗୁଡ଼ାଏ ଉତ୍ତେଜନାର ଭାବ ।

ଗୋଟିଏ ଛାଇ ପାଖକୁ ଆଉ ଗୋଟିଏ ଛାଇ ଲାଗି ଆସୁଥିଲା । ସେମାନଙ୍କର ବ୍ୟବଧାନ କମି ଆସୁଥିଲା । ଦୂରତ୍ୱ କମି ଆସୁଥିଲା ।

ମନସୁଖ ତା'ର ହାତକୁ ଧରିଲେ । ମୃଦୁ ଚାପ ।

ନମିତାର ଦେହସାରା କେବଳ ଝିମ୍ ଝିମ୍ । ଝିମ୍ ଝିମ୍, ଆଉ ସେଇ ଝିମ୍ ଝିମ୍ ।

ମନସୁଖ ନମିତାର ସରୁ ସରୁ ଆଙ୍ଗୁଳିଗୁଡ଼ିକୁ ନିଜ ହାତରେ ଧରି ଦେଖୁଥିଲେ ।

ନମିତାର ଆଖି ଦୁଇଟି ବୁଜି ହୋଇଗଲା । ଗାଲରେ, ନାକ ପତାରେ, ଓଠରେ—ସାରା ଦେହରେ ବିନ୍ଦୁ ବିନ୍ଦୁ ଝାଳ ।

ମନସୁଖ ତା'ର ବାହୁକୁ ଧରିଲେ ।

ନମିତା ଶିହରି ଉଠିଲା । ଦେଖିଲା—ଚାରିଆଡ଼େ ସିନା ଲୋକବାକ କେହି ନାହାନ୍ତି; କିନ୍ତୁ ତା'ର ସାମନାରେ ଦୁଷ୍ଟ ରଜନୀଗନ୍ଧା ଜଳଜଳ ହୋଇ ତାକୁ ଚାହିଁ ରହି ହସି ଉଠୁଛି ।

ଚୋପା । ନିର୍ମଳ ହସ ।

ନମିତା ମନସୁଖଙ୍କ ମୁହଁରୁ ଆଖି ଫେରାଇ ରଜନୀଗନ୍ଧାକୁ ଚାହିଁ ମୁରୁକି ହସିଦେଲା ।

ମଲ୍ଲୀଶ୍ୱରୀ, ମୃଦୁ ହାସ ।

ନମିତା ମୁହଁ ବୁଲାଇ ରଜନୀଗନ୍ଧାକୁ ଚାହିଁଥିବାର ଦେଖି ମନସୁଖ ତା'ର କାନ ପାଖରେ ଚୁପ୍‌ଚାପ୍ କହିଲେ—ଦେଖ ନମିତା, ଗଛରେ ଏ ରଜନୀଗନ୍ଧା ଫୁଟି ବିଶେଷ ଶୋଭା ପାଉନି । ତା'ର ହୃଏତ ଭ୍ରମର ଏଇ ଗହଳ କେଶଦାମରେ ଶୋଭା ପାଇବା ଉଚିତ୍ ।

ନମିତା ଲାଜରେ ସଢ଼ ସଢ଼ ହୋଇ ମନସୁଖଙ୍କର ଗ୍ରୀବାରେ ଢଳି ପଡ଼ିଲା । ବଡ଼ ରୋମାଣ୍ଟିକ୍ ଏଇ ମନସୁଖ ।

ପ୍ରକୃତରେ ମନସୁଖଙ୍କଠାରେ ଜୀବନର ସବୁଜିମା ସ୍ୱପ୍ନ ଯେପରି ଅଜାଡ଼ି ପଡ଼ୁଛି ! ଆଃ... !

ଆଜି ବିଶେଷ ଗହଳି ନାହିଁ । ଯେଉଁ ଚାରିଟା ପାଞ୍ଚଟା ରୋଗୀ ଆସିଥିଲେ, ସେମାନେ କେତେବେଳୁ ଚାଲିଗଲେଣି । କିନ୍ତୁ ନମିତା ଯାଇ ପାରିନି; ସେ ଏକ ଭୟାନକ ରୋଗିଣୀ । ସେ ରୋଗଟା କାହିଁ କେଉଁଠି ମନ ଭିତରେ ଲୁଚି ରହି ମନଟାକୁ ବାଯ୍ୟା ବାଉଳା କରି ଦେଉଛି । ସେଇଟା

ଏକ୍ସରେରେ ଧରା ପଡ଼ୁନ, ଷ୍ଟେଥସ୍କୋପ୍‌ରେ ଧରା ପଡ଼ୁନ, ଡବଲ୍ୟୁ- ଆରରେ ଧରା ପଡ଼ୁନ, କିନ୍ତୁ ଠିକେ ଠିକେ ପଲସ୍‌ରେ ଧରା ପଡ଼ୁଛି, କେବଳ ପଲସ୍ ଦ୍ରୁତ ସ୍ପନ୍ଦନ ଯୋଗୁଁ, ଆଉ କଇଲେ ନାହିଁ ।

ଆଶ୍ଚର୍ଯ୍ୟ ଅବସ୍ଥା ଏ ରୋଗ !

ସେ ରୋଗର ଔଷଧ କେବଳ ମନସୁଖ ଜାଣିଛନ୍ତି, ଆଶ୍ଚର୍ଯ୍ୟ ଏ ମନସୁଖଙ୍କର ଡାଏଗନୋସିସ୍ ।

କିନ୍ତୁ ସବୁଠାରୁ କାବ୍‌ବା କଥା ନିଜେ ଡାକ୍ତର ବ୍ୟାଧିର ନିଦାନ ଖୋଜୁଁ ଖୋଜୁଁ ସେ ବି ଶେଷରେ ସେଇ ବ୍ୟାଧିର ଶୀକାର ହେଇଗଲେ !

ନମିତାର କାନମୂଳରେ ଗୋଟିଏ ଚୂର୍ଣ୍ଣକୁନ୍ତଳକୁ ସଜାଡ଼ି ମନସୁଖ ପିଲଟି ପରି କହିଲେ—ତୁମ ବିନା ମୁଁ ପାଗଳ ହେଇଯିବି ।

ମନସୁଖଙ୍କର ଏପରି କଥାରେ ନମିତାର ଗୁଣ୍ଡ ପୂରି ଉଠିଲା । ଗୋଟାଏ ବିଲାତ ଫେରନ୍ତା ଡାକ୍ତର, ତା' ଛଡ଼ା ତା'ର ଆସିଷ୍ଟାଣ୍ଟ ପ୍ରଫେସର ଯେ ତା' ପରି ଜଣେ ଝିଅ ବିଶେଷ କରି ଜଣେ ସ୍ତ୍ରୀ ପାଇଁ ଅକାତରେ ପ୍ରାଣ ଢ଼ାଳିଦେବେ ଏବଂ ତାର ପାଇଁ ପାଗଳ ହେଇଯିବେ, ଏ କଥା ଶୁଣି ନମିତାର ପ୍ରତ୍ୟେକ ଶରୀରରେ ଶତ କଦମ୍ବ ଫୁଟି ଉଠିଲା ।

ନମିତା ମନେ ମନେ ଭାବିଲା—ଶଅଲ, ଲଭ୍ ଇଜ୍ ଅଲ୍‌ୱେଜ୍ ବ୍ଲାଇଣ୍ଡ । ବ୍ଲାଇଣ୍ଡ ନ ହେଇଥିଲେ ତା'ର ହାତଟାକୁ ଏପାଖ ସେପାଖ ଧରି ନିଃସ୍ପୃହ ପରି ମନସୁଖ କାହିଁକି ସତୃଷ୍ଣ ଆଖିରେ ତାକୁ ଏପରି ଚାହିଁରହନ୍ତେ ?

ନମିତା ହସୁଥିଲା ।

ଏଟେ ବଡ଼ ଚ୍ୟାମ୍ବର; କେହି ନାହାନ୍ତି କେବଳ ଗୁଡ଼ାଏ ଟେଷ୍ଟ- ଟିଉବ୍, ଗୁଡ଼ାଏ ଫ୍ଲାସ୍କ, ଇନ୍‌ଷ୍ଟ୍ରୁମେଣ୍ଟ୍ ଅଛି । ତିନଟା ସୋଫା, ଦୁ'ଟା ଟିପୟ, ର୍ୟାକ୍, ଆଲମିରା ଅଛି । ଆହୁରି ଅଛି ଗୁଡ଼ାଏ କାଗଜ ପତ୍ର, ଏକ୍ସରେ' ପ୍ଲେଟ, ଗୁଡ଼ାଏ ବହିପତ୍ର, ଆସ୍‌ଟ୍ରେ, ପେପ୍‌ର ୱେଟ୍ । ଗାନ୍ଧୀ ଛବି, ସୁଶ୍ରୁତର ଛବି, ଚରକର ଛବି, ଆଉ କେତୋଟି ଲ୍ୟାଣ୍ଡ ସ୍କେପ୍‌ର ବହୁମୂଲ୍ୟ ଛବି । ଘରଟି ସୁନ୍ଦର, ନିଖୁଣ । ଘରଟିକୁ କେବଳ ଦେଖିଲେ ମନେହେବ ଯେ କୌଣସି ସୁରୁଚିସମ୍ପନ୍ନ କଳାକାର ଘରଟିକୁ ସଜାଡ଼ି ରଖିଯାଇଛି ।

ମନସୁଖ ଆସିଷ୍ଟାଣ୍ଟ ପ୍ରଫେସର । କଲେଜରେ ଯୋଗ ଦେଇଛନ୍ତି ବିଦେଶର ଶିକ୍ଷା ସମାପ୍ତ କରି ସର୍ଜରି ବିଭାଗରେ । ବୟସ ତିରିଶ । ଅବିବାହିତ ଯୁବକ । ସଦାବେଳେ ଭ୍ରୂଲତାକୁ ନଚାଇ ଦାନ୍ତଚିପି କଥା କହନ୍ତି । ସେ ଏକ ଅଦ୍ଭୁତ ଠାଣି । ତାଙ୍କର ଭ୍ରୂଲତାର ନୃତ୍ୟବିନ୍ୟାସ ଯେପରି ତାଙ୍କର ବ୍ୟକ୍ତିତ୍ୱର ପ୍ରଥମ ପରିଚାୟକ । ସେଥିରେ କୁଆଡ଼େ ବିଶେଷ ଶିଳ୍ପକଳା ପୂରିରହିଛି । କଥା କଥାକେ ଇଂରାଜୀ । ସଦାବେଳେ ପାଟିରେ ସିଗାର୍ । ସିଗାର୍‌ର ମିଠାକଡ଼ା ଗନ୍ଧ ତାଙ୍କର ପାଟିରୁ, ଦେହରୁ ସାର୍ଟରୁ ବାହାରି ଗୁଡ଼ାଏ ନିଶାକ୍ରାନ୍ତ ଅଥଚ ମଧୁର ଆମେଜ ସୃଷ୍ଟିକରେ । ସେଥିରେ ପୁଣି ମିଶିରହିଛି ଖାଣ୍ଟି ବିଲାତି ଅତରର କିଛି କିଛି ସୁଆସ । ଏହି ବାସ୍ନାର କଠିନ ଜାଲ ଭିତରକୁ ଯେ କୌଣସି ତରୁଣୀ ସ୍ୱତଃ ଚାଲିଯାଇ ଧରାଦେବ କିଛି ବାଛ ବିଚାର ନ ରଖି ।

ଏ ବାସ । ଯେପରି ସ୍ୱତନ୍ତ୍ର, ଯେପରି ତାଙ୍କର ନିଜସ୍ୱ ।

କେବଳ ଏହି ବାସ୍ନା ଯେଉଁଦିନ ଫାଷ୍ଟ ସର୍ଜିକାଲ ଓ୍ୱାର୍ଡ଼ର ବାରଣ୍ଡା ଭରି ପବନରେ ପହଁରି ଯାଉଥିଲା, ନମିତା ସେହି ବାରଣ୍ଡାରେ ଚାରିଦିଗକୁ ଚକିତ ଆଖିରେ ଚାହିଁରହି କହିଥିଲା—କିଏ ? କିଏ ? କିଏ ସେ ଏପରି ଲୋକ, ଯେ କି ଖାଲି ପବନରେ ତା'ର ଆସିଥିବାର ସ୍ମାରକୀ ବାସ୍ନା ରୂପେ ରଖି ଚାଲିଯାଇଛି ? ନମିତା ବାସ୍ନାକୁ ନାସାଭରି ଘ୍ରାଣ କଲା ।

ଅନନ୍ୟସାଧାରଣ ଏ ବାସ୍ନା । ଅପୂର୍ବ । ଅଦ୍ଭୁତ ।

ନମିତାର ମନେହେଲା ଏ ବାସ୍ନା ତା'ର ହୃଦୟ ଭିତରେ ପଶି ନିଆଁ ଜାଳୁଛି । ମନରେ ନିଆଁ କୁହୁଳି ଉଠୁଛି ।

କିନ୍ତୁ ତା' ପରଦିନ ଯେତେବେଳେ ନମିତା ଆବିଷ୍କାର କଲା ଯେ ସେ ଲୋକଟି କେହି ନୁହନ୍ତି, ତା'ର ଆସିଷ୍ଟାଣ୍ଟ ପ୍ରଫେସର ମନସୁଖ ଦାସ, ଯେ କି ସଦାବେଳେ ଜାଣ୍ଟ୍ ଗ୍ରୁଣ୍ଟ୍, ଯେ କି ସଦାବେଳେ ଖୁବ୍ର ଗତିରେ ପାଦ ଚାଳନା କରନ୍ତି, ଅଦ୍ଭୁତ ଫାଲସ ହେୟାର କଟିଙ୍ଗ, ଦେହରେ ସଦାବେଳେହିଁ ଡ୍ରେନ୍‌ପାଇପ ସୁଟ୍ ଆଉ ପାଦରେ ପଏଣ୍ଟେଡ଼ ସୁ, ହୁଏତ କୌଣସି ଲଣ୍ଡନବାସୀ ଏଠି ନାଗରିକତ୍ୱ ଲାଭ କରି ଭାରତୀୟ ହୋଇ ଯାଇଛନ୍ତି, ସେହିଦିନ ସେ ମନସୁଖଙ୍କୁ ଆବିଷ୍କାର କରୁ କରୁ ମନସୁଖଙ୍କର ସ୍ମିତରେ ଧରାଦେଇଥିଲା ।

ମନସୁଖ ବି କିଛି ଦ୍ୱିଧା କରି ନ ଥିଲେ । ସେ କେବଳ ଭାବୁଥିଲେ ଯେ ଜୀବନରେ ସେ ବହୁତ ନାରୀ ସଙ୍ଗସୁଖ ଲାଭ କରିଛନ୍ତି, ବହୁ ନାରୀ ଅଧରାମୃତ ପାନ କରିଛନ୍ତି, ଜୀବନର ସୁରା ପାତ୍ରରେ ବହୁ ନାୟିକାଙ୍କର ପ୍ରତିଛବି ଦେଖୁଛନ୍ତି, କିନ୍ତୁ ଏ ନମିତା ସେମାନଙ୍କ ଭିତରେ ଜଣେ ନୁହେଁ ତାଙ୍କଠାରୁ ଅଧିକ କିଛି । ପୃଥିବୀର ସବୁ ପ୍ରାନ୍ତର ବସନ୍ତ, ସବୁ ଉପବନର ଫୁଲକଳିକା, ସବୁ ନଦୀନିର୍ଝରିଣୀର ଗୀତି ମୁଖରତା, ସ୍ୱର୍ଣ୍ଣ ପୁଷ୍ପଲତା ଯେପରି ଜମାଟ ବାନ୍ଧି ଯାଇଛନ୍ତି, ଏକାଠି ହୋଇ ସନ୍ନଦ୍ଧ ହୋଇ ନମିତାର ଯୌବନରେ । ସେ ଯୌବନ ଯେପରି ସ୍ୱଳ୍ପ ସ୍କାର୍ଟ ଭିତରେ ଆର୍ତ୍ତନାଦ କରି ଉଠୁଛି ମାଂସର ଉଷ୍ଣତାରେ ଜର୍ଜ୍ଜରିତ ହୋଇ ମନସୁଖଙ୍କୁ ଆଶା କରି, ମନସୁଖଙ୍କୁ ନିକଟରେ ପାଇ ନିଜର ବହୁଯୁଗର ତୃଷା ମେଣ୍ଟାଇବା ପାଇଁ ।

ମନସୁଖ ତାଙ୍କର ସେଇ ନିଟୋଳା ଚ୍ୟାମ୍ବରର ସୁନୀଳ ବଜୁଳ ଆଲୋକ ତଳେ ନିଷ୍ପଲକ ଆଖିରେ ନମିତାକୁ ଚାହିଁ ରହିଥିଲେ ।

ନମିତାର ତନୁମା ଏକ ଶ୍ୟାମଳ ଲତିକା ପରି ସୁନୀଳ ଢଳୁଳ ଝରଣାରେ ଝଲସି ଉଠୁଛି । ସେ ବିଦେଶରେ ଶ୍ୱେତାଙ୍ଗୀ ତରୁଣୀର ଶ୍ୱେତମର୍ମର ରୂପେ ଦେଖିଛନ୍ତି, କିନ୍ତୁ ସେ ଅନୁଭବ କରିଛନ୍ତି ସେସବୁ ଶେଥା ରୂପ ଯେପରି ନିର୍ଜୀବ ପ୍ରାଣହୀନ । କିନ୍ତୁ ନମିତାର ରୂପବନଶ୍ରୀର ଅପର୍ଯ୍ୟାପ୍ତ ମାଧୁରିମା ଯେପରି ମନସୁଖଙ୍କର ବିଲୁବ୍ଧ ଚକ୍ଷୁରେ ଗୁଡ଼ାଏ ମାୟାଞ୍ଜନ ବୋଳି ଦେଇଛି । ମନସୁଖଙ୍କ ଚକ୍ଷୁରେ କେବଳ ନମିତାର ବନ୍ଧୁର ବକ୍ଷର ମାରବତା, ତା'ର କ୍ଷୀଣକଟିର ଅସହାୟତା, ତା'ର ନିତମ୍ବର ସ୍ଫୀତି ଆଉ ତା' ଛଡ଼ା କିଛି ନୁହେଁ—କିଛି ନୁହେଁ ଚିନ୍ତାହିଁ ନାହିଁ ତାଙ୍କର ମୁଣ୍ଡରେ ।

ନମିତା ଲାଜେଇ କହିଲା—ମୋ ମୁହଁରେ କ'ଣ ଦେଖୁଛନ୍ତି ସାର୍ ?

ସାର୍ ? ହୋ—ହୋ—ହସି ଉଠିଲେ ମନସୁଖ । କାନ୍ଧକୁ ହଲେଇ କହିଲେ, ତୁମର ସାର୍ ଡାକ ଅଜଯାଏ ଗଲାନି ମିତା ? ପ୍ରକୃତରେ ଆମଦେଶର ଝିଅଗୁଡ଼ା ଯେତେ ସ୍ମାର୍ଟ ହୁଅନ୍ତୁ ପଛେ ଲଜ୍ଜା ଯେପରି ତାଙ୍କର ଅସ୍ଥିମଜ୍ଜାଗତ । ତୁମେ ହୁଏତ ଏ ସାର୍ ବଦଳରେ ଅନ୍ୟକିଛି, ମାନେ—ମୁଁ ତୁମକୁ ବୁଝାଇଦେବିନି—ତମେ ବୁଝିପାରୁଥିବ ଡାକ ପାରିଥାନ୍ତ ।

ନମିତା କ'ଣ ସେ ଡାକନ୍ତା ? କ'ଣ ସେ ସେ ଆଉ କହୁଛି ଡାକନ୍ତା ?

ନମିତା କଲେଜ ଡ୍ରାମାରେ ଜଏନ୍ କରିଛି, ନମିତା କଲେଜ ସ୍ପୋର୍ଟସ୍‌ରେ ବି ପାର୍ଟିସିପେଟ କରିଛି । ନମିତା ଏକ ନିଖୁଣ ଗ୍ଲାମର୍ ଗାର୍ଲ୍ । ଯୁଅଙ୍କୁ ଖାତିର କରେନି, କୌଣସି ଯୁବକର ସୌନ୍ଦର୍ଯ୍ୟ ତାକୁ ପାଗଳ କରେନି । କିନ୍ତୁ ଏଇ ମନସୁଖଙ୍କର ସୌନ୍ଦର୍ଯ୍ୟ ପ୍ଲସ୍ ବ୍ୟକ୍ତିତ୍ୱ ତା'ର ସମସ୍ତ ସ୍ୱପ୍ନିଳ ପ୍ରଗଲ୍‌ଭତାକୁ କାହିଁ କୁଆଡ଼େ ଠେଲି ଠାଲି ବାହାର କରିଦେଇଛି ।

ସେମାନେ ଆଉ କେତେଟା ମାସ ଗଲେ ବିବାହ କରିବେ । ତଥାପି । ନମିତା ନିଜ ଗୁଡ଼ି ପାରୁନି ।

ମନସୁଖ କହିଲେ—ତୁମେ କୌଣସି କିସମର ଝିଅ ହୁଅ ବା ଏସ୍. ଡି. ଓ. କିମ୍ବା କଲେକ୍ଟରଙ୍କ ଝିଅ ହୁଅ ସେଥିରେ ମୋର କିଛି ଭାବିତ ହେବାର ନାହିଁ, କାରଣ ତୁମେହିଁ ତୁମର ସ୍ୱୟଂ ପରିଚୟ ଏବଂ ଏଇଥିପାଇଁ ମୁଁ ତୁମକୁ ବିବାହ କରିବାକୁ ରାଜି ହେଉଛି ।

ନମିତା ମନ ସନ୍ତୋଷରେ ପୂରି ଉଠିଥିଲା । ଯାହାହେଉ—ସବୁ ରିଉମରର ପୂର୍ଣ୍ଣସମାପ୍ତି ଏଥର ପଡ଼ିଲା । ସବୁ ସ୍କାଣ୍ଡାଲ୍, ସବୁ ଗସିପିଙ୍ଗ୍‌ର ଏଥର ଯବନିକା ପଡ଼ିଲା ।

ନମିତା କହିଲା— ଏଇ ବିବାହଟା, ମାନେ ଆପଣଙ୍କୁ ପାଇବା··· ।

ଆପଣ ନୁହେଁ, କୁହ ତମେ ।

ହଁ ତୁମକୁ ପାଇବାଟା ମୋ ଜୀବନରେ ସବୁଠାରୁ ବଡ଼ ସଫଳତା ।

ଆଚ୍ଛା, ଏ ବିବାହ ପ୍ରସଙ୍ଗ ଯେତେବେଳେ ବୋଉ ବାପା ତୁମର ଶୁଣିଲେ କ'ଣ କହିଲେ ?

କ'ଣ କହିଥାନ୍ତେ ବୋଲି ଆଶା କରୁଛ ଯେ ? କ'ଣ ମନା କରି ଦେଇଥାନ୍ତେ ? ଏଥିରେ ନାସ୍ତିବାଚକ ଉତ୍ତରର ତ କୌଣସି ସୂଚନା ନଥିଲା, କିନ୍ତୁ ସେମାନେ, ବିଶେଷ କରି, ବୋଉ ଭାରି ଖୁସି ହୋଇ ଯାଇଥିଲା ।

ମୋ ବୋଉ ବି ତୁମକୁ ଯେଉଁଦିନ ଆମ ଘରେ ଦେଖିଥିଲା, ସେହିଦିନ ମତେ ରାତିରେ ପଚାରିଥିଲା—ମନ ! ଏଇ ନମିତାକୁ ଯଦି ଏ ଘରକୁ ବୋହୂ କରି ଆଣି ହୁଅନ୍ତା··· !

ମୁଁ ହସିଥିଲି, ଏବଂ ନିଷ୍ଠାରେ ମନକୁ ମନ କହିଥିଲି—ଭୁ ଏ ଘରକୁ ତାକୁ ବୋହୂ କରି ଆଣିବୁ ବୋଲି ପିତା କହୁଛନ୍ତି ବୋଉ, କିନ୍ତୁ ମୁଁ ତ ତାକୁ ଆଜକୁ ବହୁଦିନ ହେଲା, ମାନେ ଯେଉଁଦିନ ପ୍ରଥମ ଦେଖିଲି, ସେହି ଦିନଠୁଁ ବୋହୂ ବୋଲି ମନେ ମନେ ଧରି ନେଇଛି ।

ମନସୁଖ ! ନମିତା ମନସୁଖଙ୍କର ଝୁଲିପଡ଼ିଥିବା ଟାଏକୁ ଭିଡ଼ିଦେଲା ।

କିନ୍ତୁ ଏଇ ପ୍ରାଞ୍ଜି ଫାଞ୍ଜି ଅଲ୍ ରବିସ୍ । ମୁଁ ତ ଏସବୁକୁ ବିଶ୍ୱାସ କରେନା ମିତା । କୌଣସି ନିର୍ଦ୍ଦିଷ୍ଟ ଦିନରେ ଗଣକର କହିବାନୁଯାୟୀ ଆମେ ବିବାହ କଲେ ଯେ ଆମର ବୈବାହିକ ଜୀବନ ସୁଖମୟ ହୋଇ ଉଠିବ ଏବଂ ଅନ୍ୟଦିନ କଲେ ଯେ ଆମେ ଯାବଜ୍ଜୀବନ ଅଶାନ୍ତିର ସମ୍ମୁଖୀନ ହେବା, ଏହା ପଛରେ କୌଣସି ବଳିଷ୍ଠ ଯୁକ୍ତି ନାହିଁ ! କାରଣ ମନରେ ଦୃଢ଼ତା ଯେଉଁଠି, ସେଠି ନିର୍ଦ୍ଦିଷ୍ଟ ତିଥିର ଭଲ-ମନ୍ଦ ବିଶେଷ ଲାଗୁ ହୁଏନା । କିନ୍ତୁ ଶେଷରେ ମୁଁ ସେମାନଙ୍କର କଥା ମାନିଲି ମିତା । ମୋର ବୋଉ ଆଉ ତୁମର ବାପା ମା'ଙ୍କର ମତରେ ବାଧା ଦେବାକୁ କାହିଁକି ମୋର ଇଚ୍ଛା ହେଲାନାହିଁ ।

ନମିତା କହିଲା—ମୁଁ ବି ଏସବୁ କଞ୍ଜରଭେସନ୍‌କୁ ମାନେନା । କିନ୍ତୁ କ'ଣ କରିବା ? ସେମାନେ ବୁଢ଼ା ବୁଢ଼ୀ ହୋଇଗଲେଣି, ତାଙ୍କ କଥା ନ ମାନି ଯଦି ଆମେ ବିବାହ କରିଥା'ନ୍ତେ ତେବେ ସେମାନେ ଦୁଃଖିତ ହୋଇଥା'ନ୍ତେ ।

ଏ କଞ୍ଜରଭେସନ୍ ପାଖରେ ମୁଁ ବାଧ୍ୟ ହୋଇ ମୁଣ୍ଡ ନୁଆଁଇ ଦେଇଛି ଏ କଥା ନୁହେଁ ମିତା ? ମୁଁ କେବଳ ତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏଥିରେ ରାଜି ହୋଇଯାଇଛି । ପ୍ରକାରାନ୍ତରେ କହିବାକୁ ଗଲେ ଏକ ରକମର ଦୟା ।

ନମିତା ହସି ଉଠିଲା । ମନସୁଖ ମଧ୍ୟ ହସି ଉଠିଲେ ।

ନମିତା କହିଲା—ମୁଁ ତୁମ ଘରକୁ ଅନେକଥର ଯାଇଛି ମନସୁଖ ! ବହୁତ ସମୟ କଟାଇ ଦେଇଛି । ତୁମ ଘରେ ତ କେହି ନାହାନ୍ତି କେବଳ ବୋଉ । କିନ୍ତୁ ଆମ ଘରେ ସମସ୍ତେ ତୁମକୁ ଦେଖିବାକୁ ଲାଳାୟିତ । କେହି

ଦେଖିନାହାନ୍ତି କେବଳ ବାପାଙ୍କ ଛଡ଼ା । ତୁମକୁ ହିଁ ବହୁତଥର ଏହାଭିତରେ କହିସାରିଲିଣି, ଅଥଚ ବଭିନ୍ନ କାମର ଆଳ ଦେଖାଇ ତମେ ଯାଇ ନାହଁ ।

ତମ ଘରକୁ ଯାଇପାରି ନାହିଁ, ସେଥିପାଇଁ ମୁଁ ଦୁଃଖିତ ମିତା ! ଅନେକଥର ଯିବାକୁ ଇଚ୍ଛା କରିଛି, କିନ୍ତୁ —

ବିଶେଷ ସମ୍ମାନାସ୍ପଦ ବ୍ୟକ୍ତି ବୋଲି ଯାଇ ନାହଁ ?

ନମିତାର ଏ କଥା ପୂରଣ ଶୁଣି ମନସୁଖ ହୋ' ହୋ' ହସିଲେ । କହିଲେ, ନା, ସେକଥା ନୁହେଁ ମିତା, ମାନେ—

ମୁଁ ଜାଣେ ସବୁ । ତୁମେ ଭାବଛ ମୋ ସାଥିରେ ତୁମର ହିଁ ସମ୍ପର୍କ କେନ୍ଦ୍ରୀଭୂତ । ଏଥିପାଇଁ ତୁମେ ଆମ ଘର ସହିତ ସମ୍ପର୍କ ରଖିବାକୁ ଆଗ୍ରହୀ ନୁହଁ ।

ତୁମେ ସବୁ ବାଜେକଥା କହୁଛ ମିତା !

ନମିତା ମୁହଁରେ ଅଭିମାନର ଛାୟା ।

ତୁମେ ରାଗିଲ କି ମିତା ?

ନା ରାଗିବି କାହିଁକି ?

ଏଇ ଦେଖ, ତୁମେ ଏଇ ସାମାନ୍ୟ କଥାରେ ରାଗି ବସିଛ । କିନ୍ତୁ ତୁମର ଏଇ ଚପଳ ଅଭିମାନ ତୁମକୁ ବିଶେଷ ସୁନ୍ଦର କରି ତୋଳୁଛି ମିତା ! ତୁମେ ଯଦି ତୁମର ଏଇ ମୁହଁକୁ ନିଜେ ଦେଖିପାରନ୍ତ··· ।

ନମିତାକୁ ବାହୁପାଶରେ ବାନ୍ଧିରଖି ମନସୁଖ କହିଲେ— ବିବାହ ଯେତେବେଳେ ଠିକ୍ ହୋଇଗଲାଣି ସେତେବେଳେ ତୁମଘରକୁ ଯିବା ନିଷ୍ପ୍ରୟୋଜନ ମିତା । କାରଣ ଏପରି ଯିବାରେ ମୋର ହୁଏତ···

ମନସୁଖ ହଠାତ୍ କଥା ବଦଳେଇ କହିଲେ—ମୁଁ କାଲି ନିଶ୍ଚୟ ତୁମ ଘରକୁ ଯିବି ମିତା— ନିଶ୍ଚୟ ।

ସୁବୋଧ ଓ. ଏ. ଏସ୍. ଦେବେ, ସୁବୋଧ ଡେପୁଟି ହେବେ, ସୁବୋଧ ଦଶଜଣରେ ଗଣାହେବେ । ତାଙ୍କର ବାପାଙ୍କ ଶୁଖିଲା ମୁହଁରେ ହସ ଖେଳି ଉଠିବ ।

କିନ୍ତୁ ସୁବୋଧ ସେ କିପରି ଓ. ଏ. ଏସ୍. ଦେବେ ?

ଛନ୍ଦନନ ହେଲା ଭାବି ଭାବି କିଛି କୂଳ କିନାରା ମିଳୁ ନାହିଁ ।

ରଘୁ ବାରିପାଖ ପାହାଚ ଉପରେ ବସି ଭାବୁଥିଲା ।

କିଏ ନ ଚାହେଁ ତା'ର ପ୍ରିୟଜନର ବଢ଼ନ୍ତି ? ଏ ସୁବୋଧ ଯଦି ପ୍ରକୃତରେ ଡେପୁଟିଟିଏ ହୋଇପାରନ୍ତେ !

ଆଃ... ! ରଘୁ ଆତ୍ମତୃପ୍ତିରେ କହିଉଠିଲା ।

ରଘୁର ମନେପଡ଼ିଲା କେତେ କଥା ।

ସୁବୋଧଙ୍କୁ ଯଦି ସେ ବିବାହ କରି ପାରନ୍ତା ? ବାପ କିମ୍ବା କୋଉ ଯଦି ଏଇ ସୁବୋଧ ସାଥିରେ ତା'ର ବିବାହ ପ୍ରସଙ୍ଗ ଉତ୍ଥାପନ କରନ୍ତେ ?

କିନ୍ତୁ—କିନ୍ତୁ—? ବିବାହ ? ଆରେ, ସେ ଏ କ'ଣ ଭାବୁଛି ?

ସୁବୋଧ ଡେପୁଟି ହେବେ ।

ସୁବୋଧ ସେ କିପରି ଡେପୁଟି ହେବେ ?

ଗୋଟାଏ ଉତ୍ସାହ ପୁରୁଷ, ଗୋଟାଏ ସଫଳ ଆଶା-ପୁରୁଷ ସେ ଆଜ ଧକ୍କା ମାରି ବସିପଡ଼ୁଛି, ଆଗକୁ ଯିବାକୁ ବାଟ ପାଇ ସୁଦ୍ଧା ଯାଇପାରୁ ନାହିଁ । ସେ କ'ଣ ସକଳ ବାଧାବିଘ୍ନ ଅତିକ୍ରମ କରି ଆଗକୁ ଯାଇପାରିବ ନାହିଁ ?

ରଘୁର ଆଖି ଆଗରେ ନାଚି ଉଠିଲା ସୁବୋଧର ଛାଇ । ଗୋଟିଏ ମଳିନ ଯୁବକ, ଯାହାର ମୁହଁରେ ଖୋଷ୍ଟ ଖୋଷ୍ଟ ଦାଢ଼ି, ଯାହାର ଦେହରେ ଗୋଟାଏ ରଫୁକରା ସାର୍ଟ, ଆଉ ଛିଣ୍ଡା ପ୍ୟାଣ୍ଟ । ସେ ମୁଣ୍ଡବାଳ ପ୍ରତି ଆଦୌ ସଚେତନ ନୁହେଁ, ସଦାବେଳେ ଅଣ୍ଡୁଆଚଣ୍ଡୁଆ, ଦୁ'ଆଣ୍ଠୁର ସନ୍ଧିରେ ମୁହଁକୁ ପୂରାଇ ଥକ୍‌କାହୋଇ ବସିପଡ଼ିଛି କ୍ଳାନ୍ତିରେ ନିରାଶାରେ, ଶୂନ୍ୟ ଆଖିରେ ଅନ୍ଧକାରମୟ ଭବିଷ୍ୟତକୁ ଚାହିଁ ।

ଝୁରିଘନ ତଳେ ସୁବୋଧ ବସିଥିଲା । ତା'ର ବାରଣ୍ଡା ଉପରେ ଠିକ୍ ଏହିପରି ତଳକୁ ମୁହଁ ପୋତି ବସିଥିଲା ।

ବଗିଚାରେ ବାଇଗଣ ଗଛରୁ ଘାସ ବାଛୁ ବାଛୁ ରଘୁର ଆଖି ପଡ଼ିଥିଲା ସୁବୋଧ ଉପରେ । ସେ ସୁବୋଧକୁ ଭଲଭାବେ ଚାହିଁଲା । ସେପରି ଗୁଡ଼ାଏ ହତାଶା ସୁବୋଧକୁ ଗ୍ରାସ କରିଛି । ରଘୁ ଧୀରେ ଧୀରେ କାରଣ ବୁଝିବାକୁ ସୁବୋଧ ପାଖକୁ ଯାଇଥିଲା । ଘର ଭିତରକୁ ନ ଯାଇ ଘରର ସିଜୁ ବୁଦା ପାଖରେ କହିଲା— ସୁବୋଧବାବୁ !

ସୁବୋଧବାବୁ !

କିଏ ରଘୁ ! ଆରେ ତମେ ସେ ! ସୁବୋଧ ବ୍ୟସ୍ତ ହୋଇଉଠିଲା । କହିଲା ବାହାରେ କାହିଁକି ଠିଆହୋଇଛ ରଘୁ ? ଭିତରକୁ ଆସ ।

ସୁବୋଧର କଥାରେ ରଘୁ ସେଇ ଭଙ୍ଗା ବାଉଁଶ ତାଟିର ଫାଟକଟିକୁ ଖୋଲି ଭିତରକୁ ଗଲା ।

ସୁବୋଧ କେମିତି ଏକ ବାଧ୍ୟବାଧକତାର ହସ ହସି କହିଲା— ତୁମର ବସିବା ପାଇଁ ଚଉକି ଏ ଘରେ ନାହିଁ ରଘୁ । ମୁଁ ତୁମକୁ ଚଉକି କୋଉଠୁ ଆଣି ଦେବି ? ତମେ ଏ ପିଢ଼ାଟି ଉପରେ ବସ । କିଛି ମନେ କରିବନି ଯେ ମୁଁ ତୁମକୁ ପିଢ଼ାଟିଏ ଦେଉଛି ।

ସୁବୋଧବାବୁ, ଆପଣ ଏପରି କଅଣ କହୁଛନ୍ତି ?

ସେତେ ଯାହାହେଲେ ବି ତମେ ଆମ ଅଫିସରଙ୍କ ଝିଅ ରଘୁ ।

ସୁବୋଧବାବୁ ! ମୁଁ କଅଣ ଏୟା ଶୁଣିବା ପାଇଁ ଏଠାକୁ ଆସିଥିଲି ?

ସୁବୋଧ ମ୍ଳାନ ହସିଲା, ଏବଂ କହିଲା—ମୁଁ ଓ. ଏ. ଏସ୍. ପରୀକ୍ଷା ହେଉନ ରଞ୍ଜୁ ।

କ'ଣ କହିଲେ ? ରଞ୍ଜୁକୁ ଯେପରି ସୁବୋଧର କଥା ଆଦୌ ଶୁଭିଲା ନାହିଁ ।

ପାଠ ପଢ଼ିବା ଶଳାଏ ମନୋବୃତ୍ତିର ଏକ ନଶା ରଞ୍ଜୁ । ବାପର ଝାଳବୁହା କଷ୍ଟୋପାର୍ଜିତ ଟଙ୍କାରେ, ତାକୁ ଡିଗରକନା ପିନ୍ଧାଇ, ତା'ର ପେଟରୁ ଆହାର କାଟି ତା'ର ଯାବତୀୟ ସୁଖ-ସ୍ୱାଚ୍ଛନ୍ଦ୍ୟରେ ବାଧା ଆଣି ତାକୁ ଭଜାଇ କରି ମତେ ପାଠ ପଢ଼ିବାକୁ ଭଲଲାଗୁନ ରଞ୍ଜୁ । ମୋ ବାପା ମୋ ପାଇଁ ରୋଷାଇ କରିବ, ମୋ ପାଇଁ ଦିନ ନାହିଁ ରାତି ନାହିଁ ଟୁଲ୍ କରିବ—କଷ୍ଟ କରିବ; ଅଥଚ ମୁଁ ମହାଆରାମରେ ଘରର ରହି ତଳେ ପାଠ ପଢ଼ିବି ?

ରଞ୍ଜୁ କହିଲା—ପଢ଼ି ପଢ଼ି ଏବେବାଟ ଆସିଲ, ଆଜ କେଇଟା ମାସ ଗଲେ ପରୀକ୍ଷା ଦେଲେ ଓ. ଏ. ଏସ୍. ହେବ, ଅଥଚ ଠିକ୍ ଶେଷ ବେଳକୁ କହୁଛ ଯେ, ନା, ମୁଁ ପଢ଼ିବିନି । ଆଶ୍ଚର୍ଯ୍ୟ !

ସୁବୋଧ କହିଲା—ଦାରିଦ୍ର୍ୟ ଯେଉଁଠି ଦାରୁଣ ଭାବରେ ନିରଙ୍କୁଶ ହୁଙ୍କା ପିଟା ଶାସନ ଚଳାଇଛି, ସେଠି ଏଇ ପାଠ !

ରଞ୍ଜୁ ଗମ୍ଭୀର ଭାବେ କହିଲା—ଫର୍ମ କେବେ ଫିଲ୍ଅପ୍ ହେବ ? ଫିଜ୍ କେବେ ଦିଆଯିବ ?

ସୁବୋଧ କିଛି କହିଲାନି ।

ମୁଁ ପଚାରୁଛି ସୁବୋଧବାବୁ, ଫିଜ୍ କେବେ ଦିଆହେବ ?

ଆଉ ପାଞ୍ଚ ଛଅ ଦିନ ଅଛି ।

ତେବେ ଦେଇନାହାନ୍ତି ଯେ ?

ସୁବୋଧ ଠୋ' ଠୋ' ହସିବାକୁ ଲାଗିଲା । ଆଶ୍ଚର୍ଯ୍ୟ ସେ ହସ ! ସେ ହସ ବୋଧହୁଏ ଭୀଷଣ ନୈରାଶ୍ୟର ହସ । ସେ ହସରେ ଯେପରି ସେ ତା'ର ଅବଚେତନ ମନର ଯାବତୀୟ ଦୁଃଖ, ବେଦନା, ଅସହାୟତାକୁ ଫିଟାଇ ଦେଉଛି । ସେ ହସି ହସି ହଠାତ୍ ଚୁପ୍ ହୋଇ ବଡ଼ ପାଟିରେ କହିଲା—ତୁମେ କ'ଣ ଜାଣିନ ରଞ୍ଜୁ; ମୁଁ ଗରିବ ? ମୁଁ ଗୋଟାଏ ଗରିବ

ଡ୍ରାଇଭରର ପୁଅ ?

ସୁବୋଧ ବାବୁ !

ମୋ ପାଖରେ ଫିଜ୍ ଦେବା ପାଇଁ ଆହୁରି ଷାଠିଏ ସତୁରି ଟଙ୍କା ବାକି ରହିଛି । ସବୁଆଡ଼େ ଏଇ ଟଙ୍କା ମାଗି ମାଗି ନିରାଶ ହୋଇ ଫେରିଛି । ମତେ କିଏ ଟଙ୍କା ଦେବ ? କି ଭରସାରେ ବା ଦେବ ? ଭେକ ଥିଲେ ସିନା ଭିକ । ବାପାଙ୍କୁ ତ ଏ ବିଷୟରେ ବି କହିନି । ବାପାଙ୍କର ଝାଳ ବୁହା ଟଙ୍କା ଖର୍ଚ୍ଚ କରିବାକୁ ମତେ କାହିଁକି ଭୀଷଣ କଷ୍ଟ ଲାଗେ ।

ରାଜୁ ନିର୍ବାକ ନୟନରେ ଚାହିଁ ରହିଥିଲା ସୁବୋଧକୁ । କିଛିକ୍ଷଣ ପରେ କହିଲା—କିନ୍ତୁ ତମେ ପରୀକ୍ଷା ଦେଲେ ଯେ ନିଶ୍ଚୟ ପୋଜିସନ୍ ରଖି ପାସ୍ କରିବ ।

ସେ ଆଶା ଆଉ କାହିଁକି କରୁଛ ରାଜୁ । ମୁଁ ବି. ଏ.ରେ ଡିଷ୍ଟିଂକସନ୍ ପାଇଛି, ଇଂରେଜୀ ଅନର୍ସରେ ଫାଷ୍ଟ ହୋଇଛି । କିନ୍ତୁ ସେ ସବୁ କେବଳ କିରାଣିଗିରି କରିବା ପାଇଁ, ମାଷ୍ଟରୀ କରିବା ପାଇଁ । ତୁମେ କ'ଣ ସେଦିନ ଶୁଣିନ ରାଜୁ, ଯେଉଁଦିନ ତୁମ ବୋଉ ଚା ପାର୍ଟିରେ ମତେ କହିଲେ—କାହିଁ ଡେପୁଟୀ କଲେକ୍ଟରର ଝିଅ କାହିଁ ଡ୍ରାଇଭରର ପୁଅ ସୁବୋଧ !

ବାପା ତ କିନ୍ତୁ ଆପଣଙ୍କଠାରେ ବହୁତ ଆଶା କରନ୍ତି ।

ସେଇଟା ହୁଏତ ତୁମ ବାପାଙ୍କର ଉଦାରତା ।

ଆପଣଙ୍କୁ ନିଶ୍ଚୟ ପରୀକ୍ଷା ଦବାକୁ ପଡ଼ିବ ସୁବୋଧବାବୁ । ଟଙ୍କା ନମିଳିଲେ ନାହିଁ ମୁଁ ଟଙ୍କା ଦେବି ।

ତୁମେ ଟଙ୍କା ଦବ ?

ହଁ ମୁଁ ଟଙ୍କା ଦେବି !

କିନ୍ତୁ, ତମେ କେଉଁଠୁ ଟଙ୍କା ପାଇବ ରାଜୁ ?

ମୁଁ ସିନା ଟଙ୍କା ପାଇବିନି, ହେଲେ ମୋର ସୁନା ଚେନଟା ତ ଅଛି ।

ସୁବୋଧ ଆତଙ୍କିତ ଆଖିରେ ଚାହିଁଲା । ରାଜୁର ବେକତଳେ ଯେଉଁଠି ତା'ର ସେଇ ବତୁଲ ଜୁଡ଼ାଟା ରହିଛି, ସେଇଠୁ ଅତି ସରୁ ଚେନ୍-ଟିଏ ବାହାରି ଆସି ତା'ର ବ୍ଲାଉଜ୍ ଭିତରେ ପଶି ଯାଇଛି ।

ସୁବୋଧ ପାଟିକରି କହି ଉଠିଲା—ନା, ନା ଗନ୍ନୁ, ତା' ହୋଇ ପାରେନା । କଦାପି ହୋଇପାରେନା ।

ସୁବୋଧବାବୁ ! ମୁଁ ଆପଣଙ୍କୁ ଚେନ୍‌ଟା ଦାନ କରୁନି ସୁବୋଧ-ବାବୁ । ଏହା ମୋର ଦୟା ନୁହେଁ, କିମ୍ବା ଏପରି ଦାନରେ ମୋର କିଛି ଅହଙ୍କାର ବି ନାହିଁ । ଏହା ମୋର କର୍ତ୍ତବ୍ୟ ।

ସୁବୋଧ ଆଶ୍ଚର୍ଯ୍ୟ ହୋଇ କହିଲା—କର୍ତ୍ତବ୍ୟ ?

କର୍ତ୍ତବ୍ୟ ବି ନୁହେଁ ସୁବୋଧ ବାବୁ । ମୁଁ ଭୁଲ କହୁଛି । ଏଇଟା ମୋର ଆପଣଙ୍କଠାରେ ଗୋଟାଏ ବଡ଼ ଆଶା ।

ତୁମେ କ'ଣ କହୁଛ ଗନ୍ନୁ ?

ଆଜି ଯିନା ଚେନ୍‌ଟାଏ ଦଉଛି, ହେଲେ ଭବିଷ୍ୟତରେ ଆପଣଙ୍କ-ଠାରୁ ତ ହାର ଗୋଟାଏ ପାଇବି । ବଡ଼ ହାରଟିଏ । ସୁନ୍ଦର—ପଥର ବସା ହାର । ଏ ଚେନ୍‌ଟାରୁ ସେ ହାରଟା ମୋ ବେକକୁ ଖୁବ୍ ସୁନ୍ଦର ଦିଶିବ । ଆପଣ ନିଜେ ନିଜ ହାତରେ ମୋ ବେକରେ ପିନ୍ଧାଇ ଦେବେ । ଗନ୍ନୁ ତା'ର ଜ୍ଞାନ ହରାଇ ଭାବୀ ଦିନର ଶୁଭ ମୁହୂର୍ତ୍ତକୁ ଆଖିଆଗରେ ଦେଖିଲା ପରି ଏକା ନିଃଶ୍ୱାସରେ କହି ଗାଇ ଯାଉଥିଲା ।

ତା' ମାନେ—ମାନେ—

ହିଁ, ସୁବୋଧବାବୁ, ଆପଣ ଯାହା ଭାବୁଛନ୍ତି ସେଯା—ଗନ୍ନୁ ସୁବୋଧକୁ କହିବାକୁ ନ ଦେଇ କହିଉଠିଲା । ଏଇ ପଦକ କଥାରେ ଯେପରି ଗନ୍ନୁ ବହୁତ କଥା ରହସ୍ୟରଖି ସୁବୋଧକୁ ବୁଝିବା ପାଇଁ ରଖି ଦେଇଥିଲା ।

କିନ୍ତୁ ଭବିଷ୍ୟତରେ ତୁମକୁ ଚେନ୍ ବଦଳରେ ହାରଟିଏ ଦେବି ବୋଲି ଆଜି ଯେ ତୁମ ବେକକୁ ଖାଲି କରିବ, ସେ କଥା ମୁଁ ସହିବିନି ଗନ୍ନୁ । ସୁବୋଧ କ'ଣ ଏତେ ଅବିବେକୀ ଯେ, ସେ ଯାହାକୁ ଏ ଦୁନିଆରେ ସମସ୍ତଙ୍କଠାରୁ ଅଧିକ ଭଲପାଏ, ତାର ଚେନ୍ ବନ୍ଧାକରି ପରୀକ୍ଷା ଦେବ ?

ନା···ନା···ନା··· !

ସୁବୋଧର ହାତ ନିର୍ଜୀବ ହୋଇ ଯାଇଥିଲା । ସେ ଗନ୍ନୁଠାରୁ ଚେନ୍‌ଟା ଆଣିପାରିଲାନି ।

କହିଲି—ତମେ ଫେରିଯାଅ ଗଜୁ ! ଫେରିଯାଅ । ମୁଁ କଦାପି ତୁମ ବେକକୁ ଲଙ୍ଗଳା କରି ପରୀକ୍ଷା ଦେବିନି ।

ଗଜୁ ନିରୁତ୍ସାହିତ ହେଲିନାହିଁ । କେବଳ ହସିଲି ।

ଧୀରେ ଧୀରେ ବାହାରକୁ ପାଦ କାଢ଼ି କହିଲି—ମୁଁ ଯାଉଛି ସୁବୋଧବାବୁ । ଫେର୍ ଆସିବି । କିନ୍ତୁ ହେଇଟି ମନେରଖ, ତୁମକୁ ମୋ' ରାଣ । ପଢ଼ାପଢ଼ି କରିବ । ଖୁବ୍ ମନଦେଇ ପଢ଼ାପଢ଼ି କରିବ ।

ଗଜୁ ଏ ସବୁ ତମେ କ'ଣ କହୁଛ ? ପଢ଼ାପଢ଼ି କରିବ ?

ହଁ ! ମୁଁ କିଛି ବୁଝେନା ସୁବୋଧବାବୁ । ମୁଁ ବୁଝେ କେବଳ ତମେ ହେବ ଡେପୁଟି ! ଡେପୁଟି !

ଗଜୁ ସୁବୋଧ ପାଖରୁ ଚାଲି ଆସିଲି ।

ସୁବୋଧ ପିନା ବନ୍ଧୀ କଲାନି ଚେନ୍ ଗଜୁ ପାଇଁ । କିନ୍ତୁ ଗଜୁ ସୁବୋଧ ପାଇଁ ଚେନ୍‌ଟାକୁ ବନ୍ଧୀ କରିଦେଲା ନିଜେ ଦୋକାନକୁ ଯାଇ ।

ସୁବୋଧ ପାଇଁ ଚେନ୍ ବନ୍ଧୀକରିବାରେ ତା'ର ବଡ଼ ଆନନ୍ଦ । ତା'ର ମନେହେଉଥିଲା ସେ ଖୁବ୍ ଗୋଟାଏ ବଡ଼ କାମ କରିଦେଇଛି । ଏଥିପାଇଁ ସେ ଆନନ୍ଦରେ ଫୁଲି ଉଠୁଥିଲା । ନିଜର ପ୍ରିୟଜନ ପାଇଁ ସେ ଆଜି କିଛି କରିପାରିଛି, ସେଥିପାଇଁ ତା'ର ବାଳିକା ମନ କୁତୁକ ଉଠୁଥିଲା ।

ବାରିପାଖ ପାହାଚ ଉପରେ ଗଜୁ ବସି ଭାବୁଛି । ଭାବୁଛି—ଯଦି ତା'ର ଚେନ୍‌ବିକା ଟଙ୍କା ସୁବୋଧ ଫେରାଇ ଦିଏ ? ଯଦି ଏଥିପାଇଁ ତା' ଉପରେ ବିରକ୍ତ ହୋଇ ଉଠେ ?

...ସୁବୋଧଟା ଅଭିମାନୀ !

ଏ ଦୁନିଆର ସବୁ ଯେପରି ସେ ସମସ୍ତଙ୍କ ଉପରେ ଅଭିମାନ, ଅଭିଯୋଗ କରି ଭାଙ୍ଗିପଡ଼ୁଛି । କିନ୍ତୁ କାହିଁକି ବା ଏ ଅଭିମାନ ? ସେ ଯେତେବେଳେ ସାଧାରଣ ଘରରେ ନୁହେଁ, ନିଜପ୍ରତି ଏ ଅଭିମାନ କାହିଁକି ?

ତା'ର ବି ଛୋଟିଆ ଘରଟିଏ ଥିଲା ! ସୁନାର ଘର । କେବଳ ଶାନ୍ତି, କେବଳ ହସ, କେବଳ ଖୁସି । ଛୋଟିଆ ବଗିଚାଟିଏ ଆଗରେ ଥାଆନ୍ତା । ଫୁଲଗଛ ପନିପରିବାର ଗଛରେ ବଗିଚାଟି ହସି ଉଠନ୍ତା । ଥାଆନ୍ତା ଗୁଡ଼ାଏ

ଶୁଆଶାଗ୍ର । ସେମାନଙ୍କର କ୍ରନ୍ଦନରେ ଘର ପୂରି ଉଠନ୍ତା । ସେ ସୀମାନ୍ତରେ ସିନ୍ଦୂର ଲଗାଇ କାନ୍ଦରେ ଶୁଖିନେନ୍ତା ବାନ୍ଧି ସରଳ, ସୁଧାଖୁ ବୋହୂଟିଏ ହେଇ ଘର ଭିତରେ ସୁବୋଧର ସପନ ଦେଖୁଥାନ୍ତା ।

ଗୁନୁ ଉଠିପଡ଼ିଲା । ସେ ନିଶ୍ଚୟ ସୁବୋଧକୁ ଏ ଟଙ୍କା ଦବ । କିନ୍ତୁ ଯିବ ବା କିପରି ? ଯଦିଓ ଏକା ହତା ଭିତରେ ତାଙ୍କର ଘର—କେବଳ ମଝିରେ ପଡ଼ିଆଟା, ତଥାପି ଯିବ ବା କିପରି ? ବୋଉ ତ ପାଟିକରି ଉଠିବେ ।

ଗୁନୁ କଲ୍ୟାଣୀଙ୍କର ଗାଳିକୁ ଖାତିର ନ କରି ସୁବୋଧ ପାଖକୁ ଯିବାକୁ ଇଚ୍ଛାକଲା । କଲ୍ୟାଣୀ ସନ୍ଦେହ କରିବେ । ମନ ତ ତାଙ୍କର ସନ୍ଦେହୀ । କିନ୍ତୁ ସେ ଯିବାରେ ତ କିଛି ଭୁଲ କରୁନି । ଏଥିରେ ତା'ର ମନରେ କୌଣସି ପାପ ଚେତନା ତ ନାହିଁ— କିଛି ବ୍ୟଭିଚାର ନାହିଁ । ସବୁଠାରୁ ଭଲ ଯଦି ବାପାଙ୍କୁ ପଚାରି ସେ ଯାଏ । ଗୁନୁ ଏଥିପାଇଁ ବିପ୍ରଚରଣଙ୍କର ଅନୁମତି ଚାହିଁଲା । ବିପ୍ରଚରଣ କ'ଣ ମନା କରନ୍ତେ । ସେ କହିଲେ— ଯଦି କାମ ଅଛି ବୋଲି କହୁଛୁ, ତାହା ହେଲେ ମତେ ପଚାରୁଛୁ ବା କାହିଁକି ?

ଗୁନୁ ସିଧା ସିଧା ସୁବୋଧ ପାଖକୁ ଗଲା । ଦେଖିଲା, ସବୁତକ ବହି, ଖାତା ପତ୍ରକୁ ଥାକ କରି ସୁବୋଧ ସଜାଡ଼ୁଛି, ଆଉ ବାନ୍ଧିବାରେ ଲାଗିଛି ।

ସୁବୋଧବାବୁ !

କିଏ ଗୁନୁ ?

ଏ ବହିଗୁଡ଼ାକ କ'ଣ ଏପରି ବନ୍ଧାବନ୍ଧି କରୁଛନ୍ତି ?

ବଦଳି କରିଦେଲେ ! ଅନାହତ ସ୍ୱରରେ ଗୁନୁର ମୁହଁକୁ ନ ଚାହିଁ, ସେହିପରି ବାନ୍ଧିବା ଅବସ୍ଥାରେ ସୁବୋଧ କହିଲା ।

ବଦଳି କରିଦେଲେ ?

ହଁ ।

କିନ୍ତୁ କାହିଁକି ?

ଏ ବହି ଖାତାରେ ଠୁଙ୍ଗା ତିଆରି ହେବ ବୋଲି ।

ସୁବୋଧବାବୁ !

ବହିଗୁଡ଼ାକୁ ଚାହିଁ ଚାହିଁ ଦିବାସ୍ୱପ୍ନ ଦେଖିବା ଅପେକ୍ଷା ସେଇ ବହି ବିକା ଟଙ୍କାରେ କିଛିଦିନ ଭଲରେ ମୁଠାଏ ଖାଇବା କ'ଣ ଭୁଲ ଗୁନୁ ?

କଲୁ ମୁଁ ଆପଣଙ୍କ ପାଇଁ ଟଙ୍କା ଆଣିଛି ସୁବୋଧବାବୁ !

ଟଙ୍କା ?

ହଁ—ହଁ, ଟଙ୍କା । ଟଙ୍କା । ଆପଣ ଡେପୁଟି ହେବେ । ଆପଣ ବଡ଼ଲୋକ ହେବେ । ସମସ୍ତେ ଆପଣଙ୍କୁ ସମ୍ମାନ କରିବେ । ଆପଣଙ୍କର ଯଶ ଖ୍ୟାତି ବଢ଼ିଉଠିବ ।

ବଜ୍ରକଠିନ ସ୍ୱରରେ ସୁବୋଧ କହିଲା— ଟଙ୍କା କୋଉଠୁ ଆଣିଲ ?

ସ୍ନେହ କର । ରାନୁ ହସିଲା ।

ରାନୁ, ତମେ ମିଛ କୁହନ ରାନୁ । ଆଶ୍ଚର୍ଯ୍ୟ ସ୍ୱରରେ ସୁବୋଧ କହିଲା—ଆରେ, ତମର ଚେନ୍ କୁଆଡ଼େ ଗଲା ?

ରାନୁ ତରତରରେ ତା'ର ପଣତ କାନରେ ତା'ର ବେକମୂଳ ଘୋଡ଼ାଇ ନେଇ କହିଲା—ଆରେ ନା, ମୁଁ ଚେନ୍ ବନ୍ଧୀ କରିବ କାହିଁକି ? ମୁଁ ତ ସୁବୋଧବାବୁ—

ତୁମ ବେକ ଦେଖାଇଲ ?

ରାନୁ ଆହୁରି ଜୋର୍‌ରେ ବେକକୁ ଲୁଗା କାନିରେ ଘୋଡ଼ାଇ କହିଲା— ମୋ ରାଣ ସୁବୋଧବାବୁ, ଆପଣ ମତେ ବିଶ୍ୱାସ କରନ୍ତୁ । ମୁଁ ଚେନ୍ ବନ୍ଧୀ କରିନ । ବାପାଙ୍କ ଠାରୁ ଟଙ୍କା ମାଗି ଆଣିଛି ।

ମିଛ । ଏକଦମ୍ ମିଛ ! ପାଟିକରି ସୁବୋଧ ଖୁବ୍ ଜୋରରେ ରାନୁର ଶାଢ଼ୀଟାକୁ ଟାଣିଦେଲା ଉଦ୍‌ଭ୍ରାନ୍ତ ଭାବେ । ମୁଁ ଦେଖିବାକୁ ଚାହେଁ ରାନୁ, ତୁମର ସେଇ ଚେନ୍‌କୁ । ଦେଖାଅ ମତେ ଚେନ୍ ଅଛି ନା ନାହିଁ । ଦେଖାଅ । ସୁବୋଧ ଗର୍ଜିଉଠି କହିଲା ।

ଏପରି ହଠାତ୍ ଶାଢ଼ୀ ଟାଣିବାରେ ରାନୁର ବେକମୂଳର ଶାଢ଼ୀ ତ ଖାଲି ଖସି ଗଲାନି, ବରଂ ତା'ର ଛାତିର ଶାଢ଼ୀଟା ମଧ୍ୟ ଖସିଗଲା ।

ସୁବୋଧ କହି ଉଠିଲା—ରାନୁ !

ଛାତିକି ଘୋଡ଼ାଉ ଘୋଡ଼ାଉ ଅପ୍ରସ୍ତୁତ ହୋଇ ଉଠିଲା ରାନୁ । ସୁବୋଧର ଆଖି ଆଗରେ ସେ ଏପରି ଠିଆ ହେଇଗଲା ? ଖାଲି ବ୍ଲାଉଜ୍‌ଟା ଥିଲା ବୋଲି ସିନା ! ନଇଲେ— ?

ନିଜକୁ ପ୍ରକୃତିସ୍ଥ କରି ରାନୁ ସୁବୋଧକୁ ଚାହିଁ ଦେଖିଲା—ସେ ଅପ୍ରତିଭ ହୋଇପଡ଼ିଛି । ତା' ମୁହଁ ନାଲି ।

ରାନୁକୁ ବିରକ୍ତି ଲାଗିଲାନି, ସେ ବରଂ ସନ୍ତୋଷରେ ହସି ଦେଲା । ଏପରି ଆଚରଣରେ ବୋଧହୁଏ ଲଜ୍ଜିତ ହୋଇ ସେ ତାକୁ ପିଠି କରି ଠିଆ ହୋଇଛି ।

ସୁବୋଧବାବୁ ! ରାନୁ କୋମଳ କଣ୍ଠରେ ଡାକିଲା ।

ତୁମକୁ ଏପରି ଅପ୍ରସ୍ତୁତ କରିବାରେ ମୁଁ ଦୁଃଖିତ ରାନୁ !

ହେଉ—ସେ ସବୁ ବାଜେ କଥା ! ଏଇ ଟଙ୍କାଟା ନିଅନ୍ତୁ ତ !

ରାନୁ··· ! ତମେ ମୋ ପାଇଁ ଶେଷରେ ଚେନ୍ ବନ୍ଧାକଲ ? ତମେ ଯାହା ଭାବ ପଛେ ରାନୁ, ମୋର ଓ. ଏ. ଏସ୍. ଦରକାର ନାଇଁ, ତୁମେ ତୁମର ଟଙ୍କା ଫେରାଇ ନିଅ ।

ସୁବୋଧବାବୁ ··· ! ରାନୁ ଆହତ ହୋଇ ଉଠିଲା ।

ସୁବୋଧ ଦେଖିଲା ରାନୁର ଉଜ୍ଜ୍ୱଳ ମୁହଁ କରୁଣ ହୋଇ ଉଠୁଛି ।

ମୁଁ କ'ଣ ଆପଣଙ୍କର କେହି ନୁହେଁ ସୁବୋଧବାବୁ ? ମୋର କ'ଣ ଆପଣଙ୍କର ଭଲ-ମନ୍ଦ ବୁଝିବାର ଅଧିକାର ନାଇଁ ? ମୁଁ କ'ଣ ଆପଣଙ୍କର ଏତେ ପର ? ମତେ ନିରାଶାରେ ଫେରାଇ ଦିଅନ୍ତୁ ନି ସୁବୋଧ-ବାବୁ ! ନିଷ୍ଠୁର ହୋଇ ମୋ ମନରେ ଆଘାତ ଦିଅନ୍ତୁ ନି ।

ରାନୁ !

ସୁବୋଧ ଦେଖିଲା ରାନୁର ଆଖିରେ ଜଳ ଛଳ ଛଳ ହଉଛି । ସେ ଆଖି ଯେପରି ସୁବୋଧକୁ ଚାହିଁ ଵ୍ୟାକୁଳ ଭାବେ କହୁଛି—ମୁଁ କ'ଣ ଆପଣଙ୍କର କେହି ନୁହେଁ ସୁବୋଧବାବୁ, ମୁଁ କ'ଣ ଆପଣଙ୍କର କେହି ନୁହେଁ ?

ସୁବୋଧ ନିଶ୍ଚଳ ଭାବେ ରାନୁକୁ ଚାହିଁରହି ଠିଆହୋଇଗଲା । ସେ କଅଣ କରିବ ? ରାନୁର ଦେଙ୍କକୁ ଖାଲିକରି ଶେଷରେ ସେ ପରୀକ୍ଷା ଦେବ ? ଓଃ···ରାନୁ ଯେ ତାକୁ ନ ପଚାରି କାହିଁକି ଚେନ୍ ବନ୍ଧାକଲା ? କାହିଁକି ଯେ ତାକୁ ଏପରି ଏକ ଅସହାୟ ପରିସ୍ଥିତିରେ ପକାଇ ଚେନ୍ ବନ୍ଧାକଲା ?

ସୁବୋଧ, ଦେଖିଲା — ସେଇ ମୁହଁଟି, ଯାହାକି ସଦାବେଳେ ଉଜ୍ଜ୍ୱଳ— ହାସ୍ୟୋଚ୍ଛଳ, ଚୂନ ଜ୍ୟୋତ୍ସ୍ନାର ଅପରୂପ ଦ୍ୟୁତି ପ୍ରକଟ କରେ,

ବେଦନାରେ ଝାଉଁଳ ପଡ଼ୁଛି । ଆଜ ତା'ର ମାଳନସ୍ନୟନକୁ ଅନ୍ଧାର କରି ଝରିପଡ଼ୁଛି—ଝରିପଡ଼ୁଛି ଆହା, କେତୋଟି ଅଶ୍ରୁ କଣିକା ।

ସୁବୋଧ କହିଲା—ତୁମେ କାନ୍ଦନ ରନୁ । କାନ୍ଦନା । ମୁଁ ସବୁ ସହିପାରିବ, ହେଲେ ତୁମ ଆଖିର ଲୁହକୁ ଆଦୌ ସହିପାରିବ ନାହିଁ ।

ରନୁ ମ୍ଳାନ ହସିଲା, କହିଲା—ମୁଁ ଯାଉଛି ସୁବୋଧବାବୁ ।

ଭୁଲିଯିବ ?

ହଁ, ମୁଁ ଯାଉଛି । ରନୁ ଧୀରେ ଧୀରେ ଘରୁ ବାହାରି ଯାଉଥିଲା ।

ତୁମେ ଯାଅନା ରନୁ ! ରନୁ !

ରନୁ ଘରୁ ବାହାରି ଆସି ବାରଣ୍ଡାରୁ ତଳକୁ ପାଦ ବଢ଼ାଉଥିଲା ।

ତୁମେ ଫେରିଆସ ରନୁ । ମୁଁ ପରୀକ୍ଷା ଦେବି ରନୁ । ମୁଁ ପରୀକ୍ଷା ଦେବି । ତୁମେ ଯଦି ଚାହୁଁଛ ମତେ ଡେପୁଟି ହେବାକୁ, ଖାଲି ତୁମରି ପାଇଁ ମୁଁ ଡେପୁଟି ହେବି ରନୁ ।

ସୁବୋଧବାବୁ ! ରନୁ ଥର ଥର ଗଳାରେ ହସିଉଠି କହିଲା—ସତେ ଯେପରି ତା'ର ମୁହଁରୁ ବାଦଲଟକ କାହିଁ କୁଆଡ଼େ ଅପସରି ଯାଇଛନ୍ତି ।

ସୁବୋଧବାବୁ ! ରନୁ ଥର ଥର ଗଳାରେ ହସିଉଠି କହିଲା—ସୁବୋଧ ବାବୁ !

ସେ ସେହି ବାରଣ୍ଡାରେ ପାହାଚ ଉପରେ ଠିଆ ହୋଇଗଲା ସ୍ଥାଣୁ ଭଳି । ଏ କ'ଣ ଶୁଣୁଛି ସେ ? କ'ଣ ଶୁଣୁଛି ? କାନ ତା'ର ପୂରି ଉଠିଲା । ଖାଲି ତା'ରି ପାଇଁ ସୁବୋଧବାବୁ ଡେପୁଟି ହେବେ ? ଖାଲି ତା'ରି ପାଇଁ ? ତା'ରି ପାଇଁ ?

ରନୁର ମନେହେଲା— ସେ ଆଜି ସବୁ ପାଇଛି । ସାମାନ୍ୟ ଚେଷ୍ଟା ବଦଳରେ ତା'ର ନାରୀଜୀବନର ସବୁ ଧନକୁ ଏକାବେଳକେ ଏକାଠି ପାଇଛି ।

ମଣିଷ ପୁଣି ଏତେ ଖୁସି ହୁଅନ୍ତି ! ଖୁସିରେ ଏତେ ଅଧୀର ହୋଇ ପଡ଼ନ୍ତି ! ରନୁର ମୁହଁରେ ଯେଉଁ କଳା ବାଦଲଟକ ଛାଇ ଯାଇଥିଲେ; ସବୁ କୁଆଡ଼େ ଅପସରି ଗଲେ ।

ସୁବୋଧ ରାଜୁ ପାଖକୁ ଚାଲି ଆସିଲା । କହିଲା ତୁମେ କହୁଛ ନା ରାଜୁ, ଚେନ୍ ବଦଳରେ ତୁମକୁ ହାରଟିଏ ଦେବ ? ନିଶ୍ଚୟ—ନିଶ୍ଚୟ ମୁଁ ତୁମକୁ ହାରଟିଏ ଦେବ । ଯେଉଁଦିନ ଚାକିରୀ ପାଇବ, ସେଇ ଚାକିରୀର ପ୍ରଥମ ଦରମା ଟଙ୍କାରେ ହାରଟିଏ କିଣି ତୁମ ବେକରେ ପିନ୍ଧାଇ ଦେବ ।

ଖୁସିରେ ରାଜୁର ଆଖିରୁ ଝରିପଡ଼ିଲା ଅଶ୍ରୁ କଣିକା ।

ସୁବୋଧ କହିଲା—ମତେ ତୁମର ଚେନ୍ ବିକା ଟଙ୍କା ଦିଅ ରାଜୁ, ମୁଁ ସେଇ ଟଙ୍କାରେ ଫିଜ୍ କାଲି ନିଶ୍ଚୟ ଦେବ ।

ରାଜୁ ଯେତେବେଳେ ସୁବୋଧର ହାତକୁ ଟଙ୍କା ବଢ଼ାଇ ଦେଲା, ସୁବୋଧ ତା'ର ହାତକୁ ଧରି କହିଲା—ଜୀବନରେ ଏ ଦିନକୁ ମୁଁ କେବେ ଭୁଲିପାରିବିନି ରାଜୁ । ଆଜିର ଏ ଦିନ ଯେପରି ମୋର ଅବରୁଦ୍ଧ ଉନ୍ନତି-ପଥର ତାଲାକୁ କୁଞ୍ଚିକାଠି ପରି ଖୋଲି ଫିଟାଇ ଦେଉଛି ।

ସୁବୋଧ ଆବେଗରେ ରାଜୁକୁ ଛାତିରେ ଆବୋରି ନେଲା ।

ରାଜୁ ସରମରେ ଝାଉଁଳି ପଡ଼ିଲା । ଏ ମା'...

ରାଜୁ ସୁବୋଧର ଛାତିରୁ ସାଙ୍ଗେ ସାଙ୍ଗେ ମୁକୁଳି ଯାଇ ହସି ହସି କହିଲା—ଏ କହିଗୁଡ଼ା କୋଉଠି ରହିବ କହିଲ ? ମୁଁ ତାକୁ ଗଣ୍ଠିଲିରୁ ଫିଟାଇ ପକାଉଛି ଦିଏ ।

ସୁବୋଧ ରାଜୁକୁ ଚାହିଁ ରହିଥିଲା ।

ରାଜୁ ଯେତେବେଳେ ସୁବୋଧ ପାଖରୁ ଚାଲି ଆସିଲା, ଦେଖିଲା — ଡ୍ରଇଂରୁମ୍‌ରେ ବାପା ବସିଛନ୍ତି । ପାଖରେ କେହି ନାହାନ୍ତି ।

ରାଜୁ !

ରାଜୁ ଚମକିଗଲା ।

ପାଣି ଗ୍ଲାସେ ଆଣି ଦେବୁ ମା' ?

ରାଜୁ ପାଣି ଆଣି ଚନ୍ଦ୍ରଚରଣଙ୍କୁ ଦେଲା । ଚନ୍ଦ୍ରଚରଣ ପାଣି ପିଇ ପିଇ ପଚାରିଲେ—ଆରେ, ତୋ'ର ବେକର ଚେନ୍‌ଟା ଗଲା କୁଆଡ଼େ ?

ରାଜୁ ନିର୍ବାକ୍ ହୋଇଗଲା ।

କୁଆଡ଼େ କ'ଣ ହଜେଇ ଦେଇଛୁ ?

ଗନୁ ଭାବିଲା—ଆରେ ସେ କାହାକୁ କିଛି ନକହି ଏପରି ଚେନ୍‌ଟା ବନ୍ଧୀ କରିଦେଲା କେମିତି ?

କିଛି କହୁନୁ ଯେ ? କ'ଣ ହଜିଗଲା ?

ଗନୁର ଓଠ ଥରି ଉଠିଲା ।

ଶିପ୍ରଚରଣ ଧୀର କଣ୍ଠରେ କହିଲେ—କେବେତ କିଛି ତୁ ହଜେଇ ଦେଉନୁ, ହେଲେ ଆଜି ଚେନ୍‌ଟା କେମିତି ହଜେଇ ଦେଲୁ ?

ଗନୁ କ'ଣ ଏହାର ଉତ୍ତର ଦେବ ? ଗନୁର ମନେହେଲା ତା'ର ପାଦ ତଳର ଭୂମି କମ୍ପିବାରେ ଲାଗିଛି । ସେ ବାପାଙ୍କ ମୁହଁକୁ ଚାହିଁ ପାରିଲା ନାହିଁ । ସେ କ'ଣ ମିଛ କହିବ ? ସେ କ'ଣ କହିବ ଯେ, ଚେନ୍‌ଟା କୋଉଠି ପଡ଼ିଯାଇଛି ସେ ଜାଣିନି ? ସେ ଆଦୌ ଜାଣିନି ?

ସମ୍ମୁଖରେ ଠିଆ ହେଇଛନ୍ତି ତା'ର ବାପା । ତା'ର ସକଳ ଭକ୍ତିର ପାତ୍ର । ଗମ୍ଭୀର, ଅଥଚ ଉଦାର । ଖୁବ୍ ବଡ଼ । ଖୁବ୍ ବଡ଼ ଯେତେକ ଆଶା, ଯେତେକ ଭରସା, ଯେତେକ ବିଶ୍ୱାସ ସବୁ ତାଙ୍କର ଏଇ ଗନୁଠାରେ । ଯେତେକ ସ୍ନେହ, ଯେତେକ ମମତା, ଯେତେକ ସନ୍ତାନ ବତ୍ସଳତା ସବୁ ତାଙ୍କର ଏଇ ଗନୁଠାରେ ।

ସେ ସମ୍ମୁଖରେ ଠିଆହୋଇ ଗନୁର ବେକକୁ ଚାହିଁ ରହିଛନ୍ତି । ବିରକ୍ତ ହେଇ ନାହାନ୍ତି । ଧୀର ହସ ହସୁଛନ୍ତି । ଅଖଣ୍ଡ ପ୍ରତ୍ୟୟର ହସ ।

ତା'ର ବାପା ! ହୁଁ...ହୁଁ...ତା'ର ବାପା !

ସେ କଅଣ ମିଛ କହିବ ତାଙ୍କର ଆଗରେ ?

ଗନୁର ଓଠ ଥରି ଉଠିଲା ।

ଶିପ୍ରଚରଣ ହସି ହସି କହିଲେ— ହଜିଯାଇଛି ତ ହଜିଯାଇଛି । ଏଥିପାଇଁ ଦୁଃଖ କାହିଁକି କରୁଛୁ ? ଖାଲି ବେକ ଦେଖିଲେ ବୋଉ ଗାଳି ଦେବ, ଆଉ ଗୋଟାଏ ନେଇ ଆସିବି ।

ଗନୁର ଛାତି ଭିତରେ ଗୁଡ଼ାଏ କୋହ ଥରି ଉଠିଲା ।

ସେ ହୁଏତ ମିଛ କହି ପାରନ୍ତା ! କନେଇ ଚୁନେଇ ଖୁବ୍ ମିଛଟାଏ କହି ପାରନ୍ତା । କିନ୍ତୁ ସବୁ ଜାଗାରେ, ସବୁ ଲୋକଙ୍କ ଆଗରେ ଯେତେ ଚେଷ୍ଟା କଲେ କ'ଣ ମିଛ କହି ହୁଏ ? କେଉଁ ଜାଗାରେ ହସି ହସି ମିଛ

କହୁ ହୁଏ । କେଉଁଠି ଯେତେ ଚେଷ୍ଟା କଲେ ମଧ୍ୟ ପାଟିରୁ ମିଛ ସୁଦ୍ଧା ବାହାରେନି । ଏଠି ଗନୁର ଅବସ୍ଥା ହିଁ ତାହା ।

ସମ୍ମୁଖରେ ତା'ର ଠିଆ ହେଇଛନ୍ତି ବାପା ।

ଖୁବ୍ ବଡ଼ । ଖୁବ୍ ବଡ଼ । ଆଖି ପାଏନା । କଳନା କରି ହୁଏନା । ଆକାଶ । ଆକାଶ ।

ସେ ଯାଆନ୍ତି ଅଫିସକୁ, ଗନୁ—ଗନୁ କହି ଗୁଳି ଯାଆନ୍ତି । ଆସନ୍ତି ଅଫିସରୁ ଗନୁ—ଗନୁ କହି ଖୋଜି ଯାଆନ୍ତି । ଖାଇଲାବେଳେ ଗନୁ, ଶୋଇଲା ବେଳେ ଗନୁ । ସଦାବେଳେ ଗନୁ ।

ଗନୁ ପଛରେ ସେପରି ଦୁଇଟି ଆଖି ସଦାବେଳେ ଧାଇଁ ଗୁଲିଛନ୍ତି ।

ସେ ମିଛ କହିବ ? ମିଛ ?

ବପ୍ରଚରଣ କହିଲେ—ଠିଆହେଇ କ'ଣ ଭାବୁଛୁ ମା', ଯାଆ··· ।

ଗନୁ ଯାଇପାରିଲା ନାହିଁ ।

ବପ୍ରଚରଣ ଖବର କାଗଜରେ ମନୋନିବେଶ କଲେ । ବଡ଼ ବଡ଼ ଖବର । ଆସେମ୍ବ୍ଲିରେ ହଇ ଚଇ ପାଟି । ଟେବୁଲ୍ ଚୌକି ଫିଙ୍ଗାଫିଙ୍ଗି ବିପକ୍ଷ ଦଳର ଅସହଯୋଗ । ଛାତ୍ର ଆନ୍ଦୋଳନ । ପରୀକ୍ଷା ବର୍ଜ୍ଜନ । ଛଟେଇ । ଶ୍ରମିକଙ୍କ ସତ୍ୟାଗ୍ରହ । ଶୋଷଣଯନ୍ତ୍ରରେ ଗୁଳି ।

ଗନୁ ସେହିପରି ଠିଆ ହୋଇଥିଲା ଷ୍ଟାଚ୍ୟୁ ହୋଇ ।

ବପ୍ରଚରଣ ଖବର କାଗଜରେ ମନୋନିବେଶ କରିଥିଲେ—ଖାଦ୍ୟରେ ଅପମିଶ୍ରଣ । ଖାଦ୍ୟ ପଦାର୍ଥର ଦରଦାମ ହୁ'ହୁ' ବୃଦ୍ଧି । ମରୁଡ଼ି ଯୋଗୁ ଗୁଷୀକୁଳରେ ହା'ହା'କାର । ରେଲ ଦୁର୍ଘଟଣା । ମଣିଷଖିଆ ବ୍ୟାଘ ମାତି ଉଠିଛି । ପାଗଳ ବିଲୁଆ କାମୁଡ଼ିବାରେ ଲାଗିଛି । ପ୍ରେମ ପାଇଁ ଝିଅ ବାପକୁ ବିଷ ଦେଇଛି ।

ବପ୍ରଚରଣ ଖବର କାଗଜରୁ ଆଖି ଉଠାଇଲେ ।

ଗନୁ ସେହିପରି ଠିଆ ହୋଇଛି ।

ତୁ ମା' ଯାଇନୁ ଯେ ! ବପ୍ରଚରଣ ବ୍ୟସ୍ତ ହୋଇ ଉଠିଲେ—ଆରେ, କାନ୍ଦୁଛୁ କାହିଁକି ? କ'ଣ ହେଲା ?

ବିନୁର ଆଖିରୁ ଝରିପଡ଼ୁଥିଲା ଲୁହ ।

କାହାକୁ କିଛି ନ କହି ମୁଁ ଚେନ୍‌ଟାକୁ ବନ୍ଧୀକରି ଦେଇଛି ବାପା ।

ବିନୁ !

ହଁ ବାପା, ମୁଁ ସେତେବେଳେ ଏତେ ଭାବି ପାରି ନଥିଲି । କିନ୍ତୁ ଆପଣ ମତେ ବିଶ୍ୱାସ କରନ୍ତୁ ବାପା, ମୁଁ ଚେନ୍‌ଟାର ଅସଦୁପଯୋଗ କରିନି । ଚେନ୍‌ଟା···

ବନ୍ଧୀ କରିବା କ'ଣ ଦରକାର ଥିଲା ?

ଦରକାର ମୋର ନଥିଲା ବାପା !

ଆଉ ?

ଟଙ୍କା ମୋର କ'ଣ ହେବ ? କି କାମରେ ଆସିବ ? ହେଲେ ଯେ ନିହାତି ଦରିଦ୍ର; ଅଥଚ ମେଧାବୀ—ଭଲ ପଢ଼େ, ଅଧ୍ୟବସାୟୀ, ଏଇ ଟଙ୍କା ଅଭାବରୁ କ'ଣ ପରୀକ୍ଷା ଦେଇ ପାରିବନି ବାପା ?

ତୁ କାହା କଥା କହୁଛୁ ମା' ?

ମୁଁ ସୁବୋଧ ପାଇଁ ଚେନ୍ ବନ୍ଧୀ କରି ଦେଲି ବାପା । ଆପଣଙ୍କୁ ନପଚାରି ଚେନ୍ ବନ୍ଧୀ କରିଦେଲି । ସେତେବେଳେ ଆପଣଙ୍କ କୋଉ ମତେ ଏଇ ଚେନ୍ ବିଷୟରେ ପଚାରିବେ, ଏ କଥା ଥରେ ହେଲେ ଭାବିପାରି ନଥିଲି । ମୋ ମନ ତ କହିଲା – ତୁ ଭୁଲ କରୁନୁ ବିନୁ—ତୁ ଭୁଲ କରୁନୁ । ଦୁନିଆରେ ଯେ ସମସ୍ତଙ୍କଠାରୁ ବେଶୀ ପ୍ରବଞ୍ଚିତ, ସାମାନ୍ୟ କେତୋଟି ଟଙ୍କା ପାଇଁ ବାରଦୁଆର ଯେ ନିରାଶାରେ ଖାଲି ହାତରେ ଫେରି ଆସିଛି, ସେ ଅସହାୟ ହୋଇ ତୋ' ମୁହଁକୁ ଚାହିଁ ରହିଛି ବିନୁ । ତୋ'ର ଚେନ୍ ବିନିମୟରେ ତୁ ଯଦି ତା'ର ମୁହଁରେ ହସ ଖେଳାଇ ପାରିବୁ, ତା'ର ଅନ୍ଧକାରମୟ ଭବିଷ୍ୟତକୁ ଆଲୋକିତ କରି ପାରିବୁ, ତାହା ହିଁ ତୋ'ର ଯଥେଷ୍ଟ ହୋଇଛି । ତୋ' ବେକକୁ ଲଙ୍ଗଳା କରି ତା' ବେକରେ ତୁ ଯଦି ଫୁଲହାର ଦେଖୁ, ତୁ କ'ଣ ତୋ'ର ହୋଇ ବିକା ଚେନ୍‌କୁ ଫେରି ପାଇବୁନି ବିନୁ ?

ବିନୁ ··· !

ବିନୁ କ'ଣ କହି ଯାଉଛି, ନିଜେ ଜାଣି ପାରୁ ନଥିଲା । ବିପ୍ର-ଚରଣଙ୍କର ଡାକରେ ସେ ପ୍ରକୃତିସ୍ଥ ହେଲା । କିନ୍ତୁ ଆଖିରୁ ତା'ର ଝରି ଯାଉଥିଲା ସେଇ ଲୁହ ।

ବିପ୍ରଚରଣ ରାନୁକୁ ଶୁଣି ରହିଥିଲେ । କ'ଣ କହିବେ କ'ଣ ନ କହିବେ୍ ନିଜେ କିଛି ଠିକ୍ କରି ପାରୁ ନଥିଲେ । ସେ କେବଳ ନୀରବ ହୋଇ ଯାଇଥିଲେ ।

ରାନୁ ଚୁପ୍ ଚାପ୍ ।

ରାନୁ ଠିଆ ହୋଇଛି । ବିପ୍ରଚରଣ ଠିଆ ହୋଇଛନ୍ତି ।

ତେବେ ସବୁ ଚୁପ୍ ଚାପ୍ ।

ନୀରବତା ଭଙ୍ଗ କରି କିଛିକ୍ଷଣ ପରେ ବିପ୍ରଚରଣ କହିଲେ—ରାନୁ ମା', ଚାଲୁ ସୁବୋଧର ବାପାଙ୍କୁ ଡାକିଦେବୁ ।

ରାନୁ ପାଟିକରି ଉଠିଲା—ମୁଁ ଯଦି ଭୁଲ କରିଛି ବାପା ତେବେ ମତେ ଗାଳି ଦିଅନ୍ତୁ, ମାରନ୍ତୁ । ମୁଁ ସବୁ ସହିଯିବି । ହେଲେ ସୁବୋଧ-ବାବୁଙ୍କ ବାପାଙ୍କୁ ଡାକନ୍ତୁନି । ତାଙ୍କୁ ଗାଳି ଦିଅନ୍ତୁନି ।

ବିପ୍ରଚରଣ ହସିଲେ ।

ରାନୁ କହିଲା—ସୁବୋଧବାବୁ ଟେନ୍‌ପାଇଁ ମନା କରୁଥିଲେ । ମୁଁ ତ ତାଙ୍କୁ ନ କହି ଟେନ୍ ବନ୍ଦୀ କରିଦେଲି । ଟଙ୍କା ଯେତେବେଳେ ଦେଲି, ସେତେବେଳେ ବି ମନା କରୁଥିଲେ । ସେ ମତେ କେବେବେଳେ ଟଙ୍କା କଥା କହିନାହାନ୍ତି । ସେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ତାଙ୍କୁ, କି ତାଙ୍କର ବାପାଙ୍କୁ ଆପଣ ଗାଳି ଦିଅନ୍ତୁନି ବାପା !

ବିପ୍ରଚରଣ ରାନୁର ଆଖିର ଲୁହକୁ ପୋଛି କହିଲେ—ପାଗଳୀ ! ମୁଁ ସୁବୋଧର ବାପାକୁ ଡାକୁନି ଟେନ୍ ବିଷୟରେ ତାଙ୍କୁ ଗାଳି ଦେବାପାଇଁ । ଡାକୁଛି ଗୋଟାଏ ଶକ୍‌ସା ପାଇଁ ।

ଶକ୍‌ସା କ'ଣ ହବ ବାପା ?

ତମ ସାଥିରେ ତୁ କ'ଣ ଯିବୁନି ?

କୁଆଡ଼େ ?

ଏଇ ଗୋଟାଏ ଟେନ୍ କଣା ହେବ ଯେ !

ହଁ ଟେନ୍ ! ତୋ'ର କେଉଁଠା ଲଙ୍ଗଳା ହେଲେ କେତେ ଝାରାପ ଦିଶୁଛି, ତୁ ସିନା ଦେଖିପାରୁନୁ, ହେଲେ ମୁଁ ତ ନିଜେ ଦେଖିପାରୁଛି ।

ରାନୁ ବସ୍ମିତ ହୋଇ କହିଲା—କ'ଣ ଏଇ ସାଙ୍ଗେ ସାଙ୍ଗେ ।

ହଁ, ଏଇ ସାଙ୍ଗେ ସାଙ୍ଗେ । ବୋଉକୁ, ନମୀକୁ, ଅମାକୁ ଡାକାଗଲୁ କହିବୁନ । ସେମାନେ ପାଟି କରି ଉଠିବେ ।

କନୁ—କନୁ—ବାପା—

ବିପ୍ରଚରଣ ହସି ଉଠି କହିଲେ – ଚୁପ୍... ! ଏଥିରେ କହୁ କନୁ ଫନୁ ଆଦୌ ନାହିଁ ।

ଆଜକୁ ପ୍ରାୟ ସାତ ଆଠ ମାସ ହେଲା କଲ୍ୟାଣୀଙ୍କର ଦେହ ଭଲ ନାହିଁ । କଲ୍ୟାଣୀ ଖଟଟା ଉପରେ ପଡ଼ି ପେଟକୁ ଚୁପି ପାଟି କରି ଉଠିଲେ –ହଇଲେ ହେ ଚଣ୍ଡାଳୀ, ରନୁ, ଆଲେ ସତ୍ୟାନାଶୀ କ'ଣ ମୋ ପାଇଁ ଖାଇବାକୁ ଆଣିଲୁ ନା ନାଇଁ ? ଆଲେ, ତୁ ମତେ ଏମିତି ଉପାସରେ ମାରିଦେବୁ ଲେ, ମାରିଦେବୁ !

ରନୁ ବାର୍ଲି ଗ୍ଲାସଟାଏ ଧରି ପାଖରେ ଠିଆ ହେଲା, କହିଲା— ହେଇଟି ବୋଉ ଏଇ ବାର୍ଲି—

ବାର୍ଲିଗ୍ଲାସ୍ ଦେଖି କଲ୍ୟାଣୀଙ୍କର ଆଖି ତାଳୁରେ ଖୋସି ହେଇଗଲା । ତାଙ୍କୁ ବୋଧହୁଏ ଏମାନେ ଏମିତି ନ ଖୋଇ ନପେଇ ମାରିଦେବେ !

ରନୁ ଟେବୁଲ୍ ଉପରେ ଗ୍ଲାସ୍‌ଟା ଥୋଇଲା । କଲ୍ୟାଣୀ ହଠାତ୍‌କରେ ଗ୍ଲାସଟାକୁ ଟେକ ଧରି ସବୁତକ ବାର୍ଲି ରନୁ ଉପରକୁ ଫୋପାଡ଼ି କହିଲେ —ଆଲେ ମତେ ଜଳଜନ୍ତୁ ? କହିଛି ପରା ସେଇ ବାର୍ଲି ଫାର୍ଲି ଆଦୌ ଖାଇବନ ।

ଲୁଗା ପଟା ସବୁ ତା'ର ବାର୍ଲିରେ ଓଦା ହୋଇଥାଏ । ରକ୍ଷା ହେଇଛି ରନୁ ବାର୍ଲି ଥଣ୍ଡାକରି ଆଣିଥିଲା, ନଇଲେ ଏ ଦଶାରୁ ସେ ଦଶା ଆହୁରି ବଳେଇ ପଡ଼ିଥା'ନ୍ତା । ରନୁ ବାର୍ଲିକୁ ତା'ର ମୁହଁରୁ ପୋଛି ନେଲା । କହିଲା ନମି ଅପା ପରା କହିଛନ୍ତି, ବାର୍ଲି ଖାଇବାକୁ ।

ଆଜ୍ଞେ, ତମେ ସବୁ ମତେ କ'ଣ ଏମିତି ନଖୋଇ ଉପାସ ରଖି ମାରିବାକୁ ଚାହୁଁଛ ? ମୁଁ ନ ଖାଇ ମରିବି କାହିଁକି ? ସବୁ ମତେ ଦିଅ ଖାଇବାକୁ । ଖାଇକି ମୁଁ ମରିବି ।

ଏତକ କହି କଲ୍ୟାଣୀ କୁନ୍ଥାଇବାକୁ ଲାଗିଲେ ।

ରାନୁ କହିଲା—ବୋଉ ଏପରି ଅବୁଝା ହୁଅନି, ମୁଁ ପୁଣି ବାର୍ଲି ତିଆରି କରି ଆଣୁଛି ।

କ'ଣ କହିଲୁ ?

କିଛି ନ ଖାଇଲେ ତୁମର ଦେହ ଦିନକୁ ଦିନ ଦୁର୍ବଳ ହୋଇ ଯାଉଛି ବୋଉ !

ମୋର ଦେହ ଦୁର୍ବଳ ହେଲେ ତୋ'ର କ'ଣ ଗଲା ? ଆଜ୍ଞେ ଏଇ ବାର୍ଲି ଖୁଆଇ ମୋତେ କଅଣ ଠାଣ କରିଦେବୁ ଚାହୁଁଛୁ କଲେ ପୋଡ଼ା-ମୁହିଁ । ସଦାବେଳେ ସେଇ ବାର୍ଲି, ସାଗୁ ! ଏଗୁଡ଼ା ଖାଇ ଖାଇ ମୁଁ ମୋ ଜିଭଟାର ଭଲ-ମନ୍ଦ ବାଛିବା ଗୁଣ ହରେଇ ହେଲିଣି ।

ରାନୁ କଅଣ କହିବ ? କଲ୍ୟାଣୀଙ୍କର ଏ ଅବୁଝା କଥାରେ ତା'ର ଯେପରି କିଛି କହିବାର ଆଉ ନାହିଁ । ତଥାପି କହିଲା—ମୋ ରାଣ ବୋଉ ଖାଇବାକୁ ମନା କରନା । ମୁଁ ଯାଇ ବାର୍ଲି ତିଆରି କରି ଆଣେ, ତା'ପରେ ଯାଇ ମତେ ଯାହା କହିବାର କଥା କହିବ ।

କଲ୍ୟାଣୀ ଘୃଣାରେ ମୁହଁ ବୁଲାଇ ବସିଲେ । ଏଇ ରାନୁଟା ଗୋଟାଏ ମହା ଜିଦ୍‌ଖୋର । ଯେତେ ଯାହା କଲେ ବି—ଫୋପଡ଼ା ଫିଙ୍ଗା କଲେ, ଯେମିତି ହେଲେ ବାଧ୍ୟକରି ରାନୁ ତାଙ୍କୁ ଖୁଆଇବ । ତା'ଛଡ଼ା ରାନୁର ଦୋଷ ବା କଅଣ ? ସେ କଅଣ ତାଙ୍କର ମନମୁତାବକ ଖାଇବାକୁ ଦିଅନ୍ତା ନାହିଁ ? ଯଦି ଟିକିଏ ଗୁରୁପାକ ଖାଦ୍ୟ ଖାଇଦେଉନ୍ତି, ତା' ହେଲେ ତା' ସାଙ୍ଗେ ସାଙ୍ଗେ ସେଇ ନିଆଁଲଗା ପେଟଟାରେ କିଏ ଗୋଟାଏ ପଶି ପେଟଟାକୁ ଛିଣ୍ଡାଇ ଦଉଛି, ଆମ୍ବୁଡ଼ି ପକଉଛି ।

କିଛି ନହରୁଣ ରାନୁଟା ଉପରେ ବାର୍ଲି ଫୋପାଡ଼ି ଦେଇଥିଲେ ବୋଲି କଲ୍ୟାଣୀ ମନେ ମନେ ଦୁଃଖିତ ହେଲେ । କିନ୍ତୁ ଏପରି ଦୁର୍ବଳତା ସେ ରାନୁ ପାଖରେ ପ୍ରକାଶ କରିବା ପାଇଁ ମଧ୍ୟ ସଙ୍କୋଚ ମନେକଲେ ।

କଲ୍ୟାଣୀ ଏଥର ସଦାବେଳେ ହିଁ ଚଢ଼ି ଚଢ଼ି ହେଉଛନ୍ତି, ବେଶୀ ରାଗଟା ଯାଇ ଠୁଳ ହେଉଛି ରାନୁ ଉପରେ । ରାନୁର ଛାଇ ଦେଖିଲେ ସେ ଚମକି ଉଠୁଛନ୍ତି ।

କେଜାଣି କଅଣ ହେଉଛି, କଲ୍ୟାଣୀ ଦିନକୁ ଦିନ ଝିଙ୍ଗିବାରେ ଲାଗିଛନ୍ତି । ଦ୍ରୁତ ସ୍ୱାସ୍ଥ୍ୟହାନି ଘଟୁଛି ତାଙ୍କର । ପେଟରେ ସଦାବେଳେ ଅସହ୍ୟ ଯନ୍ତ୍ରଣା । ନା ଖାଇ ହଉଛି, ନା ପିଇ ହେଉଛି । ସଦାବେଳେ ପେଟଟାକୁ ଦି'ହାତରେ ଧରି ଚକାର ଭିତରୁ ଯାହା ମନକୁ ଆସୁଛି ରାନୁକୁ ବକୁଛନ୍ତି । କାଲି ଆଞ୍ଜୁଳାଏ ରକ୍ତ ବାନ୍ତି କରି ପକେଇଛନ୍ତି ।

ବିପ୍ରଚରଣ ଏହାର କୌଣସି ସମାଧାନ ପାଇପାରୁ ନଥିଲେ । ନମିତାକୁ ଡାକି ମା' କଥା କହିଥିଲେ, ନମିତା ଗୁଡ଼ାଏ ଔଷଧ ପ୍ରେସ୍‌କ୍ରାଇବ୍ କରିଥିଲା, କିନ୍ତୁ ସେ ତ ସେ ବିଷୟରେ ବିଶେଷ ଯୋଗ୍ୟତା ନୁହେଁ, କାରଣ ଡାକ୍ତରୀ ପାଶ୍ କରିବାକୁ ତାହାର ଆହୁରି ଗୋଟାଏ ବର୍ଷ ବାକି ଅଛି ।

ଏପରି କଷ୍ଟ—ଶାରୀରିକ ଅସୁସ୍ଥତା ଓ ମାନସିକ ଅଶାନ୍ତି ପ୍ରାୟ ମାସେ ପାଖାପାଖି ହେଲାଣି, କମୁନି । ଆଗବେଳେ ରୋଗର ପ୍ରକୋପ ସାମୟିକ ଥିଲା । ମାତ୍ର ଏବେ ପ୍ରବଳ ।

ମନସୁଖ ନମିର ଅନୁରୋଧରେ ଥରେ ଆସିଥିଲେ ଯେ, ସେତେ-ବେଳକୁ କଲ୍ୟାଣୀଙ୍କର ଦେହ ଖରାପ ନଥିଲା, କିନ୍ତୁ ଏହା ଭିତରେ ସେ ଆସି ନାହାନ୍ତି ।

ବିପ୍ରଚରଣ ନମିତାକୁ କହିଲେ—ମନସୁଖଙ୍କୁ ଡକାଇଲେ ହୁଏତ ଭଲ ହୁଅନ୍ତା ।

କଲ୍ୟାଣୀ ସେ କଥା ଶୁଣି କହିଲେ—ଜୋଇଁଙ୍କୁ ଦେଖିଲେ ତ ରୋଗ ମୋର ମନକୁ ମନ କୁଆଡ଼େ ପଳେଇବ । ତମେ ଫୋନ କର ।

ବିପ୍ରଚରଣ ଫୋନ୍ କରିଛନ୍ତି ମନସୁଖଙ୍କ ପାଖକୁ ।

•

ନମିତା ତା' ହାତଘଣ୍ଟାକୁ ଚାହିଁ ମନେ ମନେ ଭାବିଲା—ମନସୁଖ ବର୍ତ୍ତମାନ ବୋଧହୁଏ ଆସୁଥିବେ । ସେ ତାର ଘର ଭିତରକୁ ପଶିଯାଇ ଆଇନାରେ ନିଜ ମୁହଁକୁ ଟିକେ ଦେଖିନେଲା ।

କଲ୍ୟାଣୀ ପେଟକୁ ଚିପି ଧରି କହିଲେ—ଆଲୋ ହେ ପୋଡ଼ାମୁହିଁ ରାମୁ, ସେଠି ପରା କୁକୁରଟା ବାନ୍ତି କରିଛି, ତୋ ଆଖି କ'ଣ ଫୁଟିଯାଇଛି ? ଜ୍ୱାଇଁ ମୋର ଏଇନା ଆସୁଥିବେ । ଚଞ୍ଚଳ ଧୋଇ ପକା—ଫିନାଇଲ୍ ପକାଇ ଦେ ।

ରାମୁ ତରତରରେ ବାରଣ୍ଡାଟାକୁ ଧୋଇବାକୁ ଚାଲିଗଲା । କୁକୁରଟା ଆଜି କ'ଣ ଗୁଡ଼ାଏ ଖାଇ ଦେଇଛି ଯେ, ମେଣ୍ଟାଏ ବାନ୍ତି କରିଛି ।

କଲ୍ୟାଣୀ ଚଉକିଟା ଉପରେ ଆଉଜି ପାଖରେ ବସିଥିବା ବିପ୍ର-ଚରଣଙ୍କୁ କହିଲେ—ଜ୍ୱାଇଁଟା ମୋର ସୁନା । ହାତ ତାର ଅମୃତ । ଏତେ ବଡ଼ ଡାକ୍ତର, ବିଲାତ ଫେରନ୍ତା । ଚାହିଁଥିଲେ କୋଉ ବଡ଼ ଲୋକ ଘରେ ବିବାହ କରିଥା'ନ୍ତା । କେତେ ଯୌତୁକ ପାଇଥାନ୍ତା, କିନ୍ତୁ ମୋ ନମିକୁ ରାଜି ହୋଇଗଲା । ନମିଟା ତ ଯେପରି ସୁନ୍ଦର, ଆଉ ଯେପରି ପଢ଼େ, ସେଥିରେ ଯେ କୌଣସି ପୁଅ ବିନା ଯୌତୁକରେ ବିବାହ କରିବାକୁ ଇଚ୍ଛା କରିବ ।

ବିପ୍ରଚରଣ କଲ୍ୟାଣୀଙ୍କର କଥାରେ ଆନନ୍ଦିତ ହୋଇ ମନ ଭିତରେ ମନସୁଖକୁ ପ୍ରଶଂସା କରୁଥିଲେ । କନ୍ୟାଦାୟ ଦୁଶ୍ଚିନ୍ତାରୁ ସେ ଶାନ୍ତି ପାଇଛନ୍ତି ଏଥିପାଇଁ ଖୁସି ହେଉଥିଲେ । ନମି ଡାକ୍ତରୀ ହଉ ପଢ଼ୁଛି, କିନ୍ତୁ ସେ ଝିଅ ତ ! ଦିନେ ତ ସେ ଚିନ୍ତାକରିଥାନ୍ତେ ନମିର ବରପାତ୍ରର ସନ୍ଧାନ ଉଦ୍ଦେଶ୍ୟରେ ।

କଲ୍ୟାଣୀ କହିଲେ— ଜ୍ୱାଇଁଙ୍କୁ ଦେଖିଲେ ମୋର ମନ ପୂରି ଉଠେ । ନବନ୍ତି ସାରି ତାପରେ ବିବାହ ହିଥି ନାଇଁ ବୋଲି ସିନା ବର୍ଷେ ଗଡ଼େଇ ଦେଲ କିନ୍ତୁ ମୁଁ ଭାବୁଛି ଏ ବାହାଘରଟା ଚଞ୍ଚଳ ସାରି ଦେଇଥିଲେ ଭଲ ହୋଇଥା'ନ୍ତା । ଯଦି କୌଣସି କାରଣରୁ ଏ ବାହାଘର ଭାଙ୍ଗିଯାଏ—

ବିପ୍ରଚରଣ କହିଲେ—ସେଟା ଆମ ଦୁର୍ଭାଗ୍ୟ ନମିବୋଉ, ନିଜର ସ୍ୱାର୍ଥପାଇଁ ମୁଁ କ'ଣ ଅନ୍ତଥିରେ ବାହାଘର କରିବି !

ରାମୁ ହେଇଠି ଥିଲା, କହିଲା—ମୋର କିନ୍ତୁ ବିଶ୍ୱାସ ବାପା, ନମି ଅପାକୁ ଯେ କୌଣସି ରଜାପୁଅ ଦେଖୁ ପଛେ ବିଭା ହେବାକୁ କହିବ । ମୋ ଅପା ଭଲ କିଏ ଅଛି ଯେ ! ଏ ବାହାଘର କେବେ ଭାଙ୍ଗିବନି । ମୋ କଥାକୁ ବିଶ୍ୱାସ କର । ଆଦୌ ଭାଙ୍ଗିବନି । ଆଦୌ ଭାଙ୍ଗିବନି ।

ରାମୁର କଥାରେ କଲ୍ୟାଣୀଙ୍କର ହୃଦୟ ପ୍ରସନ୍ନତାରେ ପୂରି ଉଠିଲା । ଅନ୍ୟ କିଛି ହୋଇଥିଲେ ସେ ହୁଏତ ରକ୍ତଚକ୍ଷୁ ଦେଖାଇଥାନ୍ତେ, କିନ୍ତୁ ତାର ଏପରି କଥାରେ କେବଳ ମୃଦୁ ହସିଲେ ।

ରାନୁ କହିଲା—ମନସୁଖବାବୁ ଆସିଲେ, ଗଲେ । ନବବନ୍ଧ ସାରା ବଙ୍ଗଳର ନସ୍ପତ୍ତି ସରିଲାଣି । ଅଥଚ ମୁଁ ଆଜଯାଏ ତାଙ୍କୁ ଦେଖିନି । ତା' ଛଡ଼ା ମେଡ଼ିକାଲ ଗଲେ ସିନା ମୁଁ ତାଙ୍କୁ ଦେଖନ୍ତି ।

ବପ୍ରତଭଣ ହସି ହସି କହିଲେ—ଆଜ ତ ଦେଖିବୁ—ଏଇ ବର୍ତ୍ତମାନ । ଏତେ ବ୍ୟସ୍ତ କାହିଁକି ?

କଲ୍ୟାଣୀ କହିଲେ, କ'ଣ ଏଇଠି ଗପୁଥିବୁ ନା ଜୋଇଁଙ୍କ ପାଇଁ କିଛି ଜଳଖିଆ କରିବୁ ? କେତେ କାମ । ଯା' ଡ୍ରଇଂରୁମ୍‌ରେ ଟିକେ ହାତ ବୁଲେଇଦେ । ନମିତାର ଘର, ବାପାଙ୍କ ଘର ଟିକେ ସଜଡ଼ା ସଜଡ଼ି କରିଦେ !

ରାନୁ ଜଳଖିଆ କରିବା ପାଇଁ ଚାଲିଯାଉଥିଲା । ବାରଣ୍ଡା ପାଖରେ ନମିତା ଠିଆ ହୋଇଥିଲା । ରାନୁକୁ ପାଖକୁ ଡାକି ଫୁସ୍ ଫୁସ୍ କରି କହିଲା —ଖବରଦାର୍ ରାନୁ, ଆଜି ଯେପରି ସବୁ ଜିନିଷ ଖୁବ୍ ସୁନ୍ଦର ଭାବେ ହୁଏ, ବୁଝିଲୁ ।

ରାନୁ ହସି ହସି କହିଲା—ତମେ ନିଶ୍ଚିନ୍ତ ହୁଅ ଅପା, ମୁଁ ସବୁ ଠିକ୍ ଠାକ୍ କରିଦେବି ।

ମନସୁଖ ଆସିଲେ ।

ଘରଟା ସାରା ନିସ୍ତବ୍ଧତା । ଅଖଣ୍ଡ ନିସ୍ତବ୍ଧତା । ଅଗ୍ନା ଦୁଆରେ ଠିଆ ହୋଇ 'ମନସୁଖଙ୍କୁ ଚାହିଁ ରହିଥିଲା । ନମିତା ବାପା ବୋଉଙ୍କ ପାଖରେ ଠିଆ ହୋଇ ମନସୁଖଙ୍କର ଡାଏଗୋନେସିସ୍ ଦେଖୁଥିଲା । ବୁଢ଼ା ଥିଲା ରାନୁ ପାଖରେ ରୋଷାଇ ଘରେ ।

ମନସୁଖଙ୍କୁ ଦେଖୁ ଦେଖୁ କଲ୍ୟାଣୀଙ୍କର ପ୍ରକୃତରେ ହିଁ ପେଟର ଯନ୍ତ୍ରଣା ଗୁଡ଼ାଏ କମିଯାଇଥିଲା । ଯେତେ ହେଲେ ତ ବଡ଼ଜୋଇଁ । ବଡ଼ ଜୋଇଁର ମୁହଁକୁ ଦେଖିବାର ଆନନ୍ଦ କେବଳ ଶାଶୁ ହିଁ ଜାଣେ । ସେ

ମୁଣ୍ଡରେ ଓଢ଼ଣା ଟିକେ ଟାଣି କହିଲେ—ଟିକେ କ'ଣ ଖାଇଲେ ପେଟଟା ଏମିତି କଷ୍ଟ ହେଉଛି ଯେ ଜଣା ପଡୁଛି, ପେଟଟା କିଏ ଛୁଣ୍ଡେଇ ନେଉଛି। ହିନସ୍ତା ଏଇ ପେଟର ଯନ୍ତ୍ରଣା। ପେଟକୁ ହାତରେ ଚପିଧରିବା ଛଡ଼ା ମୋର ଆଉ ଉପାୟ ନାହିଁ।

ମନସୁଖ କଲ୍ୟାଣୀଙ୍କୁ ପରୀକ୍ଷା କରି ଗମ୍ଭୀର ଭାବେ ପ୍ରଶ୍ନ କଲେ—ଅଚ୍ଛା ବୋଉ, ଆପଣ କେଉଁଠି ଯନ୍ତ୍ରଣା ଉପଲବ୍ଧି କରୁଛନ୍ତି ?

ଉପର ତଳପେଟରେ। ସବୁବେଳେତ ଆମ୍ବିଳା ହାକୁଛି। ଖାଇସାରିଲେ ଛାତି ପୋଡୁଛି।

ଖାଇବାକୁ ଇଚ୍ଛା ହେଉନି ?

ନା।

ବ୍ଲଡ୍ ଭମିଟିଙ୍ଗ୍ କେବେ କଲେ ?

ନମିତା କହିଲା—କାଲି।

ମୁଁ ଯାହା ଭାବୁଛି, ଗ୍ୟାଷ୍ଟ୍ରିକ୍ ଅଲସର୍ ହୋଇଥାଇପାରେ। ଭଗବାନ ନକରନ୍ତୁ, କାର୍ସିନୋମା ଆଡ଼କୁ ଯେପରି ଗତି ନକରୁ। ଆପଣ ଏତେ ଦୁର୍ବଳ ହୋଇଗଲେଣି, ଅଥଚ ମୋ ପାଖକୁ ଖବର ଦେଇନାହାନ୍ତି ?

ବୋଉର ପେନ୍ ଅକେଜନାଲ୍ ଥିଲା। ମୁଁ ଭାବୁଥିଲି, ହୁଏତ ବାଜେ କାରଣରୁ ଏପରି ପେନ୍ ହେଉଛି। ନମିତା କହିଲା—କିନ୍ତୁ ପେନ୍‌ଟା ବେଳକୁ ବେଳ ଯେପରି ବଢ଼ିଉଠିଲା—ମୁଁ ଭାବିଲି ଗ୍ୟାଷ୍ଟ୍ରିକ୍ ଅଲ୍‌ସର୍ ବୋଧହୁଏ।

ହଁ ସେୟା। ତେବେ ଏହା ପୂର୍ବରୁ ବେରିୟମ୍‌ମିଲ୍ ଏକ୍ସରେ କରିବା ଦରକାର। ହୁଏତ ଯଦି ଦରକାର ପଡ଼େ, ତେବେ ଅପରେସନ୍ ମଧ୍ୟ ହୋଇପାରେ।

'ବାପା···? ବିପ୍ରଚରଣଙ୍କ ଗଳାରେ ଭୟ।

ଆପଣ ନିଶ୍ଚିନ୍ତ ହୁଅନ୍ତୁ ଆଜ୍ଞା, ଏ ସବୁ ଅପରେସନ୍‌ରେ ବିଶେଷତଃ ମୋ ହାତରେ, ବିଶେଷ ଚିନ୍ତା କରିବାର କିଛି ନାହିଁ।

କଲ୍ୟାଣୀ ଆତଙ୍କିତ ହୋଇଥିଲେ। କିନ୍ତୁ କହିଲେ—ଜୋଇଁ ମୋର ବଡ଼ ଡାକ୍ତର, ଝିଅ ମଧ୍ୟ ଡାକ୍ତରୀ ପଢୁଛି। ମୁଁ ଡରୁନନ' ବାପା। କିନ୍ତୁ ଯେତେ ଯାହା ହେଲେ ବି ଅପେରେସନ୍ ସବୁବେଳେ ହିଁ ଅପେରେସନ୍।

ଆପଣ ସେ ସବୁ ଚିନ୍ତା କରନ୍ତୁ ନାହିଁ । ଆପଣଙ୍କର ସ୍ୱାସ୍ଥ୍ୟକୁ ଦେଖିବା ମୋର ପ୍ରଥମ କର୍ତ୍ତବ୍ୟ । କାଲି ଆପଣ ସକାଳୁ ହସ୍‌ପିଟାଲକୁ ନମିତାଙ୍କ ସାଥୀରେ ଆସନ୍ତୁ । ମୁଁ ସେଠାରେ ଆପଣଙ୍କୁ ଭଲ ଭାବରେ ପରୀକ୍ଷା କରିବି ଏବଂ ସେଠାରେ ଯାହା ସିଦ୍ଧାନ୍ତ କରିବି, ସେଇ ଅନୁସାରେ ହିଁ ଚିକିତ୍ସା କରାହେବ ।

କଲ୍ୟାଣୀ ବିପ୍ରଚରଣଙ୍କୁ ଅନାଇଲେ । ବିପ୍ରଚରଣ କହିଲେ ହଁ କାଲି ମୁଁ ବି ଯିବି ହସ୍‌ପିଟାଲ ଏମାନଙ୍କ ସାଥିରେ ।

ମନସୁଖ କହିଲେ—ତାହାହେଲେ ମୁଁ ଆସୁଛି ।

ପେଟର ଯନ୍ତ୍ରଣାକୁ ଭୁଲିଯାଇ କଲ୍ୟାଣୀ ହସି ହସି କହିଲେ— ଆରେ, ଏଇମିତି ଖାଲି ଖାଲି ହାତ ନଧୋଇ ବୁଲିଯିବ ବାପା ? ହଇରେ ହେ ରାନୁ, କ'ଣ ଆଣିଲୁ ?

ମନସୁଖ କହିଲେ—ମୁଁ ତ ପ୍ରାୟ ଅଡ୍‌ଟାଇମ୍‌ରେ ଖାଏ ନାହିଁ, କାରଣ ଏପରି ଖାଇବାରେ ମୁଁ ଭଲଭାବେ ଜାଣେ ଯେ, ଏହା ସ୍ୱାସ୍ଥ୍ୟ ପ୍ରତି ଅତ୍ୟାଚାର ।

ବିପ୍ରଚରଣ ମୃଦୁ ହସିଲେ । ନମିତା କିଛି କହିଲା ନାହିଁ । କଲ୍ୟାଣୀ କିନ୍ତୁ ଏଥିରେ ଟଳିବାର ପାତ୍ରୀ ନୁହନ୍ତି । ସେ କହିଲେ—ମୁଁ କିଛି ଶୁଣିବିନି ବାପା, ଏ ବୁଢ଼ୀ ମା'ଟା ଯେ, ତା' ପୁଅ କେମିତି ଟିକେ ଖାଇବ, ସେଥିପାଇଁ ଚାହିଁ ବସିଛି ।

ମନସୁଖ ହସିଲେ, ଏବଂ ନମିତାକୁ ଚାହିଁଲେ । ସେ ଦେଖିଲେ ନମିତା ତାଙ୍କ ସାଥୀରେ ଆଖି ମିଳେଇ ହସୁଛି ।

ଏହି ସମୟରେ ରାନୁ ଜଳଖିଆ ପ୍ଲେଟ ଧରି ସମ୍ମୁଖରେ ଆସି ଠିଆ ହେଲା, ଏବଂ ଟେବୁଲ୍ ଉପରେ ପ୍ଲେଟ୍ ଥୋଇ ନମସ୍କାର କଲା ।

ମନସୁଖଙ୍କର ଆଖି ଦପ୍ କରି ଜଳି ଉଠିଲା—ଆରେ, ଏଇ ତାହା ହେଲେ ରାନୁ । ଆରଥର ସେ ଏଇ ଝିଅକୁ ଦେଖି ନ ଥିଲେ । ଝିଅଟା ପୁଣି ଏତେ ସୁନ୍ଦର ହେଇପାରେ ? ଗୋଡ଼ରୁ ମୁଣ୍ଡଯାଏ, ମୁଣ୍ଡରୁ ଗୋଡ଼ଯାଏ ତାଙ୍କର ଆଖି ପହଁରି ଆସିଲା ରାନୁ ଦେହରେ । ଆଃ··· ଝିଅଟାର ଦେକଡଲେ ଝୁଲୁଛି ମସ୍ତ ଏକ ଖୋସା । ତା'ର ମାଛଭଳି ନୟନରୁ ଝରୁଛି ଯେମିତି ଗୁଡ଼ାଏ ରସାଳ କବିତାର ମଧୁରତମ ଭାଷା ।

ମନସୁଖଙ୍କର ଜ୍ୱଳନ୍ତ ଚାହାଣୀରେ ରନ୍ତୁର ସାରା ଦେହଟା ପୋଡ଼ି ଉଠିଲା । ଆରେ—ସେ ଏମିତି ତାକୁ କାହିଁକି ଚାହୁଁଛନ୍ତି ? ଏମିତି ତ ସୁବୋଧ କେବେ ଚାହିଁ ନାହାନ୍ତି ତାକୁ ? ସୁବୋଧର ଆଖି ନିଶାହର ଆଖି, କିନ୍ତୁ ମନସୁଖଙ୍କର ଆଖି ସିଂହର ଶାଣିତ ଆଖି । ରନ୍ତୁ ଶିହରି ଉଠିଲା । ଏ ଆଖିର ରୋଜମୁନବସା' କଣ୍ଟ ଧାର ଯେପରି ତା'ର ଛାତିକୁ ଚିରି ଦଉଛି । ସାରା ଦେହକୁ ଲହୁ ଲୁହାଣ କରି ଦଉଛି ।

ମନସୁଖ ଜଳଖିଆ ଖାଉ ଖାଉ ଦେଖିଲେ—ରନ୍ତୁ ଚାଲିଯାଇଛି । ତା'ର ପାଦ ଚାଲିବାରେ ଗୁଡ଼ାଏ ଗୀତଛନ୍ଦ, କଟି ଦୋଳନରେ ଗୁଡ଼ାଏ ଭଙ୍ଗପ୍ରବଣତା । ରନ୍ତୁର ଖୋସା ଉପରେ ମନସୁଖଙ୍କର ଆଖି ଲାଗି ରହିଥିଲା । ରନ୍ତୁର ଖୋସାଟା କେଶର ଭାରରେ ଅଧା ଫିଟି ଉପରକୁ ଝୁଲିପଡ଼ିଛି । ଶିଥିଳ ବନ୍ଧନ । ଅର୍ଦ୍ଧମୁକ୍ତ ।

ନମିତା ଦେଖିଲା ଈର୍ଷାକ ଚକ୍ଷୁରେ ବେଳେ ବେଳେ ରନ୍ତୁକୁ ଏଇ ମନସୁଖ ଚାହିଁ ରହିଛନ୍ତି । ନମିତା କ୍ଷୁଣ୍ଣ ହେଲା । ମନସୁଖଙ୍କର ବୋଧହୁଏ ରନ୍ତୁକୁ ଦେଖିବାପାଇଁ ମନସୁଖ । ଅରକ୍ତରେ ନମିତା ଝରକା ଆଡ଼କୁ ଚାହିଁଲା ।

ରନ୍ତୁ ଏହା ଭିତରେ ପୁଣି କଫି ଆଣି ଦେଇଛି ।

ମନସୁଖ କଫି ଖାଉ ଖାଉ ଝରକାଆଡ଼କୁ ଆଖି ବୁଲାଇ ଦେଲେ । ଝରକାର ଫାଙ୍କ ଦେଇ ଦିଶୁଛି ସେଇ ବଡ଼ ପିଜୁଳିଗଛଟା । ବୁଡ଼ିଯାଉଥିବା ସୂର୍ଯ୍ୟ କିରଣର ନାଲିମା ପ୍ରତ୍ୟେକ ପିଜୁଳି ପତ୍ରରେ, ପ୍ରତ୍ୟେକ ଫଳରେ । ସୂର୍ଯ୍ୟର ଏଇଶେଷ କିରଣରେ ଗଛଟା ଆଶ୍ଚର୍ଯ୍ୟଜନକ ଭାବେ ସୁନ୍ଦର ଦିଶୁଛି ।

ମନସୁଖ କହିଦେଲେ ଆତ୍ମବିସ୍ମୃତ ହୋଇ—ବାଃ..., ଖୁବ୍ ସୁନ୍ଦର ଏ ପିଜୁଳିଗଛଟା !

ସମସ୍ତଙ୍କର ଆଖି ପିଜୁଳି ଗଛରେ ସୀମାବଦ୍ଧ । କଲ୍ୟାଣୀ ବଡ଼ ପାଟିଟାଏ କରି କହିଲେ—ଆଲୋ ଖୁଣ୍ଟଟା ପରି ଠିଆ ହୋଇଛୁ କାହିଁକି ଲୋ ରନ୍ତୁ, ଯାଆ ବାଛି ବାଛି ଦି'ଟା ପିଜୁଳି ତୋଳି ଆଣ । ଏ ପିଜୁଳି ମିଠାରେ ବାପା ଏକଦମ୍ ଫାଷ୍ଟ୍, ମାନେ ଏତେ ସୁନ୍ଦର ଏବଂ ଏତେ ମାଂସଳ ଯେ ଖାଇଲେ ତୁମେ ଆଶ୍ଚର୍ଯ୍ୟ ହେବ ।

ମନସୁଖ ହସିଲେ ।

ବିପ୍ରଚରଣ କହିଲେ—ଯେଉଁଦିନ ଏ ଗଛକୁ ମୁଁ ଏଠାରେ ଲଗାଇ ଥିଲି, ଭାବି ନଥିଲି ଯେ ଏ ଗଛ ଦିନେ ଏମିତି ଫଳଫୁଲରେ ଭରି ଦେଇଯିବ, ତା'ର ଫଳ ଏତେ ମଧୁର ହେବ । କିନ୍ତୁ ଗଛଟା ପ୍ରକୃତରେ ହିଁ ମୋର ଭାବନାକୁ ଓଲଟ ପାଲଟ କଲା । ଆମ ଘରର ଗଛଟା ଏକ ପ୍ରଧାନ ଆକର୍ଷଣ ବାପା । ଯେ ଆସନ୍ତି, ଏ ପିଜୁଳି ଗଛଟାକୁ ଦେଖିବାକୁ କେବେ ଭୁଲନ୍ତି ନାହିଁ, ତା'ପରେ ପଦେ ଦି'ପଦ ବି ଆଲୋଚନା ଏ ଗଛ ସମ୍ପର୍କରେ କରିବାକୁ ଛାଡ଼ନ୍ତି ନାହିଁ । ଗଛଟିର ପତ୍ରେ ପତ୍ରେ ଯେପରି ବସନ୍ତ ସବାବେଳେ ହିଁ ଲଗିରହିଛି ।

ଗୋଟାଏ ପ୍ଲେଟରେ ରାଜୁ ପାଚିଲା ପିଜୁଳି କାଟି ଆଣି ଥୋଇଲା ମନସୁଖଙ୍କର ନିକଟରେ । ଆଗ୍ରହରେ ପିଜୁଳିକୁ ପାଟିକୁ ନେଇ ମନସୁଖ ରାଜୁର ମୁହଁକୁ ଚାହିଁଲେ ।

ରାଜୁ ମୁହଁ ତଳକୁ କଲା ।

ଖାଇସାରି ମନସୁଖ କହିଲେ—ତାହାହେଲେ ମୁଁ ଆସୁଛି । ଆପଣ କାଲି ଯିବେ । ମୁଁ ଅପେକ୍ଷା କରିଥିବି ।

ତା'ପରଦିନ କଲ୍ୟାଣୀ, ବିପ୍ରଚରଣ, ନମିତା ସହିତ ହସ୍‌ପିଟାଲ ଯାଇଥିଲେ ।

ରାଜୁ ଗଲାବେଳେ ଠାକୁରଙ୍କୁ ଡାକିଥିଲା, ପ୍ରଭୁ ଯାହାହେଉ ପଛେ ଅପରେସନ୍ ଯେମିତି ନହେଉ । ବୋଉ ଯେମିତି ଭଲରେ ଭଲରେ ଫେରି ଆସନ୍ତୁ ।

ଏକ୍ସ'ରେ କରି ଯେତେବେଳେ ମନସୁଖ ଦେଖିଲେ, ସେ ନମିତାକୁ କହିଲେ . ଦେଖ ନମିତା, ବୋଉଙ୍କର ଅପରେସନ୍ ଛଡ଼ା ଅନ୍ୟ କିଛି କରିବାର ନାହିଁ । ଯେତେ ଚଞ୍ଚଳ ଅପରେସନ୍ କରାହେବ, ସେତେ ଭଲ ।

ବିପ୍ରଚରଣ ଏକଥା ଶୁଣି ଟିକେ ଚିନ୍ତିତ ହେଲେ । କିନ୍ତୁ ମଦନ-ସୁଖଙ୍କ କଥା ତ ମାନିବାକୁ ପଡ଼ିବ । ସେ ନିଜର ଲୋକ, ତା'ଛଡ଼ା ଖୁବ୍ ଭଲ ସର୍ଜନ ମଧ୍ୟ ।

କଲ୍ୟାଣୀଙ୍କର କାଲି ଅପରେସନ୍ ହବ । କଲ୍ୟାଣୀ ରକ୍ତ ଦେଇ ସାରିଛନ୍ତି, କିନ୍ତୁ ଭୀଷଣ ଦୁର୍ବଳ ।

କଲ୍ୟାଣୀଙ୍କର ଘରେ ଏଇ ଅନୁପସ୍ଥିତି ସନୁକୁ ଭୀଷଣ ବ୍ୟଥିତ କରୁଥିଲା । ଏଇ ଘରେ ମୂର୍ତ୍ତିମନ୍ତ ଲକ୍ଷ୍ମୀ ଯେ କଲ୍ୟାଣୀ ଏବଂ ତାଙ୍କର ଅବର୍ତ୍ତମାନରେ ଡାକ୍ତରଖାନା । ଗୃହିଣୀରେ ଘରର କୋଳାହଳ, ଘରର ଜୀବନ, ଘରର ସାବଲୀଳ ଛନ୍ଦ, ହସ ଲୁହ, ଖୁସୀ ଲୁହ, ସମସ୍ତଙ୍କର ନିଶ୍ଚିନ୍ତ ବେପରୱା, ସ୍ଫୁର୍ତ୍ତି, ଆନନ୍ଦ ଯେ ଲିଭିଯାଇଛି, ଏକଥା ସନୁର ହୃଦୟରେ ଗଭୀର ରେଖାପାତ କରିଥିଲା ।

ଘରେ କେହି ବଡ଼ ନାହାନ୍ତି । ବାପା ତ ପ୍ରାୟ ସବୁବେଳେ ମେଡ଼ିକାଲ୍‌ରେ, ନମିଅପା ତ ମେଡ଼ିକାଲ୍‌ରେ, ଅନି ସ୍କୁଲକୁ ଯାଉଛନ୍ତି, କେବଳ ସନୁ ଓ ବୁଢ଼ା ।

ସମସ୍ତେ ପାଠ ପଢ଼ିଛନ୍ତି । ସମସ୍ତେ ଡାକ୍ତର ମଦନସୁଖଙ୍କର କଥା ବୁଝୁଛନ୍ତି, ଔଷଧ ପ୍ରେସକ୍ରିପସନ ବୁଝୁଛନ୍ତି ଏବଂ ଏଥିପାଇଁ ବିଶେଷ ଚିନ୍ତା କରିପାରୁ ନାହାନ୍ତି ; କିନ୍ତୁ ସନୁଟା ମୂର୍ଖ । ସନୁ ପାଠ ପଢ଼ିକି ସେ କେବଳ ଭାବୁଛି ମଣିଷ ଦେହ ଉପରେ ଛୁରୀର ଭୟାବହତା । ପେଟ ଚିରା ହବ । ଶିରାପ୍ରଶିରା ବାହାରି ପଡ଼ିବ । ଅନ୍ତବୁଜୁଳା ବାହାରି ପଡ଼ିବ । ବୋହିଯିବ ଗୁଡ଼ାଏ ରକ୍ତ, ଆଉ ମୋର ଅପରେସନ୍ ଟେବୁଲ୍ ଉପରେ ବୋଉ ସଂଜ୍ଞାହୀନ ହୋଇ ପଡ଼ିବେ, ଲମ୍ବା—ଯନ୍ତ୍ର - ଯନ୍ତ୍ର—

ଠାକୁରେ, ବୋଉ ଆହା ତା'ର ସେଇ ବୋଉ, ଯେ'କି ପ୍ରତି କଥାରେ ସନୁ ସନୁ ଡାକନ୍ତି, ସନୁ ତାଙ୍କର ଯେପରି ସର୍ବସ୍ୱ, ସନୁ ବିନା ତାଙ୍କର କୌଣସି କାମ ଚଳେନା, ସେଇ ବୋଉଙ୍କୁ ଠାକୁରେ ତୁମେ ଭଲରେ ଭଲରେ ଡାକ୍ତରଖାନାରୁ ଫେରାଇ ଆଣ ।

ଏଇଠି ବସି ସେ ପାନ ଘଷୁଥିଲେ । ଏଇଠି ବସି ସେ ଗୁ' ଖାଉଥିଲେ । ଏଇଠି ବସି ସେ ପଙ୍ଖା ଖାଉଥିଲେ । ଏଇଠି ବସି ସେ ଘରର ହାଲଚାଲ ତଦାରଖ କରୁଥିଲେ । ତାଙ୍କର ପାଟି, ତାଙ୍କର ମୋଟା ଦେହର ଘଷର ଘଷର ଶବ୍ଦ, ତାଙ୍କର ବାହୁଏ ସୁନା ଚୁଡ଼ିର ରୁଣୁଝୁଣୁ ଶବ୍ଦ, ତାଙ୍କର ହସ, ତାଙ୍କର ନିର୍ଦ୍ଦେଶ ସବୁ ଯେମିତି ଘରଟା ସାରା ସେଇ—ସେଇପରି ହିଁ ପୂରି ରହିଛି ।

ଅଥଚ—ଅଥଚ ସେ ନାହାନ୍ତି । ସେ ଡାକ୍ତରଖାନାର ଲୁହା ଖଟଟା ଉପରେ ପଡ଼ି ରହି ଆସନ୍ତାକାଲିର ଶୀତଳ ଛୁରୀ, ଶୀତଳ ଷ୍ଟିରିଟ ଏବଂ ଯାବତୀୟ ଷ୍ଟେରିଲାଇଜଡ଼ ଅସ୍ତ୍ରକୁ ଅପେକ୍ଷା କରିଛନ୍ତି ।

ଆହା···ବୋଉ !

ଗନ୍ଧୁ କାତର ଆଖିରେ ଚାରି ଦିଗକୁ ଚାହିଁଲା । ଶୂନ୍‌ଶାନ୍ ଘର । ଶୂନ୍‌ଶାନ୍ କାନ୍ଥବାଡ଼ । ଶୂନ୍‌ଶାନ୍ ଅଗଣା ବଗିଚା । ଶୂନ୍‌ଶାନ୍ ହିଁ ସବୁ । ଉଃ···କେତେ ଯେ ଏଇ ଶୂନ୍‌ଶାନ୍ । ପିଞ୍ଜରା ଭିତରେ ଶାରୀ ଥକ୍‌କାମାରି ଶୋଇ ପଡ଼ିଛି । ଗୁହାଳ ଭିତରେ ଗାଈଟା ବାଛୁରୀଟା ଦୁହେଁଇ ଶୋଇ-ପଡ଼ିଛନ୍ତି । କୁକୁରଟା ଘରର ଦୁଆରବନ୍ଧ ପାଖରେ ପେଟତଳେ ମୁହଁ ପୂରାଇ ଶୋଇ ପଡ଼ିଛି । ପୁଷିଟା ବି କୋଉଠି ଶୋଇଥିବ ।

ବୁଢ଼ାଟା ନାଇଁ, ସମସ୍ତଙ୍କ ସାଥିରେ ଡାକ୍ତରଖାନା ଯାଇଛି ।

ଏଡ଼େ ବଡ଼ ଘରଟାରେ କେବଳ ହିଁ ଗନ୍ଧୁ ।

ଏ ନିର୍ଜନ ଗୁମ୍‌ସୁମ୍ ବାତାବରଣ ଭିତରେ ଗନ୍ଧୁ ଚଞ୍ଚଳ ହୋଇଉଠିଲା ।

କାଲି ଅପରେସନ୍ ।

ବୋଉ···ବୋଉ !

ଗନ୍ଧୁର ଆଖିରୁ ଦୁଇଟି ଅଶ୍ରୁର କଣିକା ଝରିପଡ଼ିଲା । ତା'ର ଇଚ୍ଛା ହଉଥିଲା ଧାଇଁ ଯାଇ ବୋଉଙ୍କ ଫଟୋ ଧରି କାନ୍ଦବ—ଭୋ' ଭୋ' କାନ୍ଦବ; ଆଉ କହିବ—ବୋଉ ତମେ ଫେରିଆସ ବୋଉ ! ପୁଣି ଆସି ଥରେ ଭଲ ଗନ୍ଧୁ—ଗନ୍ଧୁ ଡାକ । ତୁମର ପାଟିର ପଦେ ଗନ୍ଧୁ ଡାକ ଶୁଣିବାକୁ ମୁଁ ଚାହିଁରହିଛି ଦିନ ଦିନ ଅପେକ୍ଷା କରି । ସେଇ ଡାକ, ସେଇ

ଉଚାଟଚଡା ଡାକ ତ ମୋର ହୃଦୟରେ ଶୀତଳ ଗଙ୍ଗାର ସ୍ପର୍ଶ ଆଣେ ବୋଉ୍. ସେଇ ପଦେ ଡାକ ଶୁଣିବାପାଇଁ ମୁଁ ଅଧୈର୍ଯ୍ୟ ହୋଇ ରୁହିଁ ରହୁଛି ।

ଗାନୁ ଗୋଟେଇ ସାରିଥିଲା । କିନ୍ତୁ ତ କାମ ନାହିଁ ! ଆଜି ଚଞ୍ଚଳ ଗୋଟେଇ ସରି ଯାଇଛି । ବାପା, ଅପା ପ୍ରଭୃତି ବର୍ତ୍ତମାନ ଆସି ପହଞ୍ଚିବେ, ତାଙ୍କୁ ସେ ଖାଇବାକୁ ଦେବ ।

କିନ୍ତୁ ସୁବୋଧବାବୁ ଖାଉଛନ୍ତି କ'ଣ ?

ତା'ର ସୁବୋଧବାବୁ ସେ !

ସେ ଖାଉଛନ୍ତି କ'ଣ ? ସମସ୍ତଙ୍କ ପାଇଁ ରାନ୍ଧି ବାଢ଼ି ସମସ୍ତଙ୍କୁ ଖାଇବାକୁ ଦେଇଛି । ସମସ୍ତଙ୍କ ପ୍ରୀତି ସୁଆଦ, ପେଟର ଭୋକ ବୁଝିଛି । ଭାତ, ଡାଲି, ତରକାରୀ କଥା ଛାଡ଼, ମାଛ ମାଂସ, କ୍ଷୀର—ପୁରି, ପିଠା —ପଣା ସବୁ ତିଆରି କରିଛି ନିଜ ହାତରେ, କିନ୍ତୁ ହତଭାଗ୍ୟ ସୁବୋଧ ପାଇଁ କ'ଣ ଦିନେ ସେ ଗିନାଏ ତରକାରୀ ଦେଇପାରିଲା ? ସୁବୋଧଟା ଖାଉଛି କ'ଣ ? ମରଦପୁଅ ହୋଇ ନିଜେ ହାତରେ ଗୋଟେଇ କରି ଖାଉଛି କ'ଣ ? ଭାତ, ଡାଲି, ଆଳୁଭରତା ଛଡ଼ା ସେ ଆଉ କ'ଣ ଖାଉଥିବ ? କୋଉ ଦିନଠୁ ରୁହୁଁଛି ଥାଳିଆଏ ତରକାରୀ ପଣତ କାନିରେ ଘୋଡ଼ାଇ ନେଇ ସୁବୋଧର ଖାଇବା ଥାଳି ପାଖରେ ଥୋଇଦେବ, କିନ୍ତୁ କେବେ କରି ପାରିନ । କରିବ ବା କେମିତି ? ବୋଉଙ୍କୁ ନ ପଚାରି ସେ ଗୋଷାଇଘରୁ ତରକାରୀ ନବ ବା କେମିତି ? ସେତ ଚୋରଣୀ ନୁହେଁ ।

ବାବୁଟା ବି ସେମିତି । ସେ ଭାବେ ସମସ୍ତେ ଖାଆନ୍ତୁ—ପିଅନ୍ତୁ, ସମସ୍ତେ ଖୁସି ଆନନ୍ଦରେ ମାତି ଉଠନ୍ତୁ । ସମସ୍ତେ ନିଜେ ନିଜକୁ ଭୁଲି ଯାଆନ୍ତୁ ।

କିନ୍ତୁ -- କିନ୍ତୁ ସେ ? ସେ ନିଜେ ?

ଛାଡ଼ ।

ସୁବୋଧଙ୍କର ଓ. ଏ. ଏସ୍. ପରୀକ୍ଷା ଚାଲିଛି । ଇଂରେଜୀ ଅନର୍ସର ପିଲା ସେ, ଇଂରାଜୀର ସବୁତକ ପରୀକ୍ଷାରେ ଆଶାତୀତ ଭାବେ ଭଲ କରିଛନ୍ତି । ହୁଏତ ସେ ଏ ବିଷୟରେ ସମସ୍ତଙ୍କଠାରୁ ଭଲ ଭାବରେ ନମ୍ବର ରଖିବେ । ତା'ପରେ—ତା'ପରେ—? ଗାନୁ ଆଉ ଭାବି ପାରିଲା ନାହିଁ । ତା'ପରେ ହୁଏତ ଚେନ୍ ବଦଳିବରେ ହାରଟା—

ରନୁ ଝରକା ଫାଙ୍କ ଦେଇ ସୁବୋଧର ଘରକୁ ଚାହିଁଲା । ସୁବୋଧବାବୁଙ୍କ ଘରେ ମିଞ୍ଜି ମିଞ୍ଜି ଆଲୁଅ ଜଳୁଛି । ସୁବୋଧବାବୁ ବର୍ତ୍ତମାନ ଖଟଟା ଉପରର ଚକଆଁକାରେ ମୁହଁଟାମାଡ଼ି ବହି ପଢ଼ି ଚାଲିଥିବେ । ବହିର ପ୍ରତ୍ୟେକ ଧାଡ଼ି ମନେରଖିବାକୁ ଚେଷ୍ଟା କରୁଥିବେ । ସେଠି କିନ୍ତୁ କାହିଁ ରନୁ ? କାହିଁ ରନୁର ଚିନ୍ତା ?

ରନୁ ଦୀର୍ଘଶ୍ୱାସ ଛାଡ଼ିଲା ।

ଭଗବାନ, ଜୀବନରେ ମୁଁ ତୁମକୁ କେବେ କିଛି ମାଗିନି । କେବେ ତୁମଠାରେ ଅଳି ପଦେ ବି କରିନି । ମୋର ଜୀବନରେ ତ ଅଭାବ କିଛି ନାହିଁ ପ୍ରଭୁ; ଜୀବନରେ କେବେ ଦୁଃଖ ନାହିଁ । କିନ୍ତୁ ଆଜ ବହୁତ ଅଭାବ ପଡ଼ୁଛି, ବହୁତ ଦୁଃଖ ହେଉଛି । ତମେ ବୋଉକୁ ଭଲ କର ଆଉ ସୁବୋଧକୁ ପରୀକ୍ଷାରେ ପାଶ୍ କରାଅ ।

ରନୁ ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲା ।

ଏହି ସମୟରେ ଦାଣ୍ଡ ପାଖରେ ପାଟି ତୁଣ୍ଡ ଶୁଣିପାରିଲା ରନୁ । ବାପା, ଅପା ପ୍ରଭୃତି ଫେରି ଆସିଲେଣି ବୋଉଙ୍କ ପାଖରୁ । କାଲି ଅପରେସନ୍ । ବାପା, ଅପା ବୋଉଙ୍କ ମନରେ ବଳ ଦେଇ ଫେରି ଆସିଲେଣି ।

ସେ କ'ଣ ବୋଉକୁ ଦେଖିବନି ?

କାଲି ଯାଇ ନଥିଲା ବୋଉଙ୍କୁ ଦେଖିବାପାଇଁ । ଘରେ ତ ସଦା ବେଳେ କାମ । ତା ଛଡ଼ା ବୋଉ ନାହାନ୍ତି । କାମ ବଢ଼ିଲେଇ ପଡ଼ୁଛି । ଦାୟିତ୍ୱ ବଢ଼ିଲେଇ ପଡ଼ୁଛି । ଚିନ୍ତା ବଢ଼ି ବଢ଼ିଯାଉଛି । ବଜାର ସଉଦାଠାରୁ ପାନ ପରିବା କଥା ସବୁ ନିଜେ ନିଜେ ବୁଝିବାକୁ ପଡ଼ୁଛି । କାହିଁ ସମୟ ଯେ ସେ ତାର ବୋଉଙ୍କୁ ଦେଖିବାପାଇଁ ଯିବ ?

ବୋଉ କ'ଣ ତାକୁ ଖୋଜୁ ନାହାନ୍ତି ?

ଚିନ୍ତିତ ଭାବେ ଘରକୁ ପଶି ଆସିଲେ ବିପ୍ରଚରଣ, କହିଲେ—ରନୁ ଡାକ୍ତରଖାନା ଯିବୁ କି ?

ରନୁ କହିଲା—ହଁ । ହଁ ।

ନର୍ମଦା ପଚାରିଲା—କ'ଣ ଖୋଇ ଦାଶ ଦେଇଛୁ ?

ହିଁ ସବୁଠ ସାରି ହେଇଛି । କେବଳ ତୁମମାନଙ୍କ ଅପେକ୍ଷାରେ ବସିଥିଲି ।

ଆଚ୍ଛା, ଗୋଷାଇ ସନ୍ଧ ସରି ଯାଇଛି, ତାହା ହେଲେ ମା' ଙ୍କୁ ଯାଆ । ଚଞ୍ଚଳ ଫେରି ଆସିବୁ । ବସ୍ତଚରଣ କହିଲେ ।

ଗବୁ କହିଲା—ତାହାହେଲେ ଯାଉଚି ବାପା !

କ'ଣ ଏଇମିତି ଯିବୁ ?

କାହିଁକି ?

ଆରେ, ଭଲ ଲୁଗାପଟା ନ ପିନ୍ଧି ଏଇମିତି ଯିବୁ ?

ଗବୁ ନିଜର ଲୁଗାକୁ ଚାହିଁ ହସି ହସି କହିଲା—ଇଏ କ'ଣ ମନ୍ଦ ହେଇଛି ଅପା ? କାହିଁ ନାହିଁ ତ ! ଏଇ ମୋର ଚଳିଯିବ । ତା' ଛଡ଼ା କୋଉ ସୁଖରେ ବୋଉଙ୍କୁ ଦେଖିବାକୁ ଯିବାକୁ ଲୁଗାପଟା ପିନ୍ଧି ବେଶ ହେଇ ଯିବ ଯେ ?

ଗବୁ ତରତରରେ ବାହାରି ଗଲା ।

ନର୍ସିଂ ହୋମ୍ । ରିକ୍ସାରୁ ଓହ୍ଲେଇ ପଡ଼ି କଲ୍ୟାଣୀଙ୍କ ନିକଟକୁ ଗଲା । କଲ୍ୟାଣୀ ଶୋଇଛନ୍ତି ।

ବୋଉ !

କିଏ ? ଗବୁ ? କଲ୍ୟାଣୀ ଆଖି ଖୋଲିଲେ ।

ଗବୁ କଲ୍ୟାଣୀଙ୍କୁ ଚାହିଁ ବ୍ୟସ୍ତ ହେଇ ଉଠିଲା ।

ଏ ଦାରୁଣ ଭୟାନକ ରୋଗ କେତେ ହତଶ୍ରୀ, ମ୍ଳାନମାନ କରି ଦେଇନାହିଁ ବୋଉଙ୍କୁ ? ଡାକ୍ତରଖାନାର ବେଡ୍ ଉପରେ ବୋଉଙ୍କର କ୍ଷୀଣ ଦୁର୍ବଳ ଶରୀରଟା ପୂରା ଲାଗି ରହିଛି । ଏଡ଼େ ବଡ଼ ବୃଷାଳ ଶରୀର ଚାହୁଁ ଚାହୁଁ ଦିନ କେତେଟାରେ କ୍ଷୀଣ ହେଇଗଲା । ଆଜି ଅସ୍ଥି କଙ୍କାଳ । ମୁହଁ ଶୁଖିଯାଇଛି । ହାତଗୋଡ଼ ଶୁଖିଯାଇଛି । ମୁହଁରେ ହନୁହାଡ଼ ବାରି ହେଇ ପଡ଼ୁଛି । ହାତ ଗୋଡ଼ରେ ଶିରମାନ ଦଉଡ଼ି ପରି ଦିଶୁଛି । ବାଳ ମୁକୁଳା ହେଇ ତକିଆ ଉପରେ ବିଛୁଡ଼ି ପଡ଼ିଛି । ସେ ଚୁପ୍ ଚାପ୍ ନିର୍ଜୀବ ପରି ବିଛଣାଟାରେ ଶୋଇରହିଛନ୍ତି କାଲକାର ଅନିଶ୍ଚିତତାକୁ, କାଲିର ଭୟାବହତାକୁ ଅପେକ୍ଷା କରି ।

କାଳର ଭୟାବହତା !

କାଲି ସେମାନେ ତାର ଏଇ ବୋଉକୁ ଷ୍ଟ୍ରେଚରରେ ପକାଇ ଅପରେସନ୍ ଘରକୁ ନେଇଯିବେ । ଅପରେସନ୍ ଟେବୁଲ ଉପରେ ଶୁଆଇ ଦେବେ । ନିଶା ଇଞ୍ଜେକସନ୍ ଦେଇଦେବେ । ଆଠ ଦଶଟା ଲୋକ ମୁହଁରେ ମୁଖା ଲଗେଇ, ହାତରେ ରବର ମୁଣି ଲଗେଇ ସଜାଗ ହୋଇ ଉଠିବେ । ପାଟି ଭିତରେ ପୂରାଇଦେବେ ଅମ୍ଳଜାନ ନଳୀ । ହାତରେ ଲଗାଇବେ ରକ୍ତନବାର ନଳୀ । ତାପରେ ସ୍କାଲ୍‌ପ କଇଁଞ୍ଚି, ଛୁରୀର ଖେଳ । ଛୁରୀ କଇଁଞ୍ଚିର ଖେଳ । ସବୁ ଚୁପ୍‌ଚାପ୍ । କିନ୍ତୁ ଗୁଡ଼ାଏ ରକ୍ତ—ନାଲି ଟକ୍ ଟକ୍ ରକ୍ତ—ଉଷୁମ ତାଜା ରକ୍ତ ଆଉ ଗୁଡ଼ାଏ ନାଡ଼ି, ଅନ୍ତବୁଜୁଳା ବୋଉଙ୍କ ପେଟ ଭିତରୁ ବାହାରି ପଡ଼ିବ ।

ଏଇ ଡାକ୍ତରଖାନାକୁ ଆସିବା ଭିତରେ ସେ ଦୁ'ଥର ଓ. ଟି. ଉପରେ ଆଖି ବୁଲାଇ ନେଇଛି । ଦେଖିଛି ଯମଦୂତମାନେ ଟେବୁଲକୁ ବେଢ଼ିଯାଇଛନ୍ତି ।

ରାଜୁ ବିକଳରେ କଲ୍ୟାଣୀଙ୍କୁ ଚାହିଁଲା । କଲ୍ୟାଣୀଙ୍କର ଆଖି ଦୁଇଟିକୁ ଚାହିଁଲା । ବେଦନା, ନୈରାଶ୍ୟ, ଅନିଶ୍ଚିତତାରେ ଆଖି ଦୁଇଟି ଝାପ୍‌ସା ହୋଇଛି ।

କଲ୍ୟାଣୀଙ୍କର ଓଠ ଦୁଇଟି ଥରିବାକୁ ଲାଗିଲା । ସେ କିଛି କହି ପାରୁନଥିଲେ । କିନ୍ତୁ ତାଙ୍କର ଥରିଲା ହାତରେ ରାଜୁର ହାତକୁ ଚାପି ଧରିଥିଲେ । ରାଜୁର ହାତ ଛାଡ଼ିବା'କୁ ତାଙ୍କର ଆଦୌ ଇଚ୍ଛା ହେଉନଥିଲା । କଲ୍ୟାଣୀଙ୍କର ଏପରି ନିବିଡ଼ ଭାବେ ହାତ ଧରିବାରେ ରାଜୁର ହୃଦସ୍ପନ୍ଦନ ଭାଙ୍ଗି ପଡ଼ିଲା । କେହି କାହାକୁ କିଛି କହୁନାହାନ୍ତି । ଘରଟା ସାରା କେବଳ ନୀରବତା । କିନ୍ତୁ ଦୁଇଟି ହାତ ପରସ୍ପରକୁ ଛନ୍ଦି ରହିଛନ୍ତି । ସେ ହାତ ଦୁଇଟି ମା'ର ଓ ଝିଅର । ସତେ ଯେମିତି ସେଇ ସଂଯୁକ୍ତ ହାତର ମାଧ୍ୟମରେ ସେମାନେ ପରସ୍ପର ହୃଦୟର ଭାଷାକୁ ବୁଝିପାରୁଛନ୍ତି । ଆଜି ପ୍ରଥମଥର ବୁଝିପାରୁଛନ୍ତି ।

ରାଜୁର ଆଖିରେ ଅଶ୍ରୁ । ଅଶ୍ରୁର ଧାରା ।

କଲ୍ୟାଣୀ କ୍ଷୀଣ ସ୍ୱରରେ କହିଲେ—ତୁ କାନ୍ଦୁଛୁ ରାଜୁ ? ମୋ ପାଇଁ ତୁ କାନ୍ଦୁଛୁ ? କାହିଁକି କାନ୍ଦୁଛୁରେ ? ତତେ ସବୁବେଳେ ଛିଃ··· ଛିଃ···କରିଛି, ସବୁବେଳେ ମାରଧର କରିଛି, ଅଥଚ ତୁ ସେ ସବୁ ଭୁଲି ମୋ ପାଇଁ କାନ୍ଦୁଛୁ ?

କଲ୍ୟାଣୀ ତାଙ୍କର ଶିଥିଳ ଥରିଲା ହାତରେ ଚାନୁର ଆଖି ପୋଛି-ବାକୁ ଚେଷ୍ଟା କଲେ ।

କଲ୍ୟାଣୀଙ୍କର ଏକଥା ଶୁଣି ଚାନୁର କାନ୍ଦ ବନ୍ଦ ହେଉନଥିଲା, ବରଂ ଦ୍ୱିଗୁଣିତ ହେଇଥିଲା ।

ଆଜ ଯେପରି କଲ୍ୟାଣୀଙ୍କର ଅଲଗା କଥା । ଆଜ ସେ ବୁଝୁଛନ୍ତି ଚାନୁ ତାଙ୍କର ଚାକରାଣୀ ନୁହେଁ, ଚାନୁ ତାଙ୍କର ଝିଅ । ଚାନୁ ମଧ୍ୟ ତାଙ୍କର ଭଲ-ମନ୍ଦରେ ଭାଗୀ ହେଇପାରେ ।

ସେଇ ନୀରବ, ଅଶ୍ରୁକାତର ମୁହୂର୍ତ୍ତକୁ ଓଲଟପାଲଟ କରି ଜୋତା ଠକ୍ ଠକ୍ କରି ଘରଭିତରକୁ ପଶି ଆସିଲେ ଡାକ୍ତର ମନସୁଖ । ସାଙ୍ଗରେ ତାଙ୍କର ତିନ ଚାରିଜଣ ଲୋକ—ନର୍ସ, ହାଉସ୍ ସର୍ଜନ ପ୍ରଭୃତି ।

ଚାନୁ ମନସୁଖଙ୍କୁ ନମସ୍କାର କଲା । ମନସୁଖ ହସି ହସି ତା'ର ନମସ୍କାରର ଉତ୍ତର ଦେଇ କହିଲେ—ତମେ ଚାନୁ ଯେ ? କେତେବେଳେ ଆସିଛ ?

ଏଇ ବର୍ତ୍ତମାନ !

ଭାରି ଭଲ କରିଛ । ଏକଥା କହି ଡାକ୍ତର ମନସୁଖ କାଲ୍ୟାଣୀଙ୍କୁ ବିଭିନ୍ନ ପ୍ରକାର ପ୍ରବୋଧନା ଦେଇ କାଲିର ଅପରେସନ୍‌କୁ ଖାତିର ନକରି-ବାକୁ କହିଲେ । ସାଥିରେ ଯେଉଁ ନର୍ସ ଓ ଆସିଷ୍ଟାଣ୍ଟ ସର୍ଜନମାନେ ଆସିଥିଲେ ସେମାନଙ୍କ ସହିତ ବିଭିନ୍ନ କଥାବାର୍ତ୍ତା ହେବାକୁ ଲାଗିଲେ ।

ଆନାସ୍ଥେସିଷ୍ଟ ସାର୍ଟିଫାଏ କରି ସାରିଲେଣି । ଷ୍ଟୁଲ୍, ଇଉରିନ୍, ବ୍ଲଡ୍ ହିମୋଗ୍ରାମ୍ ରିପୋର୍ଟ ଆସିସାରିଛି । ସ୍ଫିଗ୍‌ମୋ ମନୋମିଟର୍‌ରେ ବ୍ଲଡ୍ ପ୍ରେସାର୍ ନର୍ମାଲ୍ । ଚାରିବୋତଲ ବ୍ଲଡ୍ ଗ୍ରୁପ୍ 'ଓ'ର ଦରକାର ।

ସବୁ ଆଡ଼େ ଗମ୍ଭୀର ବାତାବରଣ ।

ମନସୁଖ ସବୁ ଚାର୍ଟ ଦେଖିବାରେ ଲାଗିଛନ୍ତି ଏବଂ ତାଙ୍କର ସହକାରୀ-ମାନଙ୍କୁ ବିଭିନ୍ନ ପ୍ରକାରର ଆଦେଶ ଦେଉଛନ୍ତି । କଥାବାର୍ତ୍ତା ସରିଲାପରେ ସେ ପୁଣି ଥରେ କଲ୍ୟାଣୀଙ୍କୁ ଉତ୍ସାହିତ କଲେ । ଚାନୁକୁ ପଚାରିଲେ—

ଚାନୁ, ତୁମେ ଯିବ କି ?

ହଁ, ଘରକୁ ଯିବ !

ଆସ, ମୁଁ ତ ଯାଉଛି, ତୁମକୁ କାର୍‌ରେ ନେଇଯିବ ।

ରନୁ କଲ୍ୟାଣୀଙ୍କଠାରୁ ବିଦାୟ ନେଇ ମନସୁଖଙ୍କ ସାଥୀରେ ଆସିଲା ।

- ଟୁପ୍‌ଟାପ୍ ବର୍ଷା ପଡ଼ୁଛି । ଆକାଶରେ ମେଘ ।

କାର୍‌ର ପଛ ସିଟ୍‌ରେ ବସିଲାବେଳକୁ ମନସୁଖ କହିଲେ-- ଆରେ ତୁମେ ପଛରେ ବସୁଛ କାହିଁକି ରନୁ, ଆଗରେ ବସ । ମୋ ପାଖରେ ବସିବାକୁ ଲାଜ କରୁଛ ?

କାଠ ହୋଇ ରନୁ ଆଗ ସିଟ୍‌ରେ ସଙ୍କୁଚିତ ହୋଇ ବସିଲା । ଷ୍ଟିଅରିଂ ଉପରେ ହାତ ପକାଇ ଏକ୍‌ସିଲରେଟର ଉପରେ ପାଦ ଦେଇ କାର୍‌ରଗତି ନିୟନ୍ତ୍ରଣ କରୁଛନ୍ତି ମନସୁଖ । ତାଙ୍କର ପୋଷାକରୁ କିପରି ଏକ ସୁଗନ୍ଧ ଫିଟି ପଡ଼ୁଛି, ଆଉ ପାଟିର ସିଗାରର କଡ଼ା ଧୂଆଁ ରନୁର ନାକରେ ବେଳେ-ବେଳେ ପଶିଯାଉଛି । ରନୁ ଧୂଆଁର ଏପରି ଉଗ୍ର ଗନ୍ଧକୁ ସହିପାରୁ ନ ଥିଲା । କିନ୍ତୁ ସେ ମନେ ମନେ ଖୁସି ଯେ, ଏପରି ଏକ ଆଧୁନିକ ଏବଂ ଉଚ୍ଚଶିକ୍ଷିତ ବର ଯେ ନମିଅପା ତାର ପାଇଛି, ତାହା ହିଁ ତାର ଭାଗ୍ୟ । ନମିତାର ଏପରି ସୌଭାଗ୍ୟରେ ରନୁର ଈର୍ଷା ନଥିଲା, ବରଂ ଥିଲା ବହୁତ ଆଶା, ବହୁତ ଆତ୍ମସନ୍ତୋଷ । ସେ ଆତ୍ମତୃପ୍ତିରେ, ସମ୍ମାନରେ, ଭକ୍ତିରେ ଚାହିଁଲା ମନସୁଖଙ୍କୁ । ମନସୁଖ ତାକୁ ଚାହିଁ ରହିଛନ୍ତି କେତେବେଳୁ । ଉଃ... ମନସୁଖ ପ୍ରକୃତରେ—ପ୍ରକୃତରେ—

ରନୁ ଆଖି ତଳକୁ କଲା ।

ମନସୁଖ କାର୍‌ଭିତରେ ବହୁତ କଥା କହୁଥିଲେ । ଅସଲଗ୍ନ କଥା । ହୁଏତ ଏପରି ମାରବତାକୁ ସେ ଆଦୌ ଚାହୁଁ ନଥିଲେ କିମ୍ବା ରନୁ ମୁହଁରୁ କଥା ଶୁଣିବାକୁ ତାଙ୍କୁ ଭଲଲାଗୁଥିଲା । ସେ ଯାହାହେଉ ରନୁ ତାଙ୍କର କଥାରେ କେବଳ ସଂକ୍ଷିପ୍ତ ହୁଁ ଶବ୍ଦଟିଏ କରୁଥିଲା । ମନସୁଖ କହିଲେ —ଦେଖ ରନୁ, ତୁମର ଯଦି କିଛି ଅସୁବିଧା ନହୁଏ, ତେବେ ମୁଁ ଗୋଟାଏ କଥା କହିବି ।

କ'ଣ କହୁ ନାହାନ୍ତି ?

ମୁଁ ଟିକେ ମୋ ଚ୍ୟାମ୍ବରକୁ ଯାଇଥାନ୍ତି, ଆଉ ଚ୍ୟାମ୍ବରର କିଛି ଦରକାରୀ ଜିନିଷ ନେଇ ତୁମକୁ ଛାଡ଼ିଦିଅନ୍ତି ଘରେ । ଏଇ ଡେରିରେ ତୁମର କ'ଣ କିଛି ଅସୁବିଧା ହେବ ?

ରଘୁ ହସିଲା—କହିଲା—କଅଣ ଯେ ଆପଣ କହୁଛନ୍ତି ଭାଇ ? ଆପଣ ଚ୍ୟାମ୍ବରକୁ ଯିବେ, ଏଥିରେ ମୋର ଅନୁମତି ଦରକାର କଅଣ କରୁଛନ୍ତି । ତା' ଛଡ଼ା ଏଥିରେ ବା ମୋର କେତେ ସମୟ ଯେ ନଷ୍ଟ ହୋଇଯିବ ?

ମନସୁଖ ପୁଳାଏ ସିଗାରେଟର ଧୂଆଁ ଛାଡ଼ି କହିଲେ—ନା, ଏଇଟା ତ ଅନୁମତି ନୁହେଁ, ଏଇଟା ଭଦ୍ରତା ।

ରଘୁ ହସିଲା—କ'ଣ ଏ ଭଦ୍ରତା ମୋ ପାଖରେ ଆପଣଙ୍କୁ ବି ଦେଖାଇବାକୁ ପଡ଼ିବ ?

ମନସୁଖ କହିଲେ—ତୁମକୁ ନ ପଚାରି ଯଦି ମୁଁ ତୁମକୁ ମୋର ଚ୍ୟାମ୍ବରକୁ ନେଇଥା'ନ୍ତି, ତୁମେ କଅଣ ମୋତେ ଭାବିଥା'ନ୍ତ ?

ରଘୁ ଆଶ୍ଚର୍ଯ୍ୟରେ କହିଲା—କ'ଣ ଭାବିଥା'ନ୍ତି ଯେ ?

ମନସୁଖ କହିଲେ—ସେଠାକାର ଶୂନ୍ୟ ଘରର ନିଃସଙ୍ଗ ବାତାବରଣ ତୁମକୁ ନିଶ୍ଚୟ ଡରାଇଥା'ନ୍ତା, ଆଜ ତୁମେ ତୁମର ସେଇ ଏକାକିନୀ ଅବସ୍ଥାରେ ମତେ ଦେଖି ନିଶ୍ଚୟ କାତର ହୋଇ ଉଠନ୍ତି । ହୁଏତ ଅନ୍ୟ କିଛି ବି ଆଶଙ୍କା କରନ୍ତି—

ରଘୁ ହସି କହିଲା—ଆପଣ ଅମୂଳକ ଚିନ୍ତା କରୁଛନ୍ତି ଭାଇ ! ମୁଁ କ'ଣ ଏତେ ସଙ୍କୀର୍ଣ୍ଣ ? ଗୋଟାଏ ନିର୍ଜନ ଘରେ ଆପଣ ଆଉ ମୁଁ ରହିଲେ ଦୋଷଟା କଅଣ ଯେ !

ରଘୁ ସିନା ଏକଥା କହିଦେଲା, କିନ୍ତୁ ପରମୁହୂର୍ତ୍ତରେ ଦେଖିଲା ମନସୁଖଙ୍କ ହସରେ ଯେପରି ଗୂଢ଼ାଏ ବ୍ୟଞ୍ଜନା ପୂରି ରହିଛି । ସେ ମୃଦୁ ହସୁଛନ୍ତି । କିନ୍ତୁ ସେ ହସ ଯେପରି ଉଦ୍ଦେଶ୍ୟମୂଳକ ।

ମନସୁଖ ରଘୁକୁ ଦୃଷ୍ଟି କହିଲେ ହେଇତ, ଏଇ ଆଉ ଛକ ଉପରେ ମୋର ଚ୍ୟାମ୍ବର । ଏଇ ଆମେ ପହଞ୍ଚିଗଲେ !

ମନସୁଖ ଗାଡ଼ିକୁ ନେଇ ଘରର ପୋର୍ଟିକୋ ପାଖରେ ରଖିଲେ । ରଘୁ ଓହ୍ଲାଇ ପଡ଼ିଲା, ମନସୁଖ ବି କାର୍‌ରୁ ଓହ୍ଲାଇ ପଡ଼ିଲେ ।

ମନସୁଖ ଆଗେ ଆଗେ ଘରର ବାରଣ୍ଡା ଦେଇ ଯାଉଥିଲେ ଏବଂ ରଘୁ ତାଙ୍କୁ ଅନୁସରଣ କରୁଥିଲା ।

କେହି ନାହାନ୍ତି । କେବଳ ଗୁଡ଼ାଏ ଧାଡ଼ ଧାଡ଼ ଫୁଲଗଛ । ଏଠା ଛଡ଼ା ଆଉ କେହି ନାହାନ୍ତି । ଫୁଲଗଛମାନଙ୍କରେ ବିଜୁଳିବତୀର କ୍ଷୀଣ-ଆଲୋକର ଝଲକ । ରାନୁ ବାହାରପଟକୁ ଚାହିଁ ରହିଥିଲା । ଟୁପ୍‌ଟାପ୍ ବର୍ଷା ପଡ଼ୁଛି ।

ମନସୁଖ ଘର ଭିତରକୁ ଯାଇ ରାନୁକୁ ଡାକିଲେ, କହିଲେ— ବସ ରାନୁ, ସେ ସୋଫା ଉପରେ । ମୁଁ ସେ ଘରୁ ଆସୁଛି ।

ରାନୁ ବସି ରହିଥିଲା ସୋଫାଟା ଉପରେ । ଏଇଟା ମନସୁଖଙ୍କର ଚ୍ୟାମ୍ବର । ଏଇଠି ମନସୁଖ ବିଭିନ୍ନ ରୋଗୀଙ୍କର ସ୍ୱାସ୍ଥ୍ୟର ହିସାବ ରଖନ୍ତି । ରାନୁ ଘରକୁ ଚାହିଁଲା, ଚାରିଆଡ଼େ ଆଭିଜାତ୍ୟର ସୁସ୍ପଷ୍ଟ ଆଭାସ । ଘରର ଆସ୍‌ବାବ୍, ଘରର ଗାଲିଚା, ଘରର କବାଟ ଝରକାର ସ୍କ୍ରିନ୍ ଏବଂ ଘରର କାନ୍ଥର ବଫ୍‌କଲରର ଡିସ୍‌ଟେମ୍ପରିଙ୍ଗ୍ ଘରକୁ ଭୀଷଣ ମହାର୍ଘ କରି ଗଢ଼ିଥୋଇଛି ।

ରାନୁ ମନେମନେ କହିଲା ଏଇଟା ତ ତା'ର ନମି ଅପାର ଘର, ଏଇ ଘରେ ନମିଅପା ସର୍ବମୟୀ କର୍ତ୍ତ୍ରୀ ହୋଇ ରହିବ । ଏଇ ମନସୁଖଭାଇ ଯେ କେତେ ଭଲ, ଏତେ ବଡ଼ ଡାକ୍ତର ହୋଇ ମୁଦ୍ଧା ମନରେ ତାଙ୍କର ଟିକିଏ ହେଲେ ଗର୍ବ ଅଛି ? ରାନୁ ପରି ଝିଅଟା ସାଥିରେ ହସି ହସି କଥା କହୁଛନ୍ତି !

ଯାହା ହେଉ, ଅପାର ବୈବାହିକ ଜୀବନ କିପରି ସୁଖମୟ ହୋଇଉଠୁ ଏଇ ମନସୁଖଙ୍କୁ ଲାଭ କରି !

ରାନୁ ନିଜର ପଛପଟକୁ ବୁଲି ଚାହିଁଲା । ଆରେ ଏ ଘରେ ପୁଣି ଏମିତି ମୂର୍ତ୍ତିଟାଏ ଅଛି ! ରାନୁ ଆଶ୍ଚର୍ଯ୍ୟରେ ଚାହିଁରହିଲା ଗୋଟାଏ ଅର୍ଦ୍ଧ ଉଲଗ୍ନ ଗ୍ରୀସିୟାନ୍ ନାରୀ ମୂର୍ତ୍ତିକୁ । ଅନାବୃତ ବକ୍ଷକୁ ସେ ଗୋଟାଏ ହାତରେ ଲୁଚାଇ ଲାଜରେ ସଢ଼ାଯାଇ ଠିଆ ହୋଇଛି, ଆଉ ଅନ୍ୟ ହାତରେ ଧରିଛି ତା'ର ଖସି ପଡ଼ୁଥିବା ଲୁଗାକୁ !

ରାନୁ ସରମରେ ଝାଉଁଳିଗଲା ।

ଆଗରେ ଠିଆ ହୋଇଛନ୍ତି ମନସୁଖ !

ରାନୁକୁ ଭୀଷଣ ଲାଜ ଲାଗିଲା । ନିଜର ଦେହକୁ ସେ ଶାଢ଼ୀରେ ଘୋଡ଼ାଇବାକୁ ଚଞ୍ଚଳ ହୋଇଉଠିଲା । ମନସୁଖଙ୍କର ଆଖି ସତେ ଯେପରି ରାନୁର ଶାଢ଼ୀ ଭେଦ କରି ରାନୁର ବକ୍ଷ ଦେଶରେ ଲହଡ଼ା ମାରୁଛି । ଏ ଶାଢ଼ୀ ତଳେ ରାନୁର ଦେହର ଗଠନ ମଧ୍ୟ ଏହି ମୂର୍ତ୍ତିଟି ପରି ।

ରଞ୍ଜୁ ଅତିଷ୍ଠ ହୋଇଉଠିଲା ।

ଉଃ...ମନସୁଖ ତାଙ୍କୁ କାହିଁକି ଏପରି ଶାଣିତଭାବରେ ଚାହିଁ ରହିଛନ୍ତି ?

ସେ କ'ଣ ଯିବେ ନାହିଁ ?

ମନସୁଖ କିନ୍ତୁ ସୋଫାଟି ଉପରେ ସେହିପରି ବସିଥିଲେ, ଏବଂ ରଞ୍ଜୁକୁ ଚାହିଁ ହସୁଥିଲେ । ତାଙ୍କ ଚାହାଣୀରେ ସେହି ପୂର୍ବର ଗୁଡ଼ାଏ ବ୍ୟଞ୍ଜନା, ଇଙ୍ଗିତ ।

ହଠାତ୍ ରଞ୍ଜୁ ଘ୍ରାଣକଲା ଯେ ମନସୁଖଙ୍କର ହାକୁଟିରୁ ଗୁଡ଼ାଏ କଡ଼ା ମଦର ଗନ୍ଧ ଭାସି ଆସୁଛି ।

ତାହାହେଲେ ମନସୁଖ କ'ଣ ମଦ ଖାଆନ୍ତି ? ରଞ୍ଜୁ ବ୍ୟସ୍ତଭାବେ ମନସୁଖଙ୍କୁ ଚାହିଁଲା ।

ମନସୁଖ କହିଲେ—ସୃଷ୍ଟିର କେଉଁ ଆଦିମ କାଳରୁ ଏ ନାରୀ ତା'ର ଅଙ୍ଗେ ଅଙ୍ଗେ ରୂପର ପ୍ରାଚୁର୍ଯ୍ୟ ନେଇ ଜନ୍ମଲାଭ କଲା କେଜାଣି, ଯୁଗ ଯୁଗ ଧରି କବି, ଶିଳ୍ପୀ, କଳାକାର ଏ ରୂପର ପ୍ରଶସ୍ତି ଗାନ କରିଛନ୍ତି, ଅଥଚ ସେ ଗାନରେ ସେ କେବେ କ୍ଳାନ୍ତି ଲାଭ କରିନ, କେବେ ଆତ୍ମସନ୍ତୋଷ ଲାଭ କରିନ । ନାରୀର ରୂପ, ନାରୀର ଯୌବନ ତା'ର ଆଖିରେ ମାୟାଞ୍ଜନ ବୋଳିଛି, ଯେପରି କି ଏ ଭାସ୍କର୍ଯ୍ୟରେ ତୁମେ ଦେଖୁଥିବ ରଞ୍ଜୁ, ସେଇ ଅଜଣା ଶିଳ୍ପୀ, ଯେ କି ଏ ଭାସ୍କର୍ଯ୍ୟକୁ ଏପରି ଗଢ଼ିଛି, ତା'ର ରୂପ ପିପାସୁ ପ୍ରାଣର ସର୍ବସ୍ୱ ହା-ହାକାରମୟ ଅନୁସନ୍ଧିତ୍ସା । ସେ ନାରୀର ରୂପରେ କ'ଣ ଯେପରି ଖୋଜିବାକୁ ଚେଷ୍ଟା କରୁଛି, ଅଥଚ ପାଉନାହିଁ; କିନ୍ତୁ ସେହିପରି ଖୋଜୁଛି । ବୁଝୁଛ କି ? ତୁମେ ଏ ମୂର୍ତ୍ତିର କଳାବିନ୍ୟାସକୁ କିପରି ଉପଲବ୍ଧି କରୁଛ ରଞ୍ଜୁ ? ତା'ର ଉନ୍ନତ ବକ୍ଷର ଶୋଭା ? କଟିର କ୍ଷୀଣତା ? ନିତମ୍ବର ସ୍ଫୀତି ?

ଉଃ... ! ଏପରି ପ୍ରଶ୍ନରେ ରଞ୍ଜୁ କି ଉତ୍ତର ଦେବ ? କି ଉତ୍ତର ଦେବ ଯେ ସେ ? ଘରଟା ଭିତରେ କେହି ନାହାନ୍ତି । କେବଳ ସେ, ମନସୁଖ ଆଉ ସେଇ ନାରୀ ମୂର୍ତ୍ତି । ରଞ୍ଜୁ ନୀରବ ରହିଲା । କିନ୍ତୁ କି ଯେ ଏଇ ଅଶ୍ଳୀଳ ପ୍ରଶ୍ନ ?

ମନସୁଖ କହିଲେ—ଏପରି ମୂର୍ତ୍ତିଟାଏ ଘରେ ଦେଖି ତୁମେ ଆଶ୍ଚର୍ଯ୍ୟ ହେଉଥିବ ନୁହେଁ ? କିନ୍ତୁ ଡାକ୍ତରର କର୍ମକ୍ଳାନ୍ତ ଜୀବନରେ, ଯେଉଁଠି

ମୁର୍ଦ୍ଦାର ପଚାସଡ଼ା ଗନ୍ଧ ଦୁର୍ବିସହ ହୋଇଉଠେ, ପୂଜ ରକ୍ତର ବୀଭତ୍ସମୟ ଦୃଶ୍ୟ ନୈରାଶ୍ୟଜନକ ଶୂନ୍ୟସ୍ଥାନ ସୃଷ୍ଟିକରେ, ଯେଉଁଠି କେବଳ ଛୁରି କଇଁଚି, ଫରସେପ୍ସ, ଇଞ୍ଜେକସନ୍‌ର କାମ, ଜୀବନ ଯେଉଁଠି ନିତାନ୍ତ ପ୍ରାକ୍‌ଟିକାଲ — ସ୍ୱପ୍ନର ମାଦକତା ନାହିଁ—କଳ୍ପନାର ସ୍ଫୁର୍ତ୍ତି ନାହିଁ, ସେଠି ମୁଁ ଏଇ ମୂର୍ତ୍ତିଟାକୁ ଦେଖି ସବୁ ଭୁଲିଯାଏ ଗନୁ, ଏଇ ମୂର୍ତ୍ତିଟା ଯେମିତି ମତେ କହେ —ଡାକ୍ତର ! ସବୁ ବାସ୍ତବତା ଭିତରେ ବି ତୋ'ର ଜୀବନରେ ସ୍ୱପ୍ନ ଅଛି, ତୋ' ଜୀବନରେ ଗୋଲାପ ଗନ୍ଧର ମାଦକ ଅଛି । ତୋ' ଜୀବନରେ ବି ମଧୁନିର୍ଝରର ଯାବତୀୟ ଉପାଦାନ ଅଛି । ସେ ମଧୁନିର୍ଝରର ସନ୍ଧାନ ତୁମେ ମତେ ଦେଇପାରିବ ଗନୁ ?

ଭାଇ !

ମୁଁ ତୁମର ଭାଇ ନୁହେଁ ଗନୁ, ମୁଁ ତୁମର ଭଣୋଇ !

କ'ଣ କହୁଚନ୍ତି ?

କହିବାର ତ କିଛି ନାହିଁ । ଯେଉଁଦିନ ପ୍ରଥମ ମୁଁ ତୁମକୁ ଦେଖିଛି ସେହିଦିନ ହିଁ ମୋର ଆଖିର ଇଙ୍ଗିତରେ ତୁମକୁ ସବୁ ବୁଝାଇ କହି ଦେଇଛି ।

ସାତ ଘଣ୍ଟା ବାଜିଲାଣି ଭାଇ !

ଉଃ—ସେଇ ଭାଇ ! ମୁଁ କଣ ତୁମର ଭଣୋଇ ଆଉ ତମେ ? ତମେ ମୋର—ହାଃ...ହାଃ...ହାଃ, ମୋର ମନେହୁଏ ସ୍ୱର୍ଗର କୌଣସି ଅପରୂପା ଅପସରା କମ୍ବା ଦେବେନ୍ଦ୍ରର କୌଣସି ରୂପସୀ ଅଭିନେତ୍ରୀ ଯୌବନ ସାଗରକୁ ମନ୍ଥନ କରି ମୋର ଶାଳିକା—ଅଲଅଳୀ ଶାଳିକା ରୂପେ ଠିଆ ହୋଇଛନ୍ତି ।

ଆପଣ ମଦ ପିଇଛନ୍ତି । ଗନୁ ଗର୍ଜ୍ଜି କହିଲା ।

ହୋ' ହୋ' ହସି ମନସୁଖ କହିଲେ—ମଦ ନୁହେଁ ପାଣି । କଞ୍ଚା ପାଣି ।

ମିଛ !

ଆଃ...ମିଛ ନୁହେଁ । ତୁମ ପରି ଝିଅଟା ଆଗରେ ମିଛ କହିବାର କିଛି ପ୍ରୟୋଜନ ନାହିଁ, କାରଣ ଏଠି ମଦ ଯାହା, ବାସ୍ତବରେ ପାଣି ତାହା ।

ଓଃ—ଗୁଡ଼ିଲ ! ଆପଣ ମଦକୁ ପାଣି ବୋଲି କହୁଛନ୍ତି ? ହେ ଭଗବାନ !

ମନସୁଖ ହସିଉଠିଲେ । କହିଲେ—ମଦ ପିଉଛୁ ବୋଲି ଉମେ ହରଣା କରନୁ । ତା'ଛଡ଼ା ଡରକ ବା କାହିଁକି ? ମୁଁ ତୁମର,ମାନେ—ଅତି ନିଜର । ତୁମର ସୁଖ୍ୟାକୁ ଲାଭକ କରିବା ପାଇଁ ମୁଁ ପ୍ରସ୍ତୁତ, ଏକଦମ୍ ପ୍ରସ୍ତୁତ ।

କ୍ଷମା ? ଆପଣ ସ୍ପଷ୍ଟରେ ମୋର ଏଠାକୁ ଆସିବା ପାଇଁ ଅନୁମତି ଦେଇଥିଲେ ନା ? କିନ୍ତୁ ମୁଁ ଜାଣିପାରି ନଥିଲି । ଏ ଭଦ୍ରତାର ଅନ୍ତରାଳରେ ଆପଣଙ୍କର ଏପରି ଗୋଟାଏ କୁତ୍ସିତ ମତଲବ ଅଛି, ଏକଥା ମୁଁ ଆଦୌ କଳ୍ପନା କରି ପାରି ନଥିଲି ।

କାହାକୁ କୁତ୍ସିତ କହୁଛ ରାନୁ ? ତୁମର ରୂପକୁ ପ୍ରଶଂସା କରିବା କ'ଣ କୁତ୍ସିତ ? ତୁମର ରୂପର ପୂଜାରୀ ହେବା କ'ଣ କୁତ୍ସିତ ? ବାଲ୍ୟର ତରୁଣୀ କାଳରେ ମୁଁ ବହୁତ ରୂପର ସଂସ୍ପର୍ଶରେ ଆସିଛି ରାନୁ , ବହୁତ ସ୍ତ୍ରୀଙ୍କ ସାଥିରେ ମିଶି, ତାଙ୍କର ଦେହର ସମସ୍ତ ଅଙ୍ଗ-ପ୍ରତ୍ୟଙ୍ଗ ଦେଖିବାର ସୁବିଧା ଲାଭ କରିଛି । କିନ୍ତୁ ତୁମେ ! ଓଃ !

ମନସୁଖଙ୍କୁ ରାନୁ କରୁଣ ଆଖିରେ ଚାହିଁଲା । ତାଙ୍କର ଚକ୍ଷୁଯୁଗଳ ଢୁଲୁ ଢୁଲୁ ହଉଛି, ଆଉ ସେହି ଢୁଲୁ ଢୁଲୁ ଆଖିରେ ଯେପରି ଫୁଟି ଉଠୁଛି ଗୋଟାଏ ଲୋଭସିକ୍ତ ବୁଭୁକ୍ଷା, ଗୋଟାଏ ଉନ୍ମତ୍ତତା, ଗୋଟାଏ ଲମ୍ପଟତା । ରାନୁ ଭୟରେ ତାର ମୁହଁକୁ ଯୋଡ଼ାଇ ପକାଇଲା ହାତର ଦୁ' ପାପୁଲିରେ !

ରାନୁ ଅତୁର ସ୍ୱରରେ କହିଲା—ମୁଁ ଯିବି—ମୁଁ ଯିବି ।

କିନ୍ତୁ ଏ ବର୍ଷାରେ ତୁମେ ଯିବ କପରି ?

ହଁ, ଏ ବର୍ଷାରେ ମୁଁ ଚାଲି ଚାଲି ଯିବି ।

ବାହାରେ ତୋଫାନର ଗର୍ଜ୍ଜନ, ମେଘର ଗର୍ଜ୍ଜନ ତୁମକୁ ନିଶ୍ଚୟ ଡରାଇବ ରାନୁ । ତା ଛଡ଼ା ମୁଁ ଡାକ୍ତର । ଜାଣି ଜାଣି ତୁମକୁ ବର୍ଷାରେ ଛାଡ଼ିବି କପରି ? ତୁମକୁ ଇନ୍‌ଫ୍ଲୁଏଞ୍ଜା ଧରିପାରେ ? ବ୍ରୋଙ୍କାଇଟିସ୍ ହୋଇପାରେ । ଛିଃ, ଏ ଥଣ୍ଡା ପବନ ଯୋଗୁଁ ମୁଁ କବାଟ ଝରକା ବନ୍ଦ କରି ଦେଇଛି ।

ମନସୁଖ ଉଠି ପଡ଼ିଲେ ।

ରାନୁ ଉପୁରେ ଉଠିପଡ଼ିଲା ।

ମନସୁଖ କବାଟ ଝରକା ଦବା ପାଇଁ ଆଗେଇ ଗଲେ । ରାନୁ ପାଟି କରି କହିଲା—କବାଟ ଝରକା ଦିଅନ୍ତୁନ । ନା—ଦିଅନ୍ତୁନ ।

ମନସୁଖ କିନ୍ତୁ ରାନୁର କଥା ନ ଶୁଣି ସବୁଟାକୁ ପୂରା ନବୁଜ କରି ଦେଇଥିଲେ ।

ରାନୁ ବଡ଼ ପାଟିରେ କହିଲା—ଏ କବାଟ ବନ୍ଦ କରି ମୋର ଯିବା ବାଟକୁ ବନ୍ଦ କରି ଦେଇଛନ୍ତି ? କିନ୍ତୁ ମତେ ଯିବାକୁ ଦିଅନ୍ତୁ, ମୁଁ ଅନୁରୋଧ କରୁଛି ଆପଣଙ୍କୁ ।

ମୁଁ ତ କିନ୍ତୁ ତୁମକୁ ଏପରି ଖାଲି ଖାଲି ଯିବାକୁ ଆଣି ନଥିଲି ରାନୁ ?

ଆଉ ?

ମୁଁ ଯେଉଁ ଫୁଲକୁ ଥରେ ତୋଳେ' ତାକୁ ନାସିକା ଭରି ଘ୍ରାଣ କରିବାକୁ ଭଲପାଏ ।

ମନସୁଖଙ୍କ ଗଳାରେ ଅସମ୍ଭବ ଦୃଢ଼ତା । ସେ ରାନୁର ନିକଟକୁ ଆଗେଇ ଆସିଲେ । ସତେ ଯେପରି ଗୋଟାଏ କ୍ଷୁଧିତ ସିଂହ ଏକ ଖିନ୍ନ-ବସ୍ତ୍ରା ହରିଣୀକୁ ଆପାଦମସ୍ତକ ଗ୍ରାସ କରିବା ପାଇଁ ଆଗେଇ ଆସୁଛି । ରାନୁ ପଛେଇଯାଉଥିଲା । ମନସୁଖ ରାନୁର ପଣତ ଭିଡ଼ିବାକୁ ହାତ ବଢ଼ାଇଲେ ।

ଉଃ···ଛାଡ଼ନ୍ତୁ—ଛାଡ଼ନ୍ତୁ ! ରାନୁ ଦି'ହାତରେ ତାର ଶାଢ଼ୀକୁ ଭିଡ଼ିଧରିଲା ।

ମନସୁଖ ଉଦ୍ଧତ ଭାବେ ହସିବାକୁ ଲାଗିଲେ ।

ବ୍ୟାକୁଳ ଭାବେ, ଢାକୁସ୍ତ ଅସହାୟ ଭାବେ, ହୃଦୟର ସବୁତକ ଦୁଃଖ, ସବୁତକ ବେଦନା, ସବୁତକ ଗ୍ଳାନି, ସବୁତକ ଅସହାୟତା ଭରି ରାନୁ ଆତୁର ଗଳାରେ କହିଲା—ମୁଁ ଆପଣଙ୍କର ଗୋଡ଼ ଧରୁଛି ହଇ, ମତେ ଛାଡ଼ନ୍ତୁ ।

କିନ୍ତୁ ମନସୁଖ ସେଇପରି ବଧିର । ନିର୍ମମ । ନିଘୃଣ୍ୟ । ସେ ହସି ହସି କହି ଉଠିଲେ—ଆଃ···, ମୋର ଗୋଡ଼ ଧରିବ କାହିଁକି ରାନୁ ? ମୋର ବକ୍ଷ ତ ତୁମକୁ ଧରିବା ପାଇଁ ସଦାବେଳେ ହିଁ ଜଗିଚି ।

ବାହାରେ ଝଡ଼ର ତୋଫାନ । ଭିତରେ ଉନ୍ମତ୍ତ ମନସୁଖ । ଆଜି ହେଇ ପ୍ରବଳ ଉନ୍ମତ୍ତତା ଭିତରେ ବିହ୍ୱଳ ରାନୁ - ନଷ୍ଟମାର୍ଗୀ ରାନୁଟି, ଦୁର୍ବଳା ନାରୀଟି କଅଣ କରିବ ?

ମନସୁଖ ରାନୁକୁ ଆକୋଳ ଧରିଲେ ।

ରାନୁ ପାଗଳୀ ପରି ଛଟପିଟ ହେଲା, ଚିତ୍କାର କଲା, ଗୋଡ଼ହାତ କଚାଡ଼ିଲା । ତାର କେଶ ଫିଟିଯାଇଛି । ତାର ବାସ ଫିଟିଯାଇଛି । ସବୁ ଫିଟୁ ପଛେ ସେ ତାର କୁମାରୀତ୍ୱକୁ, ତାର ନାରୀ ଜୀବନର ଅମୂଲ୍ୟ ସଂପଦକୁ ଏ ଘୃଣ୍ୟ ରାକ୍ଷସଟା ପାଖରେ ଲୁଟି ଦବନି ।

ମନସୁଖ ବିରକ୍ତ ହେଇ, ବାଧ୍ୟହେଇ ରାନୁକୁ ଛାଡ଼ିଦେଇ ଚିତ୍କାର କରି କହି ଉଠିଲେ—ଦେଖ ରାନୁ, ଗୋଟାଏ ପାଖରେ ତୁମର କୁମାରୀତ୍ୱ ଅନ୍ୟ ପାଖରେ ତୁମର ମା'ଙ୍କ ଜୀବନ । କାହାକୁ ଚାହୁଁ ?

କାନ୍ଦି ଉଠି ରାନୁ କହିଲା- ତାର ଅର୍ଥ ?

ଏହାର ଅର୍ଥ ବୁଝିବାକୁ ବିଶେଷ ଜଟିଳ ନୁହେଁ । ଯେଉଁଠି ଡାକ୍ତରର ମନର ଇଚ୍ଛାରେ ସବୁ ହେଇପାରେ, ସେଠି ଗୁଡ଼ାଏ ପାଟିଛୁଣ୍ଡ ନିହାତି ଅବାଞ୍ଛନୀୟ । ତୁମର ଏ ପାଟିଛୁଣ୍ଡ ଯେ ନିହାତି ଅଭଦ୍ରତା, ଏକଥା ତୁମେ ମାନିବାକୁ ଆଦୌ ରାଜି ନୁହଁ । ଏଣୁ ତୁମେ କ'ଣ ଚାହଁ ? ତୁମର କୁମାରୀତ୍ୱ ନା ତୁମର ମା'ଙ୍କ ଜୀବନ ? ହୁଏତ କାଲି ତୁମର ମା' ଅପରେସନ୍ ଟେବୁଲ ଉପରେ···

ମାନେ ?

ମାନେ—ତାଙ୍କର ଜୀବନଟା ମୋ ହାତରେ । ସାମାନ୍ୟ କାରଣରେ ହୁଏତ ମୁଁ ତାଙ୍କୁ ମାରିଦେଇପାରେ । କେହି ଜାଣିପାରିବେ ନି । କେହି ମୋର ଦୋଷ ଦେଇପାରିବେ ନି ।

ନା···ନା, ସେ କଥା ମୁଁ କଦାପି କରିବାକୁ ଦେବି ନାହିଁ ।

ତେବେ ?

ରାନୁ କିଛି କହିପାରିଲା ନାହିଁ । ରାନୁର ମଥା ଅବନତ ଭାବେ ଝୁଲେଇବାକୁ ଲାଗିଥିଲା । ଉଃ···ଏ ଲୋକଟା ଭଦ୍ରତାର ଅନ୍ତରାଳରେ କେତେ ଯେ ଅମାନୁଷିକତା ଲୁଚେଇ ନ ରଖିଛି ! କେତେ ଯେ ପଙ୍କ, ନରକର କୀଟକୁ ପୂରେଇ ନ ରଖିଛି !

ମନସୁଖ ରୁଷ୍ଟ ସ୍ୱରେ କହିଲେ—କୁହ ଗୁନୁ, ତୁମର ଏ କାନ୍ଦ ଦେଖିବାକୁ ମୋର ସମୟ ଯାଉଛି । ତା ଛଡ଼ା ଘରେ ତୁମର ସେ ଘୁଡ଼ିବାକୁ ପଡ଼ିବ ।

ଗୁନୁ କିଛି କହିପାରୁ ନଥିଲା । କିନ୍ତୁ ତା ଆଖିରେ ଦୁଇଟି ଛବି ନାଚି ଉଠିଲା । ଗୋଟିଏ ଛବି ସୁବୋଧର ଓ ଅନ୍ୟଟି ହେଉଛି, ବୋଉଙ୍କର ।

ସୁବୋଧ ଠିଆ ହୋଇଛନ୍ତି । ହାତରେ ହାରଟିଏ ଧରି ହସି ହସି ତାକୁ ଡାକୁଛନ୍ତି । କହୁଛନ୍ତି—ସଖି ସାବିତ୍ରୀ ମୋର, ସେଦିନ ମୋ ପାଇଁ ତୁମର ସେଇ ଚେନ୍ ଖଣ୍ଡୀ କଣଥିଲ ନା ? ଆଜି ତା ବଦଳରେ ମୁଁ ତୁମକୁ ଏଇ ହାରଟି ଦେଉଛି । କେବଳ ହାର ଦଉନ, ତା ସାଥିରେ ଦଉଛି ମୋର ଅଖଣ୍ଡ ସ୍ନେହ, ଅଖଣ୍ଡ ଭରସା ଆଉ ଅଖଣ୍ଡ ପ୍ରେମ—ଭଲ ପାଇବା ।

ଗୁନୁ ଅଶ୍ରୁଉଠି ଆଖି ବୁଜିଦେଲା ।

ମା'ଲୋ, ଗୁନୁ ! ମୁଁ ମରିଯିବି ଲୋ, ମୁଁ ମରିଯିବି । ଡାକ୍ତର-ଖାନାର ଲୁହାର ଖଟିଆ ଉପରେ ସାଉଁଟି ହୋଇ, ବିକଳରେ ଭେଁ ଭେଁ କାନ୍ଦ ଉଠି, ହାତ ବଢ଼ାଇ ବୋଉ ଡାକ ପାରୁଛନ୍ତି—ମତେ ତୁ କ'ଣ ସତରେ ମାରିଦବୁ ଗୁନୁ ? ମୁଁ କ'ଣ ତୋର କେହି ନୁହେଁ ? ତତେ ଜୀବନ ଦାସ୍ତ କଷଣ ଦେଇଥିଲି ବୋଲି ତୁ ଆଜି କ'ଣ ଏତେ ବଧୀର ହୋଇଯାଇଛୁ ? ଏତେ କଠୋର, ନିଷ୍ଠୁର ହୋଇଯାଇଛୁ ?

ଗୁନୁ ତାର ଦୁ'କାନକୁ ଚିପି ଧରିଲା ।

ଏ ପାଖେ ସୁବୋଧ ବାବୁ, ମୋ ନୟନର ତାରା ।
ସେ ପାଖେ ବୋଉ, ମୋ ସ୍ନେହ ଫଲ୍‌ଗୁ ଧାରା ।

ଗୁନୁ କଅଣ କରିବ ?

ଗୁନୁ କଅଣ କରିବ ? ଗୁନୁ ସତରେ ବା କଅଣ କରିବ ? ଏ ଏକ ଅସମ୍ଭବ ସର୍ତ୍ତ, ଏ ବିଲାତ ଫେରନ୍ତା ଡାକ୍ତରର ସର୍ତ୍ତ । ଯେଉଁ ଦେଶରେ କୁମାରୀତ୍ୱ, ନାରୀର ସତୀତ୍ୱର ମୂଲ୍ୟ କିଛି ଥାଏନା । ଅବିବାହିତା ନାରୀ ଯୁବକ ବନ୍ଧୁ ସାଥୀରେ ଅବାଧରେ ମିଳାମିଶି ଅନାକାଙ୍‌କ୍ଷିତ ସନ୍ତାନକୁ ହତ୍ୟାକରେ, ଅଥଚ ନିଜର କୁକର୍ମ ପାଇଁ କିଛି ଅନୁଶୋଚନା କରେନା । ନିଜର କୁମାରୀତ୍ୱକୁ କେଉଁଠି ହଜାଇ ଦେଇଛି, ସେ କଥା ପାଇଁ ଭଲେ ଚିନ୍ତା କରେନା । ସେଇ ଦେଶର ପାଣି ପବନରେ କିଛିଦିନ ମାତ୍ର ରହି,

ସେଇ ଯୌବନ କୁଅଁରୀରେ ମାତିଉଠିଥିବା ନାରୀଙ୍କ ସନ୍ଧାନ ମିଶି ଏ ଲୋକଟା କରୁଛି, ପ୍ରତ୍ୟେକ ନାରୀ ସେମାନଙ୍କ ପର ହୁଅନ୍ତି । ସେଠି ନାରୀର ସତୀତ୍ୱକୁ ପ୍ରଶଂସା କରିବାର କୌଣସି ସୂଚନା ନାହିଁ, ନାରୀର ସତୀତ୍ୱ ଲୁଟ ତରାଜ୍ କରିବା ନେଇଁ ଯାବତୀୟ ଭଣ୍ଡାମି ।

ମନସୁଖ ବନ୍ଦୁକୁ ଏପରି ଏକ ଦ୍ୱନ୍ଦ୍ୱ ସଙ୍କଟରେ ପକାଇ ପିଠୋରଟ ଲଗାଇଲେ ।

ନିଜର କାମନାର ବହ୍ନିକୁ ଶାନ୍ତ କରିବା ପାଇଁ ସେ ନିଜର ସ୍ୱାମୀ ଶାଶୁର ମଧ୍ୟ ମୃତ୍ୟୁ କାମନା କରିପାରନ୍ତି । ନିଜର ସ୍ୱାମୀ ସ୍ତ୍ରୀର ସରଳ ବିଶ୍ୱାସର ସବନକା ଅନ୍ତରାଳରେ ଏପରି ଅପକର୍ମ କରିବା ପାଇଁ କୁଣ୍ଠା-ବୋଧ କରନ୍ତି ନାହିଁ ।

ଆଃ···ଅପା, ତୁ ସେ ନାହିଁକି ଏ ଲୋକଟାକୁ ମନ ପ୍ରାଣ ବିକ ଦେଲୁ ? ନାହିଁକି ସେ ଏ ଲୋକଟାକୁ ନିଜର ଇହକାଳର, ପରକାଳର ଦେବତା ବୋଲି ପୂଜିବା ପାଇଁ ମନସ୍ଥ କଲୁ !

ଅସ୍ପଷ୍ଟ ସ୍ୱରରେ ବନ୍ଦୁ ବିଁ କରିଉଠିଲା— ବୋଉ !

ବନ୍ଦୁର ଆଖିରୁ ଝରି ଝରି ଲୁହ କରିଯାଉଥିଲା । ବନ୍ଦୁର କଣ୍ଠରେ ହୃଦୟର ବେଗ ଫୁଟିବାକୁ ଲାଗିଥିଲା । ସେ ଅବଶ । ସେ ଅସାଡ଼ । ସେ ନିରସ୍ତ । ସେ ନିରୁପାୟ । ସେ କିଂକର୍ତ୍ତବ୍ୟବିମୂଢ଼ ।

ବାହାରେ ପ୍ରବଳ ତୋଫାନ ।

ବନ୍ଦୁର ମନରେ ପ୍ରବଳ ତୋଫାନ । ସୁବୋଧ, କଲ୍ୟାଣୀ । କଲ୍ୟାଣୀ, ସୁବୋଧ । ସୁବୋଧ, କଲ୍ୟାଣୀ ।

କୁହ ବନ୍ଦୁ ! ଚିତ୍କାର କରି ଉଠିଲେ ମନସୁଖ —ଗୋଟାଏ ଏଫ୍. ଆର. ସି. ଏସ୍ ଡାକ୍ତରର ମୂଲ୍ୟ ତୁମକୁ ବୁଝାଇବାକୁ ପଡ଼ିବନା । ସେ ତୁମର ତୁପର ପୂଜକ ହୋଇପାରେ, କିନ୍ତୁ ତୁମ ତୁପର ଭକ୍ତ ନୁହେଁ ।

ବନ୍ଦୁ କିଛି କହିପାରିଲା ନାହିଁ ।

ହଠାତ୍ ସେ ଦେଖିଲା ପ୍ରବଳ ତୋଫାନରେ ବିଜୁଳିବତୀର ଲାଇନ୍ କଟିଯାଇଛି ।

ଅନ୍ଧାର । ଅନ୍ଧାର । ଘୋର ଅନ୍ଧାର ।

ଶିକାର କରି ଘାଣ୍ଟି କରିବାର ତାର ଆଉ ଉତ୍କଣ୍ଠା ନାହିଁ । ନିଜର କୁମାରୀତ୍ୱକୁ ଅକ୍ଷୁଣ୍ଣ ରଖିବାକୁ ତାର ପ୍ରବଳ ଜିଜ୍ଞାସା ବି ନାହିଁ । ନିଜକୁ ମନସୁଖଙ୍କ ଅତ୍ୟାଚାରରୁ ମୁକ୍ତ କରିବାକୁ ତାର ଆପ୍ରାଣ ଚେଷ୍ଟା ନାହିଁ । ସେ ସେହିପରି ନିଶ୍ଚଳ, ନିର୍ବାକ୍, ନିଷ୍ପନ୍ଦ ହୋଇ ଠିଆହୋଇଛି । କାଠ ପାଲଟିଯାଇଛି । ଖୁଣ୍ଟ ପାଲଟିଯାଇଛି ।

କେବଳ ବୋଉ ! କେବଳ ବୋଉ ! କେବଳ ବୋଉ !

ସେଇ ନିଶ୍ଛିଦ୍ର ଅନ୍ଧକାର ଭିତରେ ସାନ୍ନ ନ ଦେଖିପାରୁଥିଲେ ସୁଦ୍ଧା, ଅନୁଭବ କଲା ଗୋଟାଏ ହାତ ନୁହେଁ --ସରୀସୃପ ତାର ବକ୍ଷ ଦେଶକୁ ଦଂଶନ କରିବାରେ ଲାଗିଛି ଏବଂ ପେଷଣ କରିବାରେ ଲାଗିଛି ।

ହଠାତ୍ ସେଇ ଜଘନ୍ୟ, ଅଶ୍ଳୀଳ ମୁହୂର୍ତ୍ତକୁ ଆହୁରି ଘୃଣ୍ୟ, କାନ୍ତିବାସୁ କରି ବାହାରେ ଖାପଖିଆ ଶବ୍ଦ କରି ପଡ଼ିଗଲା ଗୋଟାଏ ଚଡ଼ଚଡ଼ ।

ସାନୁ, ଆହା ସାନୁ ଝିଅଟା କେବଳ ହୁଁ ଭୁନ ଭୁନ ଆଖି ବୁଜି କାନ୍ଦୁଥିଲା ।

ସେ କ'ଣ ବେଶ୍ୟା ?

ସେଇ ଯେଉଁ ଅମୂଲ୍ୟ ରତ୍ନଟି, ତାର ନିଜର ଉଜ୍ଜ୍ୱଳ କିରଣରେ, ତାର ଜୀବନକୁ—ମନ-ପ୍ରାଣକୁ ଆଲୋକିତ କରିଥିଲା, ସେଇ ଅମୂଲ୍ୟ ରତ୍ନଟି ବିନଷ୍ଟରେ ସେ କ'ଣ ତାର ପ୍ରାଣର ଯାବତୀୟ ପବିତ୍ରତା ହରାଇଦେଲା ?

ଏଇ ଘରେ କେବଳ ହିଁ ଖୋଲା ଆଲୁଅ ଝରୁଥିଲା ନା ? କିନ୍ତୁ ନାହିଁ ସେ ଆଲୁଅ ? ଘରସାରା ଆଲୁଅ ତ କାହିଁ କେଉଁଠି ହଜିଯାଇଛି ଏବଂ ତା ବଦଳରେ କେବଳ ରହିଛି ଘନ ଅନ୍ଧକାର । ସେ ଅନ୍ଧକାରକୁ ସିନା କେହି ଦେଖିପାରୁନାହାନ୍ତି, କିନ୍ତୁ ସାନୁ ଦେଖୁଛି, ପ୍ରଖର ଖରାରେ ମଧ୍ୟ ଯେତେ ଝରକା କବାଟ ଖୋଲା କଲେ ବି ଘରେ ପୂରା ଅନ୍ଧକାର । ଅନ୍ଧକାରକୁ ଯେତେ ପେଲି, ଠେଲି, ଠେଲି ବାହାର କରି, କିନ୍ତୁ ସେ ସେହିପରି ଘରଟା ଭିତରେ ପୂରି ରହିଛି ।

ଏଇ ଘରେ ଖୋଲା ପବନ ଖେଳବୁଲୁଥିଲା ନା ? କିନ୍ତୁ ଏଇ ଘରେ ପବନର ଆଜି ଗନ୍ଧ ବମୁଖିଛା କିଆଁ ? ଏଇ ଘରେ ଆଜି ପବନ କିଆଁ ଏତେ ଅଜଣ୍ଟୀ, ଅଣନିଃଶ୍ୱାସୀ ହୋଇ ଠିଆହୋଇଛି ? କିଆଁ ପବନ ଏ ଘରେ ଖେଳ ବୁଲୁନି ? ଉଷତରେ ନାଚୁନି ?

ଗନୁ ତାର ସେଇ ଖୋଲା ଘରଟି ଭିତରେ ଚାରିଆଡ଼କୁ ଚାହିଁ ରହିଲା । ଆହା...ଆଜି ତାର କଅଣ ଅଛି ? ନିଜର ବୋଲି ବା କଅଣ ଅଛି ? ନିଜର ଗର୍ବ କରିବାର କଅଣ ଅଛି ? ଏ ଦେହର ପ୍ରତି ଲୋମ-କୂପରେ ଯେପରି ମନସୁଖଙ୍କର ବିଷମୟ ସ୍ପର୍ଶ । ଏ ଦେହ ଆଜି ଯେପରି ଗୋଟାଏ ଅଜଡ଼ା ଝଡ଼ ଫୁଲଟାଏ । ଏ ଦେହରେ ଯେପରି କିଏ ଗୁଡ଼ାଏ ଚପ୍ତ ତରଳ ଲୁହା ଢାଳି ଦେଇଛି ଏବଂ ତାହା ପ୍ରତି ଶିରା ପ୍ରଶିରାରେ ଖେଳିଯାଉଛି, ଚହଲିଯାଉଛି ।

ହେ ଭଗବାନ, ମୁଁ କଅଣ ବେଶ୍ୟା ? ମୁଁ କଅଣ ସତେ ହେଇ ଗନୁ ? ମୁଁ କଅଣ ସତେ ସେଇ ଅମୃତ କୁଣ୍ଡ, ଚହଲି ଉଠୁଥିଲି, ପରିପୂର୍ଣ୍ଣ ଥିଲି, ଉଚ୍ଛୁଳି ଉଠୁଥିଲି, ଆଃ...ସେଇ ଉଚ୍ଛୁଳା ଅମୃତ ଘଟରେ କିଏ ବୁନ୍ଦାଏ ବିଷ ଦେଲା ? ଆଉ ମତେ ସବା ଶେଷରେ ଅସ୍ତାକୁଡ଼ରେ ନର୍ଦ୍ଦମାକୁ ଫିଙ୍ଗି ଦେଲା ?

ଗନୁ ଦୁଇ ହାତରେ ତାର ମୁହଁକୁ ଘୋଡ଼ାଇ ପକାଇଲା ।

ପ୍ରଭୁ, କାହିଁକି ଏ ନିଆଁ ଲଗା ରୂପ ଅଯାଚିତଭାବେ ଏ ଦେହରେ ଢାଳିଦେଲ ? କାହିଁକି ଏ ଦେହକୁ ଏତେ ସୁସ୍ଥ ସବଳ କରି ଗଢ଼ିଦେଲ, ମୁଁ ତ ଗୋଲାପ ହୋଇ ଫୁଟିବାକୁ ଉଠିବାକୁ ଚାହିଁ ନଥିଲି ପ୍ରଭୁ ! ମୁଁ ଚାହିଁଥିଲି ଗୋଟାଏ ନଇମାଖୀ ଅଜଣା ଫୁଲଟିଏ ହୋଇ ବଣ ଉଦ୍ୟାନରେ; ବୁଦା ଅରମା ଭିତରେ ଲୁଚି ରହିବାକୁ । କିନ୍ତୁ ଆଖି ଝଲସା ରୂପ ବାହାରେ ଦେଇ ମୋର ମନର ସବୁ ଶିବ, ସବୁ ରୂପ, ସବୁ କମନୀୟତା କାହିଁକି ଲୁଟି ନେଲ ପ୍ରଭୁ ?

ଏ ଘରେ ଭାଗବତ ଅଛି । ଏ ଘରେ ରାମାୟଣ ଅଛି । ଏ ଘରେ ବସ୍ତ୍ର ଅଛନ୍ତି । ଏ ଘରେ ବାପା, ବୋଉ, ନମି ଅପା, ଅମ୍ମାତା, ବୁଢ଼ା ସମସ୍ତଙ୍କର ଅଗାଧ ବିଶ୍ୱାସ ଗନୁ ପ୍ରତି ସେହିପରି ଅଛି । କିନ୍ତୁ କେହି ନଜାଣିଲେ ସୁଦ୍ଧା ସତେ କ'ଣ ସେଇ ଗନୁ ଆଉ ଅଛି ? ଅଛି ?

କେବଳ ଅଛି ଗୁଡ଼ାଏ ତରଳ ଲୁହାର ସ୍ରୋତ ଯେ କି ପ୍ରତି ମୁହୂର୍ତ୍ତରେ ରାନୁର ସର୍ବାଙ୍ଗ ଶରୀରକୁ ମନ୍ଥନ କରୁଛି । ସେଠି ରାନୁ ନାହିଁ । ରାନୁର ପ୍ରାଣ ନାହିଁ; ରାନୁର ଚଳ ଚପଳତା ନାହିଁ । କେବଳ ଅଛି ହା-ହା-କାର । ନିରାଶା । ଘୃଣା । ନିଜ ପ୍ରତି ଘୃଣା । ନିଜ ପ୍ରତି ଅବିଶ୍ୱାସ ।

ଶେଷରେ— ଆଃ···ଶେଷରେ ମୁଁ କୋଠା ଉପରୁ ଖସି ପଡ଼ି ଉପର ପାହାଚରୁ ଗଡ଼ି ଗଡ଼ି ତଳ ପାହାଚକୁ ଚାଲି ଆସିଲି, ଆଉ ତଳ ପାହାଚରେ ମୁହଁମାଡ଼ି ପଡ଼ିରହିଲି । କିଏ ଉଠାଇବ ମତେ ? କିଏ କିଏ ତାର ଚରଣ ଧୂଳି ମୋ ଉପରେ ଅଜାଡ଼ି ଦେବ, ମୁଁ ଯାଇଁ ଉଠିବି ?

ରାନୁ ଘରଟା ଭିତରେ କାନ୍ଦୁଥିଲି । ପାଷାଣୀ ଅହଲ୍ୟା ଯେପରି କାନ୍ଦୁଛି— ମଥା କୋଡ଼ୁଛି, ବିଳାପ କରୁଛି ।

କାହାକୁ କହିବ ସେ ? କାହାକୁ କହିବ ସେ ହୀନମାନ କଥା ? କାହାକୁ କହିବ ସେ ତାଙ୍କର ସେଇ ଆପଣାର ମନସୁଖ ଯେ କି ତାର ସବୁ ଲୁଟି ନେଇଛି ? କିଏ ବା ତା କଥା ବିଶ୍ୱାସ କରିବ ?

ଏ ଦୁନିଆରେ ଯାହା ଆଶା କରାଯାଏ ନା, ଯାହା ବା ଆଶଙ୍କା କରାଯାଏ ନା ତାହା ହିଁ ଘଟେ । ବିଚିତ୍ର ନାଟକୀୟତାରେ ଭରପୂର ଏ ଦୁନିଆ । ସବୁଠାରୁ ସୁପାତ୍ର ହିଁ ବେଳେ ବେଳେ ଅପାତ୍ର ହୋଇଉଠେ ।

କିନ୍ତୁ ରାନୁ ଜାଣୁ ଜାଣୁ କିପରି ମନସୁଖଙ୍କୁ ସମସ୍ତଙ୍କ ନିକଟରେ ଅପାତ୍ର କରିଦେବ । ସମସ୍ତଙ୍କ ନିକଟରେ କିପରି ତାଙ୍କର ଅସଲ ସ୍ୱରୂପ ପ୍ରକାଶ କରିଦେବ ?

ନିମି ଅପାର ଭବିଷ୍ୟତ ଯେ ମନସୁଖଙ୍କ ହାତରେ ନିହିତ ହୋଇ ରହିଛି ।

ବାପା ବୋଉ ଯଦି ଜାଣନ୍ତି, ତେବେ ସେ ନିଶ୍ଚୟ ତ ମନସୁଖଙ୍କ ଉପରେ ଉତ୍ତ୍ୟକ୍ତ ହୋଇ ଉଠିବେ ଏବଂ ଯେଉଁ ଘରର ଦ୍ୱାର ସଦାସର୍ବଦା ମନସୁଖଙ୍କ ପାଇଁ ଅବାରିତ ହୋଇ ରହିଥାଏ, ସେହି ଦ୍ୱାର ସବୁଦିନ ପାଇଁ ହୋଇଯିବ ରୁଦ୍ଧ ।

ନିମିଅପା ଯଦି ଜାଣେ, ଯେ ତାର ସେଇ ମନସୁଖ ପାଇଁ ଏଇ ରାନୁଟାର ଏପରି ଅବସ୍ଥା ହୋଇଛି, ତେବେ ସେ କେଉଁ ଭରସାରେ ଏପରି କାମୁକ, ଲମ୍ପଟ ସ୍ୱାମୀ, ଯେ କି ଗୋଟାଏ ସରଳା, ନିଷ୍ପାପ ବାଳିକାକୁ

ଏପରି ହୃଦୟର ଦୋଳାୟମାନ ଅବସ୍ଥାରେ ପକାଇ ତାର ନାରୀ ଜୀବନର ପରମ ସମ୍ପଦକୁ ଲୁଟି ନେଇଛି, ତାକୁ ଦଣ୍ଡ ଦେବ ?

ନମିଅପା ଲୋ ! ତୁ ସତରେ କେତେ ଖୁସି ହଉ, କେତେ ସୁଖ ପାଉ ଏ ଡାକ୍ତର ମନସୁଖଙ୍କୁ ଦେଖିଲେ ! ମୁଁ ତ ନିଜେ ମୋ ଆଖିରେ ଦେଖିଛି, ଡାକ୍ତରଙ୍କୁ ଦେଖିଲେ ତୋର ମୁହଁରେ ନାଲି ଅବିର ଚହଟ ମାରେ । ହସର ଲହରୀ ଓଠ ଉପରେ ଉଚ୍ଛୁଳି ଉଠେ । ଆଖିରେ ଖେଳି-ଯାଏ କେତେ କଥା । ତୁ ଦିନରାତି ତାଙ୍କରି କଥା ଭାବୁଛୁ ବସି ବସି । ଦିନରାତି ତାଙ୍କରି ଗୁଣ କୀର୍ତ୍ତନ କରୁଛୁ । ତାଙ୍କ ସାଥିରେ ସିନେମା ଯାଉଛୁ, ତାଙ୍କ ସାଥିରେ ମଟରରେ ବସିଛୁ । ସେ ତ ତୋ'ର ସବୁ । ମୁଁ ତ ଫେର୍ ନାରୀ । ମୁଁ ବି ଭଲପାଏ ଠିକ୍ ତୋ'ରି ପରି ଆଉ ଜଣେ ପୁରୁଷକୁ । ଈପ୍‌ସିତ ପୁରୁଷ ଠାରୁ ନାରୀର ଯଦି ବିଚ୍ଛେଦ ଘଟେ, ତାହା କେତେ ମର୍ମନ୍ତୁଦ ହୋଇଉଠେ, ମୁଁ ଜାଣେ ଲୋ ଅପା ! ନାରୀ ଜନ୍ମ ଦେହ ଧରି ସହିପାରେ ନା ! କାନ୍ଦି କାନ୍ଦି ତାର ଦିନକୁ ଭସାଇ ଦିଏ । ଅଧୀରଣୀ ହୋଇ ମଥା କୋଡ଼େ । ଭାଗ୍ୟକୁ ନିନ୍ଦା କରେ । ମନର ମଣିଷ ତାର ନା ସବୁ ! ସେଇ ମନ—ମଣିଷର ଚରଣ ତଳେ ସେ ତାର ମନ-ପ୍ରାଣ ସବୁ ଉଜେଇଁ ଦେଇଥାଏ । ଧୋଇ ଦେଇଥାଏ ତାର ଚରଣଯୁଗଳ-ତାର ଆନନ୍ଦାଶ୍ରୁରେ । ମୁଁ ନିଜେ ନାରୀ ହୋଇ ମୋ ନିଜର ମନର କଥା ନିଜେ ବୁଝି ତୋ ହାତରୁ କେମିତି ଛଡ଼େଇ ନେବି ଲୋ ଅପା, ମନସୁଖଙ୍କର ହାତକୁ ? ମୋ ଠାରୁ ଯଦି କିଏ ସୁବୋଧଙ୍କୁ ନେଇଯାଏ ମୁଁ କଣ ସତେ ବଞ୍ଚିରହିପାରିବି ?

ନା, ପାରିବିନି ଲୋ, ପାରିବିନି ।

ମୁଁ ତ ମରିଯିବି ।

ନା, ସେ ସିନା ତାର ସବୁ ହରାଇ ଦେଲା, କିନ୍ତୁ ନମି ଅପାର ଭବିଷ୍ୟତର ବିକାଶପଥରେ କାହିଁକି ଅନ୍ତରାୟ ସୃଷ୍ଟି କରିବ ? ନମି ଅପା ଡାକ୍ତରାଣୀ । ମନସୁଖ ମଧ୍ୟ ଡାକ୍ତର । ଡାକ୍ତର ସ୍ୱାମୀକୁ ପାଇ ନମି ଅପାର ବୈବାହିକ ଜୀବନ ଖୁସିରେ ଭରି ଉଠୁ ।

ତେବେ ସେ କାହାକୁ କହିବନି ?

ପାପକୁ ଲୁଚାଇ ରଖିବ ? ନିଜର ଅସଲ ସ୍ୱରୂପ ପ୍ରକାଶ କରିବନି ? ନିଜେ ଭିତରେ ଏକ ପ୍ରକାର ହୋଇ ବାହାରେ ଅନ୍ୟ ପ୍ରକାର ହୋଇ ଅଭିନୟ କରିବ ?

ଉଃ...! ତେବେ ତ ସେ ଭୟଙ୍କର ପାପିନୀ ! ସେ ତ ଭୟଙ୍କର ପ୍ରବଞ୍ଚନା ! ଦୋଷ କର, ପାପ କର ଲୁଚାଇ ରଖିବାର ଚେଷ୍ଟା ଯେଉଁଠି, ନିଜର ବିବେକ ମଣିଷର ନୃଶଂସ ହତ୍ୟା ସେଇଠି । ନିଜର ସମସ୍ତ ବ୍ୟକ୍ତିତ୍ୱର ମୃତ୍ୟୁ ସେଇଠି ।

ରେନୁ ତ କେବେ ଏତେ ଭ୍ରଷ୍ଟ ହୋଇପାରେନା ! ସ୍ୱପ୍ନ ତ କେବେ ଏତେ ତଳକୁ ଓହ୍ଲାଇପାରେନା ! ତାହାର ହିଁ ସହଜ, ସରଳ, ସ୍ୱଚ୍ଛନ୍ଦ ବିକାଶ । ସେ ଜଟିଳତାଠାରୁ ବହୁ ଦୂରରେ । ସେ ଯାହା ନୁହେଁ, ତାର ମିଥ୍ୟା ଆଶ୍ରୟ ନେବ କାହିଁକି ? ସମସ୍ତଙ୍କର ବିଶ୍ୱାସରେ ଧୋକ୍କା ଦେବ ! ନାଃ...ସେ ନିଶ୍ଚୟ କହିବ । ନିଶ୍ଚୟ କହିବ ଯେ ସେ ବାସି, ଛଡ଼ା ଫୁଲଟାଏ, ତାର ଆଉ ମଧୁ ନାହିଁ, ତାର ଆଉ ସୁବାସ ନାହିଁ, କେବଳ ଅଛି ବିକୃତ ରୂପ, ନିର୍ଗନ୍ଧ ରୂପ ।

କିନ୍ତୁ କାହାକୁ ବା ସେ କହିବ ?

ହଁ, ସେ କହିବ ତାକୁ; ଯାହାପାଇଁ ସେ ଏ ଦେହକୁ ପିଲାଟି ବେଳୁ ବଢ଼ାଇ ଥିଲା, ଯାହାପାଇଁ ଏ ଦେହକୁ ସଜ ସୁମନଟି ପରି ଗଢ଼ିଥିଲା, ତାକୁ ସେ କହିବ ମୁଁ ଆଜି ସ୍ୱୟଂସମ୍ପୂର୍ଣ୍ଣ ଅକ୍ଷତ କୁମାରୀ ନୁହେଁ ସୁବୋଧ, ମୁଁ ଆଜି ରିକ୍ତ, ନିଃସ୍ୱ, ପଥଭ୍ରଷ୍ଟ । ଦେହ ସିନା ଭାଜିଇଁ ଦେଇଛି ଗୋଟାଏ ପଶୁ ପାଖରେ, କିନ୍ତୁ ମନ ଭଜେଇଁ ନି । ମନ ମୋର ସେହିପରି ଅବିକଳ, ଅବିକୃତ । ମନର ଦୀପ ଯେତେ ଝଡ଼ ଆସୁ, ଯେତେ ତୋଫାନ ଆସୁ ପଛେ, ସେ ଲିଭିବନି, ସେ ସଦାବେଳେ ହିଁ ତୁମରି ପାଇଁ ଜଳୁଥିବ । ମତେ କ'ଣ ତୁମେ ଆଉ ସତେ ହାରୁଟିଏ ଦେବନି ସୁବୋଧ ?

ସ୍ୱପ୍ନ କାନ୍ଦିବାକୁ ଲାଗିଲା ।

ମା' ତୁ କାନ୍ଦୁଛୁ ?

କିଏ ? ବାପା ?

ତୁ ତ ମା' କେବେ କାନ୍ଦୁନାହିଁ ? ଆଜି କାନ୍ଦୁଛୁ କାହିଁକି ?

ନାହିଁ ତ ! ସାନୁ ଲୁହ ତର ତରରେ ପୋଛିବାକୁ ଲାଗିଲା ।

ସୁବୋଧ ତତେ କ'ଣ କହୁଛି ମା ?

ସୁବୋଧ ! ସାନୁ ବାପାଙ୍କୁ ଚାହିଁଲା ! ଆଃ···କି ମମତାମୟ ସେ ଆଖି ଦୁଇଟି, ସେଇ ଆଖି ଦୁଇଟି, ଯେପରି ଅସ୍ଥି ମାଂସ ଭେଦକରି ସାନୁର ହୃଦୟର ଅକୁହା କାହାଣୀର ପୃଷ୍ଠା ପଢ଼ିବାରେ ଲାଗିଛି !

ସାନୁର ଇଚ୍ଛା ହଉଥିଲା – ବାପାଙ୍କ ଗୋଡ଼ ତଳେ ଢ଼ୁ' ଢ଼ୁ' କରି ମୁଣ୍ଡ ପିଟି କୁହନ୍ତା, ବାପା ! ମତେ ଆଉ ତମେ ସାନୁ ଡାକନା ବାପା, ମତେ ସେପରି ସ୍ନେହରେ ଆଉ ସାନୁ ଡାକନା । ମୁଁ ତ ଗୋଟିଏ ବିଷକନ୍ୟା' ବିଷ ମୋର ସାରା ଦେହରେ । ମତେ ଘୃଣାକର, ମତେ ପାଦରେ ଠେଲି ଦିଅ ! ମୁଁ ତାହା ସହିବ । ହେଲେ ଏ ସ୍ନେହ, ଏ ବିଶ୍ୱାସର ଶକ୍ତ ବୋଝକୁ ଆଦୌ ସହିପାରିବିନି ।

ଚା' କପେ ଆଣିଲୁ ମା ! ବିପ୍ରଚରଣ ସାନୁର ମନକୁ ଅନ୍ୟ ଦିଗରେ ଏଡ଼ାଇ ଦେବା ପାଇଁ ଏପରି କହିଲେ ।

ସାନୁ ଚା' କରିବା ପାଇଁ ଚାଲିଗଲା ।

କିନ୍ତୁ କାହିଁକି ସେ ସାନୁ ଏତେ ବିମର୍ଷ ? କାହିଁକି ଏତେ ଗମ୍ଭୀର ? କାହିଁକି ଏତେ ଅନ୍ୟମନସ୍କ ? ଆଜକୁ ପ୍ରାୟ ପନ୍ଦର କୋଡ଼ିଏ ଦିନ ହବ ଏହା ଦେଖି ବିପ୍ରଚରଣ କିଛି ଠିକ୍ କରିପାରୁନାହାନ୍ତି ।

ସେ ତ ସେଇପରି ଠିକ୍ ଥିଲା, ଦାଣ୍ଡ ପାଖରୁ ବାରିପାଏ, ଗୁହାଳରୁ ଠାକୁର ଘର ପାଏ ଧାଇଁ, ପଢ଼ା, ଉଠିକାମ କରୁଥିଲା, ଶେଷ ଉପାସରେ ନିଯୁକ୍ତ କାମକରି କେବେ କ୍ଳାନ୍ତ, ଅବଶ ହୋଇ ପଡ଼ୁନଥିଲା । କିନ୍ତୁ ସଦାବେଳେ ହସୁଥିଲା—ପ୍ରସନ୍ନତାର ହସ, ସତେ ଯେପରି ଝର୍ଣ୍ଣ ଝରଣୀଟିଏ, ପ୍ରତି କଥାରେ ହସ । ଆପତ୍ତି ନାହିଁ—ଅଭିଯୋଗ ନାହିଁ । ବିଦ୍ରୋହ ନାହିଁ । ସଦାବେଳେ କହୁଥିଲା କେତେ କଥା । ସଦାବେଳେ ଚଞ୍ଚଳ ମୁଖର ହୋଇ ଏ ଘରଟାକୁ ସୁନା କରି ଦେଇଥିଲା । କିନ୍ତୁ ଆଜ ସେ ସବୁ କାହିଁ ? ଆଜ ତାର ସୁଖ କାହିଁ କୁଆଡ଼େ ଗଲା ? ଚନ୍ଦ୍ର ଉହୁଆ ମୁହଁରେ ଆଜ କାହିଁକି ଏ କଳାବାଦଲ ଘୁଇମର ଘନଘଟା ? ସଦାବେଳେ କାନ୍ଦ କାନ୍ଦ, ସଦାବେଳେ ଉଦାସ । ସଦାବେଳେ ଥକ୍କାମାରି ବସିବା । ସଦାବେଳେ ଶୂନ୍ୟକୁ ଚାହିଁବା ।

ସଦାବେଳେ ଆନମନା ଭାବ । ଡାକିଲେ ବି ଶୁଣୁନି । ଏ ସବୁ ପରିବର୍ତ୍ତନ ଏ ଗନ୍ଧୁଠାରେ କାହିଁକି ଦେଖାଗଲା ? ଗନ୍ଧୁ ତାଙ୍କର ଝିଅ । ଗନ୍ଧୁର ପ୍ରକୃତିକୁ ସେ ପିଲାବେଳୁ ଭଲଭାବେ ଜାଣିଛନ୍ତି ; କିନ୍ତୁ ଏପରି ଘୋର ପରିବର୍ତ୍ତନ ସେ କେବେ ଆଶା କରି ନଥିଲେ । ସତେ ଯେପରି ଏ ତାଙ୍କର ଗନ୍ଧୁ ନୁହେଁ । ଗନ୍ଧୁର ଦେହରେ ଅନ୍ୟ କେଉଁ ମୂକ ଆତ୍ମା ସବାର ହୋଇ ତାକୁ ମୂକ କରି ଦେଇଛି, ତାକୁ ନିର୍ଜୀବ, ବଧିର କରିଦେଇଛି ।

ଗନ୍ଧୁ ହାତରେ କପ୍ ଧରି ଚେଷ୍ଟାଇ ଘରୁ ଆସିଲା ।

କ'ଣ ମା' ଚା' ଆଣିଲୁ ?

ନା' ବାପା, କୋର୍ନଭିଟା ।

ବିପ୍ରଚରଣ ଶିହରି ଉଠିଲେ—କ'ଣ ଦୁଧ ?

ହଁ ।

କିନ୍ତୁ ମୁଁ ତ ମା, ଦୁଧ ଖାଏନା ।

ଆଜି ଭୁଲିଗଲି ବାପା ଚା' ଆଣିବାକୁ, ଏଇ ଦୁଧ ପିଇ ଦିଅନ୍ତୁ, ପରେ ଚା' ନେଇ ଆସିବି ।

କିନ୍ତୁ ତୁ ତ ମା' କେବେ ଏକଥା ଭୁଲୁ ନାହିଁ । ମୁଁ ଜଣେ ଲକ୍ଷ୍ୟ କରିଛି, ଏହା ବର୍ଷ ବର୍ଷ ଧରି ମୋର ଚା'ଖାଇବା କଥାଟା ତୁ କେବେ ଭୁଲିନାହୁଁ ? ତୋ'ର କ'ଣ ହୋଇଛି ମା' ?

ଗନ୍ଧୁ ମ୍ଳାନ ହସିଲା, କହିଲା—କଅଣ ସେ ହବ ? ଆପଣ ଏଇ ଦୁଧ ପିଇ ଦିଅନ୍ତୁ ବାପା ।

ନା—ନା, ମା, ତୁ ମତେ ବାଧ କରନା । ମୁଁ ଦୁଧ ପିଇବିନି । ଆଉ କିଛି ଦେଇ ହେବନି । ବିପ୍ରଚରଣ କେଜାଣି କିପରି ଆତଙ୍କିତ ସ୍ୱରରେ ଚିତ୍କାର କରି ଉଠିଲେ ।

ବିପ୍ରଚରଣଙ୍କର ମନେପଡ଼ିଲା । ସେ ଦିନର ସେଇ କଥା, ଯାହାକୁ ସେ କେବେ, କଦାପି ଭୁଲି ପାରିବେନି । ସେ ଯେପରି ଘୃଣ୍ୟ ଏକ କରୁଣତା ବହନ କରି ତାଙ୍କର ସ୍ମୃତି ଭିତରେ ଦାଗ ହୋଇ ରହିଛି ।

ଅଃ···ସେ ଦିନର ସେଇ ଗନ୍ଧୁ !

ଅଉଡ଼ୁଆ, ଝଲସା କେଶ ତା'ର ମୁହଁକୁ ଝୁଲିଆସି ଘୋଡ଼ାଇ ରଖିଥିଲା । ପିନ୍ଧିଥିଲା ଗୋଟାଏ ଶସ୍ତା ଫ୍ରକ୍ ନିହାତି ଅପରିଷ୍କାର । ଗୋଡ଼ଆଡ଼େ ବାସନ ମଜା ପାଣି ଲାଗିଛି, ମୁହଁଆଡ଼େ ହାଣ୍ଡିକଳା ଲାଗିଛି । ରାତି ବାରଟା ବେଳେ ତା'ର ସବୁଦିନର ସେଇ କାମ କରୁଛି !

ହାତରେ ଦୁଧ ଗ୍ଲାସ ଧରି ସେ ନମିତା ପାଖକୁ ଗଲା— ଅପା, ଦୁଧ ଖାଇବନି ? ଉଠ ।

ନମିତା ବିରକ୍ତିରେ ନାହିଁ କଲା ।

ସବୁ କାମ ସାରୁ ସାରୁ ଡେରି ହୋଇଗଲା ଅପା, ଆଜି ଉଠି ଦୁଧ ପିଇଦିଅ । କାଲି ଆଉ ଡେରି କରିବିନି । ତୁମର ଶୋଇଲା ପୂର୍ବରୁ ଦୁଧ ଆଣି ଦେବି ।

ଆର ଘରୁ ବିପ୍ରଚରଣ ଶାସନ ଗଳାରେ କହିଲେ— ନମି, କାହିଁକି ରାତିଟାରେ ପିଲାଟାକୁ ହଇରାଣ କରୁଛୁ ? ଉଠି ଦୁଧ ପିଇ ।

ନମିତା ଦୁଧ ପିଇଥିଲା । ଅମିତା ଦୁଧ ପିଇଥିଲା । ବୁଢ଼ା ଦୁଧ ପିଇଥିଲା । ଗ୍ଲାସ ଗ୍ଲାସ ଦୁଧ ସମସ୍ତେ ପିଇଥିଲେ ।

ଖଟଟା ଉପରେ ପଡ଼ିରହି ବିପ୍ରଚରଣ ଦେଖିଲେ ଗୋଟାଏ ଜୀର୍ଣ୍ଣ ଶୀର୍ଣ୍ଣ ଝିଅ ଦୁଧ ଗ୍ଲାସ ଧରି ତାଙ୍କ ନିକଟରେ ଠିଆ ହୋଇଛି । କାତର ଆଖିରେ ତାଙ୍କୁ ଚାହିଁ କହୁଛି—ବାପା ଦୁଧ ଆଣିଛି ।

ବିପ୍ରଚରଣଙ୍କର କେଜାଣି କାହିଁକି ଆଖି ତଳକୁ ହୋଇଯାଇଥିଲା । ସବୁ କାମ ସାରି ଘର ଧୁଆ ଧୋଇ କରି, ବାସନ କୁସନ ମାଜି, ଶେଷରେ ଘର ପରିଷ୍କାର କରି ତଥାପି ବି ତା'ର ଗୋଟାଏ କାମ ବାକି ଅଛି । ସେଇଟା ଏଇ ଦୁଧ ପରଷିବା କାମ । ଶୀତ ରାତିର ବାରଟାରେ ସେ ଶୋଇ ନପଡ଼ି, ବିଛଣାରେ ଉଷୁମ ନ ଖୋଜି, ଥଣ୍ଡା ପାଣି ଆଉ ପବନକୁ ନ ଡରି ଛିଣ୍ଡା ଫ୍ରକ୍‌ଟା ପିନ୍ଧି କହୁଛି ବାପା ଦୁଧ ଆଣିଛି ।

ବିପ୍ରଚରଣ ଦୁଧ ଗ୍ଲାସଟାକୁ ଧରିଲେ । କିଛିକ୍ଷଣ ଭାବିଲେ, ଆଉ ତା'ପରେ ସେଇ ଗାନୁ ଅଗରେ ଦୁଧତକ ପିଇବାକୁ ଚେଷ୍ଟା କଲେ । ଗ୍ଲାସ୍‌ଟାକୁ ସବୁ ହାତକୁ କଢ଼ାଇ କହିଲେ—ତତେ କ'ଣ ଶୀତ ହେଉନି ମା' ? ତୋ'ର ଘୁଦର ? ନମିତା ପାଇଁ କିଣିଥିଲି, ଅମିତା ପାଇଁ, ତୋ' ପାଇଁ କିଣିଥିଲି, ହେଲେ ତୁ ଯେ ଭୁଲିଗଲୁ ? ତୋ' ଘୁଦର ?

କୋଉ ନେଇଗଲା ।

କୋଉ ନେଇଗଲା ?

ହଁ । କହୁଥିଲେ – କାମ କଲା ବେଳେ ଗୁଦର ଘୋଡ଼ି ହେଲେ ଛଡ଼ ହୋଇ ପଡ଼ିଯିବୁ । ମତେ ଦେ, ତୋ' ପାଇଁ ସାଇତି ଟ୍ରଙ୍କ୍‌ରେ ରଖିଥିବି । ଆଜି ମୋର ଏ ଲୁଗାଟା ନେଇ ଘୋର ହୁଅ ।

ବସ୍ତ୍ରଚରଣ ନୀରବ । ଖାଁଷଣ ଶବ୍ଦରେ ନୀରବ । କହିବାକୁ ଯେପରି ତାଙ୍କର କିଛି ହିଁ ନାହିଁ । ସେ ନିର୍ବାକ୍ । ପାଟିକଲେ ଏ ଘରେ କାହାଠାରୁ କି ଉତ୍ତର ପାଇବେ ?

ରାନୁ ସେହିପରି ଖୁଣ୍ଟିରେ ଦି ହାତକୁ ଛନ୍ଦି ପକାଇ ଶୀତରେ ଥରି ଠିଆହୋଇଛି ।

ବସ୍ତ୍ରଚରଣ ଦବିଗଲେ ।

ଏ ଘରେ ସେ କେବଳ ବୁଢ଼ାଁଣ୍ଡି ଶାନ୍ତ—ଶାନ୍ତ । ପାଟିକଲେ ଅନ୍ୟ ଦିଗରୁ କଲ୍ୟାଣୀଙ୍କର ଯେଉଁ ଗର୍ଜନ ତର୍ଜନ ହେବ, ସେଥିରେ ସବୁଠାରୁ ବଡ଼ ସାଲିସ ହିଁ ନୀରବତା ।

ଜୁହୁ ଜୁହୁ ହୋଇ ବସ୍ତ୍ରଚରଣ ରାନୁକୁ ଚାହିଁଲେ ।

ଆଃ···କି ଯେ ସେ ଆଖି ଦୁଇଟି ! କି ଯେ କାତର, କରୁଣ ସେ ଆଖିର ଭାଷା ! ସେ ଆଖି ଦୁଇଟି ଯେପରି ବସ୍ତ୍ରଚରଣଙ୍କର ଗୁପ୍ତ ଚର, କଲିଜା ତଳ ଅନ୍ତରର ଖୁବ୍ ଅତଳତମ ପ୍ରଦେଶରେ ଦୁଇଟି, କେବଳ ହିଁ ଦୁଇଟି ଆଉ ସେଇ ଦୁଇଟି ହିଁ ଅନ୍ୟ କାହା ପାଇଁ ଯଥେଷ୍ଟ ନ ହେଲେ ବି ବସ୍ତ୍ରଚରଣଙ୍କ ପାଇଁ ଯଥେଷ୍ଟ—ଦୁଇଟି ତାତିଲା ଲୁହ ବିନ୍ଦୁ ଢାଳି ଦେବାକୁ ଚେଷ୍ଟା କରୁଛି ।

ବସ୍ତ୍ରଚରଣ ରାନୁକୁ ଚାହିଁପାରିଲେ ନାହିଁ । ଘର ସାରା ସମସ୍ତେ ନିଶ୍ଚିନ୍ତ, ନିଦକ ନିଦରେ ଖାଇ ପିଇ ଘୁଙ୍ଗୁଡ଼ି ମାରୁଛନ୍ତି, ଅଥଚ ବସ୍ତ୍ରର ପିଲାଟା ଦେଇଗର କାମରେ ଲାଗି ରହିଛି । ଥୁରୁ ଥୁରୁ ଥରୁଛି ।

ବସ୍ତ୍ରଚରଣଙ୍କର ଇଚ୍ଛା ହଉଥିଲା—ତାଙ୍କର ସେଇ ରାନୁକୁ କୋଳେଇ ଧରି ଉଠି ଭେଟେଇ, ଗାଢ଼ ଛାତିରେ ଶୁଆଇ ତା'ର ସବୁ ଦୁଃଖ ମେଣ୍ଟାଇବାକୁ ।

କିନ୍ତୁ ସବୁ କଥା କ'ଣ କରି ହୁଏ ? ଯେତେ ମନଥିଲେ ବି ପରିସ୍ଥିତି କ'ଣ ତାହା କରାଇ ଦିଏ ?

ଯେଉଁଠି ବର୍ଷସାରା ଝିଅ ବୋହୂଙ୍କ ରୋକଠାଣି ହୋଇଗଲା, ଯେଉଁଠି ଶୀତ ରାତିର କଣା ହୋଇ ଆସି ଟ୍ରଙ୍କ୍‌ରେ ସାଇତା ହୋଇ ରହିଲା, ସେଠି ରାମୁକୁ କଅଣ ଏ ଖଟଟା ଉପରେ ଶୋଇବା ପାଇଁ ଡାକିବାକୁ ବିପ୍ରଚରଣ ସାହସ କରିପାରିବେ ? ତା' ପାଇଁ ଖଟ ଉଦ୍ଦିଷ୍ଟ ନୁହେଁ, ତା' ପାଇଁ ଗଦି, ରେଜେଇ ଉଦ୍ଦିଷ୍ଟ ନୁହେଁ, ଏହା କେବଳ ନମିତା, ଅମିତା ପାଇଁ, ବୁଢ଼ା ପାଇଁ । କିନ୍ତୁ ତା' ପାଇଁ ରହିଛି ସମସ୍ତଙ୍କ ଖଟତଳେ ଯେଉଁ ସ୍ଥାନଟା ଅଛି, ସିମେଣ୍ଟ ଚଟାଣ, ସେଇଠି ଗୋଟିଏ ସପ, ଗୋଟିଏ ଛିଣ୍ଡା ହେସିଆ ଏ ପ୍ରବଳ ଶୀତ ପାଇଁ ଯଥେଷ୍ଟ । ସେ ବସ୍ତ୍ର ହେସଟା ଭିତରେ ଜାକିଜୁକି ପଡ଼ିଥିବ, ଆଉ ସାଙ୍ଗେ ସାଙ୍ଗେ ତା'ର ଆଖିପତାରେ ନିଦ କାହୁଁ ଘୋଟି ଆସିବ । ନିଦ ଯେଉଁଠି ପ୍ରଗାଢ଼, ଶୀତ ସେଠି କାହିଁ ?

ରାମୁ ଘର ବୁଲିଯାଇଥିଲା, ଆଉ ଗଲାବେଳେ ଘରର କବାଟ ଆଉଜାଇ ଦେଇ ଯାଇଥିଲା । ସବୁଦିନେ ସେ ଗଲାବେଲେ ସେ ଏ କାମ କରିବାକୁ ଭୁଲେନା !

ରାମୁ ପିଲା ବିପ୍ରଚରଣଙ୍କୁ ଦୁଧ ପିଆଇ ବୁଲିଯାଇଥିଲା, ବିପ୍ରଚରଣ କିନ୍ତୁ ଶୋଇପାରିଲେ ନାହିଁ । କେଜାଣି କାହିଁକି ତାଙ୍କର ମନଟା ଭୀଷଣ ହାଁ'ହାଁ'କାର କରୁଥିଲା, ସେ ଯେପରି ରାମୁକୁ ନିଜର ଅଜାଣତରେ ଦୂରକୁ ଠେଲିଦେଉଛନ୍ତି, ରାମୁ ପ୍ରତି ଅବହେଳା କରୁଛନ୍ତି । ସେ ଉଠିପଡ଼ି ରାମୁ ପାଖକୁ ଯିବାପାଇଁ କବାଟ ଖୋଲିଲେ । ବାହାରେ ଯାଇ ଦେଖିଲେ ବାସନମଜା କୁଣ୍ଡ ପାଖରେ ବସିଛି ଗ୍ଲାସରେ ବଳକା ଦୁଧକୁ ରାମୁ ଏକାଠି କରୁଛି, ଆଉ ଏକାଠି କରିସାରି ନିଜ ହାତରେ ଗ୍ଲାସଟିକୁ ଧରି ମୁହଁ ଲଗାଇ ପିଉଛି ।

ବିପ୍ରଚରଣ ଦୁଃଖରେ ଚିତ୍କାରି ଉଠିଲେ – ରାମୁ !

ବାପା ?

ରାମୁ ହାତରୁ ଗ୍ଲାସଟା ଖସି ପଡ଼ିଲା, ସେ କାନ୍ଦ ଉଠି କହିଲା – ମୁଁ ଚୋରି କରି ଦୁଧ ଖାଉନି ବାପା । ସମସ୍ତଙ୍କ ବଳକା ଅଇଁଠା ଦୁଧ ଏକାଠି କରି ଖାଉଛି ।

ଗନୁ, ଗନୁ ଲୋ ! ବପ୍ରଚରଣ ଗନୁକୁ କୁଣ୍ଢାଇ ପକାଇଲେ । ଗନୁକୁ ଛାତିରେ ନିବିଡ଼ ଭାବେ ଜାକି ଧରିଲେ । ଆହା···ପିଲାଟାର ଦୁଧ ଖାଇବା ପାଇଁ କେତେ ଇଚ୍ଛା । ସାହସ ନାହିଁ, କାହାକୁ ମାଗିପାରିନି । ଅଥଚ ସ୍ୱେର ବି କରିନି । ବଳକା ଅଇଁଠା ଦୁଧଟିକ ନର୍ଦ୍ଦମାକୁ ନ ଫୋପାଡ଼ି ନିଜେ ପିଇଛି ।

ଗନୁକୁ ଛାତିରେ ଚୁପିଧରି ତା'ର ମଥାର ବାଳକୁ ବପ୍ରଚରଣ ତାଙ୍କର ହାତର ଅଙ୍ଗୁଳିରେ କେବଳ ସାଉଁଳାଉଥିଲେ ଏବଂ ଆଖିରୁ ତାଙ୍କର ଝରୁଥିଲା କେବଳ ଲୁହ ।

ଆଜିର ଏ ଦୃଶ୍ୟ ଦେଖିବା ପାଇଁ ସେ କଅଣ କେବେ ଭାବି ପାରିଥିଲେ ? ଆଜି ଏ ଦୃଶ୍ୟର କରୁଣତା ଜୀବନର ଯେ ଏତେ ତୀବ୍ର ହୋଇପାରେ ସେ ଏକଥା କେବେ ଚିନ୍ତା ବି କରି ପାରି ନଥିଲେ । ସେ ସେହିପରି ତାଙ୍କର ଛାତି ଭିତରେ ଗନୁକୁ ଜଡ଼ାଇ ଧରିଛନ୍ତି, ଆଉ ନୀରବରେ ଅଶ୍ରୁପାତ କରୁଛନ୍ତି ।

ଛାତି ଭିତରେ ଥାଇ ଗନୁ କହିଲା—ମୁଁ ଆଉ ଆଦୌ ଦୁଧ ପିଇବିନି ବାପା, ଆଉ ଆଦୌ ଦୁଧ ପିଇବିନି । ତମେ କାନ୍ଦନା ବାପା । ଗନୁ ତା'ର ଟିକି ହାତରେ ବପ୍ରଚରଣଙ୍କର ଲୁହ ପୋଛି ଦେଉଥିଲା ।

ଗନୁ ! ବପ୍ରଚରଣ ବିକଳରେ କହି ଉଠିଲେ - ନା, ନା, ସେକଥା ହବନି ଝିଅ, ମୁଁ ତତେ ଦୁଧ ଦେଇପାରିବିନି, କାରଣ ବୋଉ ତୋ'ର ଏ କଥା ଦେଖି ସହିପାରିବନି, ହେଲେ ଆଜିଠୁ, ଆଜିଠୁ ତତେ ଛାତିରେ ଧରି କହୁଛି ଝିଅ···

ଗନୁ ତା'ର ସାନ ଆଖି ଦୁଇଟିରେ ବାପାଙ୍କ ମୁହଁକୁ ଚାହିଁ ରହିଥିଲା । ସେ ଦେଖିଲା ଯେ ବାପା କିଛି କହୁ ନାହାନ୍ତି । କିନ୍ତୁ ଗମ୍ଭୀର ହୋଇ ଯାଇଛନ୍ତି । ଅସମ୍ଭବ ଦୃଢ଼ତା ତାଙ୍କ ମୁହଁରେ ଖେଳୁଛି । ଗନୁ ଆଶ୍ଚର୍ଯ୍ୟରେ ବପ୍ରଚରଣଙ୍କୁ ଚାହିଁ କହିଲା - କିଛି କହୁନ ଯେ ବାପା ?

ନା, କିଛି ନୁହେଁ । ତୁ ଯା ଶୋଇବୁ । ବପ୍ରଚରଣ ଗନୁକୁ ଶୋଇବାକୁ ଛାଡ଼ି ଦେଇଥିଲେ ଆଉ ତା'ର ଦେହରେ ଘୋଡ଼ାଇ ଦେଇଥିଲେ ନିଜର ସାଲ୍ ଖଣ୍ଡିକ ।

ସେଇଦିନ ଠାରୁ ଆଜି ଆଜଯାଏ ହରପ୍ରଚରଣ ଦୁଧ ପିଇ ନାହାନ୍ତି । ଆଦୌ ପିଇ ନାହାନ୍ତି । ଘ'ରେ ଯାହା ଟିକେ ଦୁଧ ପଡ଼େ, ଏହାଛଡ଼ା ଅଧିକ ପିଇ ନାହାନ୍ତି ।

ବାପା !

ଅରେ ଗନୁ, ତୁ ଏତେବେଳଯାଏ ନେଇ କୋର୍ନଭିଟା କପ୍‌ଟା ଧରି ଠିଆ ହୋଇଛୁ ଯେଉଁମିତି ?

ଗନୁ ନମ୍ର ଭ ହସିଲା ।

ହରପ୍ରଚରଣ କହି ଉଠିଲେ ନା ମା', ମୁଁ ତ ଦୁଧ ଖାଉନି । ବୁଢ଼ା ହେଲଣି, ଦୁଧ କ'ଣ ମୁଁ ହଜମ କରି ପାରୁଛି ମା' ? ତୁ ନେଇ ଯା'···

ବାପା !

ହଁ ମା, ମତେ ବାଧ୍ୟ କରନା । ମୁଁ ଜାଣେ ତୁ କେତେ ଯତ୍ନ କରି ଏ ଦୁଧ କପ୍‌ଟା ତୋ' ବାପା ପାଇଁ ଆଣିଛୁ । କିନ୍ତୁ କ'ଣ କରିବି କହିଲୁ ? ଭଗବାନ ମତେ ଦୁଧ ଖାଇବାକୁ ମନା କରି ଦେଇଛନ୍ତି, ନଇଲେ କାହିଁକି ଦୁଧଟାକୁ ହଜମ କରି ପାରନ୍ତି ନାହିଁ ?

ଗନୁ ଛଳ ଛଳ ଆଖିରେ କହିଲା—ମୁଁ ପିନା ଘ' ଆଣିବାକୁ ଭୁଲିଗଲି ବୋଲି ବାପା, ଆଜ ଆପଣ ଘ' ଖାଇ ପାରିଲେନି । ମୁଁ ଭୁଲ କରିଦେଲି ବାପା । ଆପଣଙ୍କର ଖାଇବା ନ ଟାଇବା ବିଷୟରେ ମୁଁ ସତର୍କ ରହିବା ଉଚିତ୍ ଥିଲା । ଏ ଦୋଷଟା ପାଇଁ ଆପଣ ମତେ କ'ଣ କ୍ଷମା ଦେବେନି ?

ଗନୁ !

ଗନୁ ଆଉ କିଛି କହିପାରିଲା ନାହିଁ; ଝଡ଼ ବେଗରେ ଚାଲି ଯାଇଥିଲା । ଘର ଭିତରୁ, ହରପ୍ରଚରଣ ତାଙ୍କୁ ସେହିପରି ଚାହିଁ ରହିଥିଲେ ।

କ'ଣ ଦେଖୁଛ ?

କିଏ ? କଲ୍ୟାଣୀ ? ନା, ଏଇ ଗନୁ—

କ'ଣ ହେଲା ?

କିନ୍ତୁ ଲକ୍ଷ୍ୟ କରିପାରୁଛ ? ଝିଅଟା ହସୁଥିଲା, ବୁଲୁଥିଲା, ଖେଳୁଥିଲା କିନ୍ତୁ ଆଜି—ଚୁପ୍ ହୋଇ ବସିଛି, ଗୁମ୍‌ହୋଇ ବସିଛି, କାନ୍ଦୁଛି ।

କିନ୍ତୁ ଏସବୁ କାହିଁକି ହେଲା କଲ୍ୟାଣୀ ? ବିଚାରୀ ଝିଅଟାକୁ କିଏ କ'ଣ କହିଲା ? କିଏ ତା'ର ମନରେ ଆଘାତ ଆଣିଲା ? କିଏ ତାକୁ ଏପରି ଏକ ନିଷ୍ପ୍ରାଣ ନିର୍ବାକତା ଭିତରେ ଛାଡ଼ିଦେଲା ? ମୁଁ ଲକ୍ଷ୍ୟ କରିଛି ଠିକ୍ ସେହିଦିନ, ଯେଉଁଦିନ ତୁମର ଅପରେସନ ଗୋଟାଏ ଦିନ ବାକି ଥାଏ; ସେଇଦିନ ମନସୁଖ ତାକୁ ଆଣି ଛାଡ଼ି ଦେଇଥିଲେ ଘରେ କାର୍‌ରେ ବସାଇ । ସେଦିନ କେଜାଣି କାହିଁକି ତା'ର ଆଖି ଫୁଲି ଉଠିଥିଲା ଅସମ୍ଭବ ଭାବେ । ବୋଧହୁଏ ଖୁବ୍ କାନ୍ଦିଥିଲା ।

ହଁ, ମୋ ପାଖରେ ତ ବସି ରାନୁ ବହୁତ କାନ୍ଦିଥିଲା ।

ହଁ, ସେଇଆ ମୁଁ ଅନୁମାନ କରିଛି । କିନ୍ତୁ କି ଆଶ୍ଚର୍ଯ୍ୟର କଥା କଲ୍ୟାଣୀ, ମୁଁ ରାତିରେ ବାହାରକୁ ଉଠିଛି, ଦେଖିଛି ଖଟ ଉପରେ ସେହି-ପରି ମୁହଁକୁ ଭରା ଦେଇ ରାନୁ ବସିଛି, ଅଜ୍ଞ କ'ଣ ଭାବୁଛି, ନଇଲେ ନାହିଁ କାନ୍ଦୁଛି । ରାତିରେ ତା'ର ଆଖିରେ ଯେପରି ନିଦ ନାହିଁ । ତୁମେ ଦେଖିଛ କଲ୍ୟାଣୀ କି ଅସମ୍ଭବ ଭାବେ ଝିଡ଼ିଯାଇଛି ଏ ଝିଅଟା ।

ଆଜି ମନସୁଖ ଯେତେବେଳେ ମତେ ଦେଖିବାକୁ ଆସିବେ, ତାଙ୍କୁ ରାନୁର ସ୍ୱାସ୍ଥ୍ୟ କଥା ପଚାରିବା । କାଳେ କିଛି ଅଜଣା ରୋଗ ତାକୁ ଧରିଥାଇପାରେ ।

ହଁ ସେଇଆ ହିଁ କର କଲ୍ୟାଣୀ ।

ଅପରେସନ୍ ପରେ ଡାକ୍ତରଖାନାରେ ଦଶଦିନ ରହିବା ପରେ ଏଇ ଛଅ ସାତ ଦିନ ହେଲା ଘରକୁ ଆସିଛନ୍ତି କଲ୍ୟାଣୀ । ତାଙ୍କର ସ୍ୱାସ୍ଥ୍ୟର ବହୁତ ଅବନତି ଘଟିଛି । ଅପରେସନ୍ ପରର ପୂର୍ବ ସ୍ୱାସ୍ଥ୍ୟ ଫେରି ପାଇବାକୁ ତାଙ୍କୁ ଅନ୍ତତଃ ମାସେ ଦି'ଟା ଲାଗିପାରେ । ତା' ଛଡ଼ା ମନସୁଖଙ୍କର ପାଣ୍ଡିତ୍ୟପୂର୍ଣ୍ଣ ପ୍ରେସ୍‌କ୍ରିପସନ୍ ଓ ଡାଏଟ ବ୍ୟବସ୍ଥାରେ ସେ ପୂର୍ବ ସ୍ୱାସ୍ଥ୍ୟ ନିଶ୍ଚୟ ଫେରି ପାଇବେ । ସେଥିରେ ଚିନ୍ତା ନାହିଁ ।

ମନସୁଖ ଦି'ଦିନ ତଳେ ଆସିଥିଲେ ଏବଂ ଆଜି କଲେଜରୁ ଫେରି ଏଠାକୁ ଆସିବେ ତାଙ୍କୁ ଦେଖିବା ପାଇଁ । ସେତେବେଳେ ରାନୁର ଦେହ କଥା ବୁଝିନେଲେ ଚଳିବ ।

ଠିକ୍ ଏତିକିବେଳେ ହରପ୍ରସନ୍ନ ଓ କଲ୍ୟାଣୀଙ୍କର କଥାବାର୍ତ୍ତା ସମୟରେ ନମିତା ଆସି ପହଞ୍ଚିଗଲା, କହିଲା—କାହା କଥା କହୁଛନ୍ତି ବାପା ?

ନାହିଁ ମା, ଏଇ ରାଜୁଟା ଯେ କାହିଁକି ଏପରି ଉଇକ୍ ହୋଇ ଯାଇଛି ସେଇ କଥା ମୁଁ ତୋ'ର ବୋଉକୁ କହୁଥିଲି । ତୁ ରାଜୁର ଏ ପରିବର୍ତ୍ତନ ଲକ୍ଷ୍ୟ କରିନୁ ?

ହେତୁ, ସେ ସବୁ ବାଜେ କଥା ।

ନାହିଁ ମା, ତୁ ବୁଝୁନୁ ଚାହିଁନୁ । ମୁଁ ଚାହିଁଛି । ଏପରି ପରିବର୍ତ୍ତନ ମୁଁ ତା'ଠାରେ କେବେ ଦେଖିନ ।

ଅଚ୍ଛା, ତାହା ହେଲେ ମୁଁ ରାଜୁକୁ ଡାକେ । ନମିତା ରାଜୁକୁ ଡାକିଲା । ରାଜୁ ଯେତେବେଳେ ଆସି ପହଞ୍ଚିଲା, ନମିତା ପଚାରିଲା—କ'ଣ ହେଉଛି କହେ ରାଜୁ ! ତୋ' ପାଇଁ ବାପା ବୋଉ ଯେ ଖୁବ୍ ବ୍ୟସ୍ତ ।

ହାତରେ ଅଣ୍ଟା ଚିକଟାକୁ ଛଡ଼ାଉ ଛଡ଼ାଉ ରାଜୁ କହିଲା—ନାଇଁ ମୋର କ'ଣ ହବ ଯେ ? କାହିଁ କିଛି ତ ହୋଇନ ।

ନମିତା ହସି ହସି କହିଲା—ହୋଇଛି ବାପା, ସେତ କହୁଛି କିଛି ହୋଇନ, ଆଉ ତମେ ଜୋର ଜବରଦସ୍ତି କରି କହୁଛ ନିଶ୍ଚୟ କିଛି ହୋଇଛି । ରାଜୁର ଆଖିରୁ ଲୁହ ଟୋପାଏ ଝରି ଗଲେ, ତୁମ ଛାତିରୁ ତ ରକ୍ତ ବୁନ୍ଦାଏ ଝରିଯାଏ ବାପା, ନଇଲେ ତୁମେ ଗୋଟାଏ ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟବତୀ ଝିଅଟାକୁ ରୋଗିଣୀ ବୋଲି ପ୍ରମାଣିତ କରନ୍ତ ?

ରାଜୁ ତା'ର ଆଖି ତଳକୁ କରି ଓଠକୁ ଦାନ୍ତରେ କାମୁଡ଼ି ଠିଆ ହୋଇଥିବ ଆଉ ହ' ହାତର ଅଣ୍ଟା ଚିକଟାକୁ ଛଡ଼ାଉଥିଲା ।

ନମିତା ସେଇପରି ହସି ହସି କହିଲା—କ'ଣ ପରଟା କରୁଛୁ ? ହୋଇଛି ସେ ପରଟା ଫରଟା ମୋ ଦେହ ଚଳିବନ । ପୁରି କର । ହଁ ବୋଉକୁ କମଳା ରସ ଦେଇ ସାରିଲୁଣି ?

ହଁ ।

ସେଇ ଆପେଲ୍‌ଟ୍ ଜୁସ୍ ?

ହଁ ।

ଟମାଟୋନେକ୍ ?

ହଁ ।

ମୁଁ ତ ଜାଣେ ରନୁ ତୁ ସବୁ କରିବୁ । କିନ୍ତୁ ପରୀକ୍ଷା କରିବୁନି । ଆଜି ପୁଣି ନମସ୍ତେ, ବୁଝିଲୁ ?

ରନୁ ହସି କହିଲା—ହଁ, ନମସ୍ତେ ।

ବିପ୍ରଚରଣ ଓ କଲ୍ୟାଣୀ ଦି' ଭଉଣୀଙ୍କର କଥା ଶୁଣୁଥିଲେ । ଠିକ୍ ଏତିକିବେଳେ ଘର ଭିତରକୁ ପଶିଆସିଲେ ମନସୁଖ ।

ରନୁର ସର୍ବାଙ୍ଗ ଶରୀର ଉପରେ ଥରି ଉଠିଲା । ତରତରରେ ତାର ଦେହର ଲୁଗା ପରୀକ୍ଷା କରି ନେଲା । ଭଗବାନ ତାକୁ ଷାଠିଏ ହାତ ଶାଢ଼ୀ ଦେଇଥାନ୍ତେ କି ! ଘେରାଇ ନଥାନ୍ତା ।

କ'ଣ ରନୁ ଭଲ ଅଛ ?

ଆଜ୍ଞା ? ରନୁ ମନସୁଖଙ୍କର ମୁହଁକୁ ଚାହିଁଲା । ତାଙ୍କର ତୀକ୍ଷ୍ଣ ଚକ୍ଷୁକୁ ନଚାଇ ସେ ମୃଦୁ ହସୁଛନ୍ତି । ରନୁ ଝାଉଁଳି ପଡ଼ିଲା ।

ଭଲ ଅଛ ?

ଆଜ୍ଞା... !

ରନୁ କାନ୍ଥଟାକୁ ଆଉଜି ଠିଆ ହୋଇଥିଲା । କାନ୍ଥକୁ ଯଦି ଆଉଜି ଠିଆ ହୋଇ ନଥା'ନ୍ତା ତେବେ ହୁଏତ ପଡ଼ିଯାଇଥା'ନ୍ତା । ଇସ୍... ଏ ଲୋକଟା କି ସାହସରେ ତାକୁ କୁଶଳ ଜିଜ୍ଞାସା କରୁଛି । ତାକୁ ହତାଶାର ଅତଳ ସାଗରରେ ବୁଡ଼ାଇ ପୁଣି ତାକୁ ଚାହିଁ ହସୁଛି — ସତେ ଯେମିତି ସେ ଏ ବିଷୟ-ର କିଛି ଜାଣେନା । ରନୁ ବିଷୟରେ ସେ ସମ୍ପୂର୍ଣ୍ଣ ନିରୀହ । ସମ୍ପୂର୍ଣ୍ଣ ଭଦ୍ର ନିର୍ବିକାର - ନିର୍ଲିପ୍ତ ।

ରନୁ ସମ୍ପୂର୍ଣ୍ଣ କ୍ଳାନ୍ତ ପରିଶ୍ରାନ୍ତ ଭାବେ ଟଳି ଟଳି ଚାଲିଯାଉଥିଲା । କିନ୍ତୁ ଏହି ସମୟରେ ସେ ପଛରୁ ଶୁଣିପାରିଲା ବିପ୍ରଚରଣ ଡାକୁଛନ୍ତି— ରନୁ ଶୁଣିଯା' ।

ରନୁ ଠିଆହେଲା ।

ବିପ୍ରଚରଣ କହିଲେ—ରନୁକୁ ଦେଖିପାରୁଛ ବାପା ? ତାର ଏଇ ସ୍ୱାସ୍ଥ୍ୟ ଯେ ଏତେ ଡେଟିରିଓରେଟ୍ କରୁଛି କାହିଁକି ମୁଁ ଜାଣିପାରୁନି, ହୁଏତ ତମେ ଯଦି ଟିକେ ଦେଖନ୍ତ ।

ମନସୁଖ ରନୁକୁ ପିଇଲା ଆଖିରେ ଚାହିଁ ରହିଲେ ।

ନା—ନା, ମୋର କିଛି ହୋଇନି । ମୋର କିଛି ହୋଇନି । ମୁଁ ସମ୍ପୂର୍ଣ୍ଣ ଭାବରେ ସୁସ୍ଥ । ମୋତେ କାହାର ଦେଖିବାର ଦରକାର ନାହିଁ । ମୋର କୌଣସି ଡାକ୍ତର ପ୍ରୟୋଜନ ନାହିଁ ।

ରେନୁ ଝଡ଼ବେଗରେ ଚିତ୍କାର କରି କରି ସେଠାରୁ ଚାଲିଗଲା । କୁଆଡ଼େ ଯିବ ସେ ? କୁଆଡ଼େ ବା ଯିବ ସେ ? ଚତୁର୍ଦ୍ଦିଗରୁ ଯେପରି ଯାବତୀୟ ହାହାକାରର ପ୍ରବଳ ସାନ୍ଦ୍ର ତୋଫାନ୍ ତାରି ଆଡ଼କୁ ମାଡ଼ି ଆସୁଛନ୍ତି ଏବଂ ସେ ସେଇ ତୋଫାନ ଭିତରେ ତୃଣବତ ପରି ବୁଲୁଛି । ଆଉ ବୁଲୁଛି ।

କିଏ ? ସୁବୋଧବାବୁ ? ରେନୁ ଦେଖିଲା ସୁବୋଧ ଠିଆ ହୋଇ ତାରି ଆଡ଼କୁ ଚାହିଁ ରହିଛନ୍ତି ।

ମୋର ଓ. ଏ. ଏସ୍ ପରୀକ୍ଷା ସରିଯାଇଛି, ଆଉ ତୁମରି ପାଇଁ ତ ମୁଁ ଓ. ଏ. ଏସ୍. ହୋଇଛି, ଆଉ ତୁମରି କଥା ହିଁ ସତ ହବ । ମୁଁ ନିଶ୍ଚୟ ଓ. ଏ. ଏସ୍. ପାଇବି ।

ଗୁଡ଼ାଏ ଦୁଃଖ ଆଉ ଗୁଡ଼ାଏ ଖୁସି ଏପରି ଏକ ଗୋଳମାଳିଆ ଅବସ୍ଥାରେ ରେନୁ କି ଉତ୍ତର ଦବ ଠିକ୍ କରିପାରିଲା ନାହିଁ, ସେ କେବଳ ବୋକିଟି ପରି ସୁବୋଧର ମୁହଁକୁ ଚାହିଁ ରହିଲା । ଆଖିରେ ପଲକ ପଡ଼ୁ ନଥିଲା ।

ତୁମର କ'ଣ ହୋଇଛି ରେନୁ ? ଏପରି ମତେ ଚାହିଁ ରହିଛ ଯେ !

ସତେ ମୋର କ'ଣ ହୋଇଛି ? ସମସ୍ତେ ପଚାରୁଛନ୍ତି କ'ଣ ହୋଇଛି ? ବାପା ବୋଉ, ଅପା, ଆଉ ସବାଶେଷରେ ତୁମେ ବି ପଚାରୁଛ କ'ଣ ହୋଇଛି ? ହେ ଭଗବାନ ! ମୋର ଯେ କ'ଣ ହୋଇଗଲା ! ରେନୁ ସେଇପରି ନିଷ୍ପଲକ ଆଖିରେ ସୁବୋଧକୁ ଚାହିଁ ରହିଥିଲା ।

ରେନୁ !

ରେନୁ ସୁବୋଧକୁ ନିର୍ଗବ ଆଖିରେ ଚାହିଁ ରହିଥିଲା ।

ରେନୁ !

ଅନ୍ୟମନସ୍କ ଭାବେ ରେନୁ କହିଲା—ଏଁ... ?

ମୁଁ ଓ. ଏ. ଏସ୍ ପାଇବି, ଏଥିରେ ତୁମେ ଖୁସି ନୁହଁ ରେନୁ ? ତୁମରି ଡେନ୍ ବକା ଟଙ୍କାରେ ତ ମୁଁ ମାଜିଷ୍ଟ୍ରେଟ୍ ହେବି, ଅଥଚ ତମେ—

ରନୁ ହସି ଉଠିଲା, କହିଲା—ନା ନା ସୁବୋଧ, ମୁଁ ଯଦି ତୁମର ଏ ବଡ଼ତ୍ୱରେ ଖୁସି ନ ହେବ ଖୁସି ହବ ଆଉ କିଏ ? ମୁଁ ତ ତୁମର ସେଇ ଶୁଭଦିନକୁ ଚାହିଁ ରହିଛି, ସେଉଁଦିନ ତୁମେ ମୋର ଆଗରେ ଜିପ୍ ଚଢ଼ି ଅଫିସ୍‌କୁ ଯିବ । ହାକିମ ହେବ । ହେଦିନ ମୋର ଗୁଡ ପୁଲ ଉଠିବ । ହେଲେ—ହେଲେ—ତୁମେ କ'ଣ ସତେ ମୋ'ପାଇଁ ହାରଟିଏ ଦବ ନାହିଁ ସୁବୋଧ !

ମୁଁ ଅଳି କରୁଛି ସୁବୋଧବାବୁ ମୋ ପାଇଁ ହାରଟିଏ, କେବଳ ହାରଟିଏ । ନଇଲେ ମୁଁ ମରିଯିବି । ବାୟାଣୀ ହେଇଯିବି ।

ସୁବୋଧ ଦେଖିଲା, ରନୁ ଯାହା ହସୁଥିଲା ଏଥର ସେ ହସ ଲିଭିଯାଇ ତାର ଆଖି କୋଣରେ ଅଶ୍ରୁ ସଞ୍ଚାର ହେଉଛି । ଆଜି ସେ ଅଶ୍ରୁ ଭିତରେ ରନୁ ଯେପରି ଚାହିଁ ରହିଛି ସେହି ଶୁଭ ଦିନକୁ, ଯେଉଁଦିନ ସୁବୋଧ ତା'ର ବେକରେ ହାରଟିଏ ପିନ୍ଧାଇ ଦଉଛି ।

ସୁବୋଧ ରନୁର ହାତ ଧରି କହିଲା—ମତେ ତୁମେ ଅବିଶ୍ୱାସ କରନି ରନୁ । ମୁଁ କ'ଣ ଏତେ କୃତଘ୍ନ ? ତୁମେ ତ ମୋ ଜୀବନରେ ଅମା ଅନ୍ଧକାରର ବଣି ଟୁଣ୍ଡ । ମୁଁ ତୁମକୁ ଭୁଲିଯିବି କିପରି ?

ସୁବୋଧର ହାତ ଉପରେ ବୁନ୍ଦା ବୁନ୍ଦା ଅଶ୍ରୁର ଫୁଲ ଝରି ପଡ଼ୁଥିଲା ରନୁର ଆଖିରୁ ।

ତାଙ୍କର ଦୁଇ ହାତକୁ ସିନା କୌଣସି ଫୁଲମାଳା ଆଜ ଗୁନ୍ଥି ନଥିଲା, କିନ୍ତୁ ଗୁନ୍ଥି ଥିଲା ଅଶ୍ରୁର ଫୁଲମାଳା । ଅଦୃଶ୍ୟ ଫୁଲମାଳ ।

କିନ୍ତୁ ସେ ଅଦୃଶ୍ୟ ଫୁଲମାଳା, ଯାହାକି ଅଶ୍ରୁରେ ରୂପାୟିତ ହୋଇଥିଲା, ତାହାର ବନ୍ଧନ, ତାହାର ନିବିଡ଼ତା, ତାହାର ଉଷ୍ଣତା କିଏ କେତେ ଅନୁଭବ କରିଥିଲା ତାହା ହୁଏତ ସେଇ ରନୁ କହିବ, ସେଇ ସୁବୋଧ କହିବ, ଅନ୍ୟ କିଏ କହିପାରିବନି ।

ହାତର ପଡ଼ିଥିବା ଅଶ୍ରୁକୁ ପୋଛି ସୁବୋଧ ରନୁକୁ ବିସ୍ମୟ ଦୃଷ୍ଟିରେ ଚାହିଁ ରହି ଭାବୁଥିଲା—ଏଇ ରନୁଟା ସତେ କାହିଁକି କାନ୍ଦୁଛି ? କ'ଣ ଖୁସିରେ ? ଆନନ୍ଦରେ ? ଭାବାବେଗରେ ? କାହିଁକି ଏତେ କାନ୍ଦୁଛି ?

ବରଣ୍ଡାରେ ଲଣ୍ଠନର ଆଲୁଅ ସ୍ତିମିତ—ମିଞ୍ଜି ମିଞ୍ଜି ଜଳୁଛି । ଆଜି ସୁବୋଧର ବାପା, ବିପ୍ରଚରଣଙ୍କ ସାଥୀରେ ଟୁରରେ ଯାଇଛନ୍ତି । ଆଲମ୍ ଘଡ଼ିରେ ରାତି ଏଗାରଟା ବାଜିବାକୁ ଆଉ କିଛି ମିନିଟ ବାକି ଅଛି । ସୁବୋଧ ଭାବୁଥିଲା ରାନୁ କଥା ।

ଏହି ସମୟରେ ସୁବୋଧ ଶୁଣିଲା କେଉଁଠୁ ହାତ କାଚର ରୁଣୁଝୁଣୁ ଶବ୍ଦ । କିଏ ? ରାନୁ ?

ହଁ... ମୁଁ ...।

ସୁବୋଧ ଖଟଟା ଉପରୁ ଡେଇଁପଡ଼ି ରାନୁପାଖକୁ ଧାଇଁଗଲା । ତାର ହାତକୁ ଧରି ସୁବୋଧ ପଚାରିଲା, ଏତେ ରାତିରେ ?

ରାନୁ କହିଲା—ରାତିରେ କ'ଣ ଆସିବାକୁ ମନା ?

ଆରେ ମନା କାହିଁକି ହେବ ? ତମେ ତ କେବେ ଆସନା ?

କିନ୍ତୁ ଆଜି ତ ଆସିଛି ।

ମୁଁ ବହୁତ ଖୁସି ରାନୁ, ତୁମକୁ ଏତେ ନିକଟରେ ପାଇଛି, ଏତେ ନିର୍ଜନରେ ପାଇଛି, ମୋର ଆନନ୍ଦର ସୀମା ନାହିଁ ।

କିନ୍ତୁ ଏଥିରେ ଖୁସି ହେବାର କିଛି କାରଣ ନାହିଁ ସୁବୋଧ । ତମେ ହୁଏତ ମତେ ଦେଖି ଏତେ ଖୁସି ହୋଇପଡ଼ୁଛ, କିନ୍ତୁ ମୁଁ ଯେତେବେଳେ ସବୁ କଥା କହିବି—ସବୁ କଥା । ସେତେବେଳେ ତୁମେ କ'ଣ ଖୁସି ହୋଇ ପାରିବ ? କୁହ, କୁହ ସେତେବେଳେ ତୁମେ କ'ଣ ସେଇ ଖୁସିରେ ମତେ ତୁମର ଛାତିକୁ ଟେକି ନେଇପାରିବ ? ରାନୁ କଥାରେ ସିନା କହି ପାରିଲା ନାହିଁ, ମନ ଭିତରେ କହିବାକୁ ଲାଗିଲା ଚୁପ୍ ହୋଇ ।

ରାନୁ, ତମେ କାନ୍ଦୁଛ ? ତୁମର କଣ ହୋଇଛି ?

ଆଖିର ଲୁହକୁ ପୋଛି ଗନୁ କହିଲା—ଏହା ଭିତରେ ମୋର ବହୁତ କିଛି ହୋଇଯାଇଛି ସୁବୋଧ ବାବୁ, ବହୁତ କିଛି । ହୁଏତ ଆପଣ ଜାଣିଲେ ମତେ କ'ଣ ସେଇ ସ୍ନେହ, ସେଇ ପ୍ରେମ ଆପଣ ଦେବେ ?

ସୁବୋଧ କାତର ଭାବେ କହିଲା—ମୋର ଜାଣିବା ଦରକାର ନାହିଁ ଗନୁ !

କିନ୍ତୁ ଆପଣଙ୍କୁ ଜଣାଇବା ପାଇଁ ମୁଁ ଏତେ ରାତ୍ତରେ ଆସିଛି ।

ଯଦି ତୁମେ ଭାବୁଛ ଯେ, ସେସବୁ ଜାଣିଲେ ମୁଁ ତୁମକୁ ଆଉ ଭଲ ପାଇବିନି, ତେବେ ସେ କଥା କିଛି ମୋ ମନରେ ଆସୁ ନାହିଁ ଗନୁ । ମୁଁ ତୁମକୁ ନିବିଡ଼ ଭାବରେ ଅନ୍ତରର ସବୁତକ ପ୍ରେମ ଦେଇ ଭଲପାଏ ।

କିନ୍ତୁ ମୁଁ ସେ ପ୍ରେମରେ ତ ବିଷ ଦେଇ ପାରିବିନି । ମୋର ବାହାର, ଭିତର ସବୁ ସମାନ ସୁବୋଧବାବୁ । ଭିତରେ କଳା ଅନ୍ଧକାର ଲୁଚାଇ ରଖି ତୁମ ନିକଟରେ ଅଭିନୟ କରିବାକୁ ମୋର ସାହସ ନାହିଁ । ଯାହାଙ୍କୁ ମୁଁ ଦିନରାତି ପୂଜୁଛି ତା' ସାଥିରେ ଖେଳ ଖେଳିବି କେମିତି ? କିନ୍ତୁ କୁହ ସୁବୋଧବାବୁ, ସବୁ କଥା ଶୁଣି ଆପଣ ମତେ ପାଦରୁ ଦୂରକୁ ଠେଲିଦେବେନି, ମତେ ଆଡ଼େଇ ଦେବେନି । ମୁଁ ଚାହେଁ ଆପଣଙ୍କର ସେଇ ପାଦତଳେ ଟିକିଏ ସ୍ଥାନ, ଯେଉଁ ସ୍ଥାନ କି ମୋର ନାରୀ ଜୀବନର କାମ୍ୟ ।

ଗନୁ ପୁଣି କହିଁ କହିଁ କାନ୍ଦି ଉଠିଲା । ଚିତ୍କାର କରି ପାଗଳୀ ପରି ଗର୍ଜିଉଠି କହିଲା—ମତେ ଆଜି ସେ ଲମ୍ପଟଟା ଇତର କରି ଦେଲା ସୁବୋଧବାବୁ, ମୋର ଜୀବନର ଶ୍ରେଷ୍ଠ ସଂପଦ ଲୁଟି ନେଲା । ମୋର ମାନଇଜ୍ଜତ ସବୁ ଲୁଟିନେଲା । ଏଇ ମୋର ସାରା ଦେହରେ ତାର ନଖର, ତାର ଦାନ୍ତର ଚିହ୍ନ । ଓଃ.. ମୁଁ ଏସବୁ ସହିବି କେମିତି ? ସେ ଦାନ୍ତର ଜ୍ୱାଳା, ନଖର ଜ୍ୱାଳାକୁ ସହିବି କେମିତି ? ମୁଁ ଆଜି ଲୁମାଣ୍ଡ ନୁହେଁ ସୁବୋଧବାବୁ । ମୁଁ ଆଜି ଏ ପୋଡ଼ା ଦେହଟା ଧରି ଆପଣଙ୍କ ପାଖରେ ଠିଆ ହୋଇଛି ।

ସୁବୋଧ ପାଟିକରି ଆଶ୍ଚର୍ଯ୍ୟରେ କହି ଉଠିଲା—ଗନୁ ! ଏ ସବୁ ତମେ କ'ଣ କହୁଯାଉଛ ? ଜ୍ଞାନରେ ଅଛ ତ ?

ଜାଣ ହରେଇଛ ସୁବୋଧବାବୁ । ମୁଁ ଆଜ ବଜାରର ଝିଅ । ମୁଁ ଆଜ ଭ୍ରଷ୍ଟା, ପତିତା ।

ସୁବୋଧ ଅସୁସ୍ଥ ଭାବେ ଧୈର୍ଯ୍ୟ ହରାଇ ଚିତ୍କାର କରି ଉଠିଲା— ଏ ସବୁ ତୁମେ ଆଉ କୁହନା, ବନ୍ଦକର । ଦୁ'କାନରେ ହାତ ଦେଇ ସେ କହିଲା— ଏ ସବୁ ଶୁଣିଲେ ମୁଁ ପାଗଳ ହୋଇଯିବି ।

ହେ ଭଗବାନ ! ସେ ଦିନ ରାତିରେ ··· ! ଉଃ···ଆଜ ମୋର ଜଠରରେ ଅନ୍ତଃସତ୍ତ୍ୱା ହବାର ସମସ୍ତ ଉପାଦାନ । ମୁଁ ବାନ୍ଧା ହୋଇଛି, ତଳ ପାହାଚକୁ ଗୋଡ଼ ବଢ଼େଇଛି—ପାପ କରିଛି, କିନ୍ତୁ ମୁଁ ଯନ୍ତ୍ର ହୋଇଯାଏ ମା ··· ?

ଝିନୁ ଉତ୍ସରେ ଶିହରି ଉଠିଲା, ମଥାର କେଶକୁ କୁଚୁକୁଚୁ କରି ପ୍ରବଳ କ୍ରୋଧରେ ପ୍ରବଳ ହତାଶରେ, ପ୍ରବଳ ଘୃଣାରେ ଭାଙ୍ଗିପଡ଼ିଲା ।

ସୁବୋଧ ଚିତ୍କାର କରି ଉଠିଲା—ରାନୁ, କୁହ କିଏ ସେ ? କିଏ ସେଇ କାମୁକ, ଯେ କି ତୁମକୁ ଏପରି କରି ତୁମର କୁମାରୀତ୍ୱକୁ ହତ୍ୟା କରିଛି ? ମୁଁ ତାର ତଣ୍ଟିଟାକୁ ଚିପିଦେବି ରାନୁ, କୁହ କିଏ ସେ ?

ରାନୁ କିଛି କହି ପାରିଲାନି ।

ରାନୁ ! କୁହ !

ମତେ ସୁବୋଧ ତମେ କ୍ଷମାକର, ମୁଁ ତା ନାଁ କହିବିନି ।

କିନ୍ତୁ ତୁମକୁ ନିଶ୍ଚୟ କହିବାକୁ ପଡ଼ିବ ରାନୁ !

ନା ··· ।

ରାନୁ, ମୁଁ ତୁମକୁ ଅନୁରୋଧ କରୁଛି, ରାନୁ ତୁମେ କହ ।

ନା ··· ।

ତାହାହେଲେ ତୁମେ କହିବ ନି ?

ରାନୁ ନିଶ୍ଚଳ ଭାବେ ଠିଆହୋଇଥିଲା । ତାର ମୁହଁରେ ଅସମ୍ଭବ ଦୃଢ଼ତା, ଅସମ୍ଭବ ସ୍ଥିତପ୍ରଜ୍ଞତା । ମୁହଁରେ ଯେପରି ତାର ଆତ୍ମପ୍ରତ୍ୟୟର ଆଲୋକ ଝଲସି ଉଠିଥିଲା ।

ତାହାହେଲେ ସତରେ ତୁମେ ମତେ କହିବନି ରାନୁ ? ତୁମେ ମତେ କ'ଣ ଅବିଶ୍ୱାସ କର ?

ଅବିଶ୍ୱାସ ! ଓଃ...ତୁମେ ଏକଥା କହିପାରିଲ ସୁବୋଧବାବୁ, ମୁଁ ଆପଣଙ୍କୁ ଅବିଶ୍ୱାସ କରିବି ବୋଲି ? କିନ୍ତୁ ଆପଣ କାହିଁକି ବୁଝୁ ନାହାନ୍ତି ସୁବୋଧବାବୁ । ତା ନାଁ ପ୍ରକାଶକଲେ ମହା ବିଭ୍ରାଟ ସୃଷ୍ଟି ହେବ ବୋଲି ? ମୁଁ ସମସ୍ତଙ୍କର ମଙ୍ଗଳ ଚାହେଁ ସୁବୋଧବାବୁ, ନିଜେ ଯେତେ ଯନ୍ତ୍ରଣା ସହି ତିଳ ତିଳ ହୋଇଯିବି ପଛେ, କାହାର ଆଖିରେ ଅଶ୍ରୁ ମୁଁ ଦେଖିପାରିବି ନା ।

ମୁଁ ଯଦି ତାର ନାଁ ଜାଣିବାକୁ ଅନୁରୋଧ ନକରି ଏଥର ଦାବୀ କରେ ? ରୁକ୍ଷ ଗଳାରେ ପଚାରିଲି ସୁବୋଧ ।

ନା...ନା...ନା... ତାର ଗଳାରେ ଫୁଟି ଉଠିଲା ଅସମ୍ଭବ ଦୃଢ଼ତା । ପ୍ରତ୍ୟୟର । ଆତ୍ମବଳର । ନିଜକୁ ନିଜେ ଚହ୍ଲିବାର ।

ସୁବୋଧ ବିରକ୍ତ ହୋଇ ଉଠିଲା । ଅସମ୍ଭବ ବିରକ୍ତିରେ ସେ ଚାଳିଗଲା ।

ତୁମେ କୁଳଟା !

ସୁବୋଧବାବୁ !

ତୁମେ ଭ୍ରଷ୍ଟା !

ସୁବୋଧବାବୁ !

ତୁମେ ବେଶ୍ୟା ! ପରପୁରୁଷକୁ ଦେହଦାନ କରି ମୋ ନିକଟରେ ଆଦର୍ଶ ବାଢ଼ୁଛ ! ପ୍ରେମର ମହତ୍ତ୍ୱ ବଖାଣୁଛ !!

ଆଃ ସୁବୋଧବାବୁ ! ସବୁ କରିଁ କରିଁ କାନ୍ଦି ଉଠିଲା । ଆଖିରେ ଲୁହର ବନ୍ୟା ତାର ଆଜି ବାଧା ମାନିଲା ନାହିଁ । ସତେ ଯେପରି ତାର ମଥା ଉପରେ ସହସ୍ର ସହସ୍ର ବଜ୍ର ବାଜିଯାଉଛି । ବେଦନାର କୁଳିଶ ଅଜାଡ଼ି ହୋଇ ପଡ଼ୁଛି । ଶେଷରେ—ଶେଷରେ ସୁବୋଧ ବି ତାକୁ ଏମିତି କହିଲା ? ସୁବୋଧ ବି ତାକୁ ଘୃଣା କଲା ? ସେ ଆଜି ସମସ୍ତଙ୍କ ନିକଟରେ ବଡ଼ମ୍ଭିତା । ସମସ୍ତଙ୍କ ପାଖରେ ଅବହେଳିତା । ଆସିଥିଲା, ସୁବୋଧର ପାଦତଳେ ଟିକିଏ ସ୍ଥାନ ଲାଭ କରିବା ଉଦ୍ଦେଶ୍ୟରେ; କିନ୍ତୁ ଶେଷରେ ପାଇଲା କ'ଣ ?

ତୁମ ପରି ସ୍ତ୍ରୀଅର ମୁହଁ ଦେଖିବାକୁ ମୁଁ ଘୃଣା କରେ । ଆଉ ଠିଆହୋଇଛ କାହିଁକି ? ଯାଅ...ଗୋଟାଏ ଜାରଜ ସନ୍ତାନର ମୁହଁ ଦେଖିବା ପାଇଁ ବିନ ଗଣ ।

ସନ୍ତୁ କାନ୍ଦ କାନ୍ଦ କହିଲା—ଏପରି କଥା କୁହନ୍ତୁନି ସୁବୋଧ ବାବୁ ! ମୁଁ ମରିଯିବି !

ଓ…! ୟୁ' ଡୋଣ୍ଟ୍ ଅଣ୍ଡରଷ୍ଟାଣ୍ଡ୍, ୟୁ ବେଟର୍ କମିଟ୍ ସୁଇସାଇଡ୍ ! ଆଇ ହେଟ୍ ୟୁ ! ଆଇ ହେଟ୍ ୟୁ ଫ୍ରମ୍ ଦ' ଡିପ୍ କୋର୍ ଅଫ୍ ମାଇଁ ହାର୍ଟ୍ !

ସୁବୋଧ !

ଡୋଣ୍ଟ୍ ସେ' ଏନି ମୋର୍ । ଗେଟ୍ ଆଉଟ୍, ଗେଟ୍ ଆଉଟ୍… !

ସନ୍ତୁକୁ ଜଣାଗଲା ଜୀବନର ପ୍ରଥମ ଥରପାଇଁ ଆଜି ତାର ପାଦ ତଳର ଭୂମି ତଳକୁ ପଶିଯାଉଛି । ତାକୁ ଚାରିଆଡ଼ ଅନ୍ଧାର ଦିଶୁଛି ।

ଜୀବନ ରଙ୍ଗମଞ୍ଚରେ କାହାପାଇଁ ଉଜ୍ଜ୍ୱଳ ପାଦପ୍ରଦୀପ ଜଳି ଉଠେ । ପୁଣି କାହାପାଇଁ ତାହା ଧପ୍ କରି ଲିଭିଯାଏ । ଗ୍ରୀନ୍‌ରୁମ୍‌ର ପ୍ରତ୍ୟେକଟି ପ୍ରତୀକ୍ଷାରତ ମୁହୂର୍ତ୍ତରେ ଯେଉଁ ଶିଳ୍ପୀ ସ୍ୱପ୍ନ ଦେଖିଥାଏ, ସେହି ମୁହୂର୍ତ୍ତକୁ, ଯେଉଁ ମୁହୂର୍ତ୍ତରେ ଶକ୍ତିଶାଳୀ ପାଦପ୍ରଦୀପ ନିକଟରେ ତାର କଳା ନିପୁଣତା ଦେଖାଇବା ପାଇଁ, ତାର ଅଭିବ୍ୟକ୍ତି ଲୋକଙ୍କ ନିକଟରେ ଉପସ୍ଥାପିତ କରିବା ପାଇଁ, ଯଦି ସେହି ମୁହୂର୍ତ୍ତରେ ନିହାତ ଆକସ୍ମିକ ଭାବେ ପାଦପ୍ରଦୀପ ସେ ଲିଭିଯାଏ, ଆଉ ସେପରି ଯାହା କହିଲେ ବି ଜଳେନା, ସେତେବେଳେ ସେ ଆଉ କାହାର ଜାୟା ହୋଇପାରେନା, କାହାର ଜନନୀ ହୋଇପାରେନା, କାହାର କନ୍ୟା ହୋଇପାରେନା । କାହାର ଭଗିନୀ ବି ହୋଇ ପାରେନା । ସବୁ ଯେପରି ସେହି ଘନ ଯବନିକାର ଅନ୍ତରାଳରେ ଅଜ୍ଞାତରେ ରହିଯାଏ ।

ସନ୍ତୁ ଜୀବନରେ ତାହା ହିଁ ଘଟିଲା ।

କିନ୍ତୁ କି ଆଶ୍ଚର୍ଯ୍ୟ ଓ ଶୋଚନୀୟ ପରିଣତି ଦେଖ, ସେ ଯିଏ ଜାୟା ହୋଇପାରିଲା ନାହିଁ, କନ୍ୟାହୋଇ ପାରିଲା ନାହିଁ, ଭଗିନୀ ହୋଇପାରିଲା ନାହିଁ, କିନ୍ତୁ ହୋଇଗଲା ଗୋଟାଏ ଜନନୀ ।

ଘନୁ ପିଜୁଳି ଗଛଟାକୁ ଚାହିଁଛି, ଆଉ ଚାହିଁଛି ।

ପ୍ରତ୍ୟେକ ଡେଙ୍ଗ ଆଜି ନିଶ୍ଚଳ । ପ୍ରତ୍ୟେକ ପତ୍ର ଆଜି ଶୋକାର୍ତ୍ତ । ପ୍ରତ୍ୟେକ ପତ୍ର ଆଜି ମର୍ମର କ୍ରନ୍ଦନ । କେବଳ ବଧିର । ପିଜୁଳି ଗଛଟା ଯେପରି ଆଜି କାହାର ଅଭିଶାପରେ ଗୋଟାଏ ପ୍ରେତ ପରି ଦିଶୁଛି ।

ଘନୁର ପେଟ ବୁଲାଇଦେଲା । ଆହା କୁଆଡ଼େ ଗଲା ତାର ଦେହର ସେଇ ଶକ୍ତି ? କୁଆଡ଼େ ଗଲା ମନର ସ୍ଫୁର୍ତ୍ତି ? କାମ କରିବାର ଉତ୍ସାହ ! ଗୋଡ଼ରେ ବଳ ନାହିଁ । ଅଣ୍ଟାରେ ବଳ ନାହିଁ । ଛାତିରେ ବଳ ନାହିଁ । ମୁଣ୍ଡ ଘୂରାଉଛି ।

ଘନୁର ପେଟ ବୁଲାଇଦେଲା ।

ଘନୁ ଥକ୍କାମାରି ବସିପଡ଼ିଲା ପିଜୁଳି ଗଛର ମୂଳରେ । କେତେବେଳୁ ତାର କହୁଣୀକୁ ବାହୁଇଟା ଚୁଟିବାରେ ଲାଗିଛି । ସେ ଜାଣିପାରୁନ ।

ଅପାର ଉତ୍ସବ ହେବ ଏଇ ଫାଲ୍‌ଗୁନରେ । ବର୍ତ୍ତମାନ କାର୍ତ୍ତିକ । ଆଉ ମାସ ଚାରି-ପାଞ୍ଚଟା । ଅପା ପାଇଁ ବହୁତ ଜିନିଷ କିଣା ହେଲଣି । କାଠ ଫର୍ଣ୍ଣିଚର, ବାସନ କୁସନ, ଆଉ ଗହଣା—ହାରମାଳ ।

ଘନୁ ଆଖିରୁ ଦୁଇଟି ବୁନ୍ଦା ଲୁହ ଗଡ଼ିପଡ଼ିଲା । ହାତ ଛୁଇଁ ଛୁଇଁ ବେକ ପାଖକୁ ଚାଲିଗଲା—ଖାଲି ବେକ ! ମୁଁ ତ ବାହା ହୋଇଥା'ନ୍ତି ସୁବୋଧ ! ମୁଁ ତ ବାହା ହୋଇ ଏଇ ବେକରେ ଗୋଟିଏ ଭଲ ହାର ପିନ୍ଧିଥା'ନ୍ତି ସୁବୋଧ ! ମୁଁ ତ ମୋର ସୁନାର ସଂସାର ଗଢ଼ିବାକୁ ତୁମ ହାତରେ ମୋର ହାତମିଳାଇ ଥା'ନ୍ତି ସୁବୋଧ ! କିନ୍ତୁ ତୁମେ କ'ଣ କଲ, ତୁମେ କ'ଣ କଲ ମୋର ଦେବତା, ମୋର ସୀମନ୍ତରେ ସଧବାର ସିନ୍ଦୂର ନ ଦେଇ, ମୋର ମଥାରେ ଅପୂର୍ବ ସୁଲକ୍ଷଣୀର ସୁନା ଟିକେ ନ ଦେଇ ମାତ୍ର ଶେଷରେ ପାଦରେ ଠେଲିଦେଲ ! ମୋର ମନର ଦାମ୍ ନ ଖୋଜି ଶେଷରେ ମୋର ଦେହର ଦାମ୍ ଖୋଜିଲ !

ଘନୁ ଛକ୍‌କରି ଗୁଡ଼ାଏ ବାନ୍ତିକଲା । ପେଟ ଭିତରେ ଗୁଡ଼ାଏ ଲୁହା ଆକୃତି ହୋଇ ଠକ୍‌ମକ୍ ଫୁଟୁଛି । ସେ ଯେପରି ବାନ୍ତି ହୋଇ ପଦାକୁ ଆସିବାକୁ ଚାହେଁ ।

ହେ ଭଗବାନ, ମୁଁ ହେଲେ ମରିଯାଆନ୍ତି କି !

କଲ୍ୟାଣୀ ଫାଟଫାଟ୍ କାହିଁକି ଆସିଲେ । କହିଲେ – ହଇଲୋ ହେ ଛତରଖାଇ ମଡ଼ାମୁହିଁ – ସତ୍ୟାନାଶୀ ! ତୋ ପେଟରେ ସତେ ଏତେ ଗୁମର ଥିଲା ? ଅବାଟରେ ଯାଇ ପେଟ ଲୋକରେ ପାପ କଲୁ ? ଆଲୋ ତତେ ବିଷ ମିଳୁନ ? କୂଅ ପୋଖରୀ ମିଳୁନ ? ମୁହଁରୁ ପାଣି ଛଡ଼ାଇ ବାପ ଭାଇଙ୍କ ମୁହଁକୁ ଚୂନି ରଖିପାରୁଛୁ ?

ରାନୁର ଆଖିରେ ଲୁହ ନାହିଁ । ସେ କେବଳ ନୀରବରେ ମଥାପାତି କଲ୍ୟାଣୀଙ୍କର ଗାଳିକୁ ସହିଯାଉଥିଲା ।

ମୁଁ ଜାଣିଥିଲି ତତେ ଭଲ । କିନ୍ତୁ ତୁ ଅସଲ ଭେଲ ଲୋ ଉଦା-ଖାଇ ! ଯଉବନ ତାଉ ତତେ ଏତେ ଅସମ୍ଭାଳ କଲା, ଏ ବଂଶର ନାଁ ବୁଡ଼ାଇ, ବାପର ନାକ କାଟି ତଳକୁ କରି, ଶେଷରେ ସମସ୍ତଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି, ପରପୁରୁଷ ସାଥିରେ ମନ ବଳାଇଲୁ ? ସାତତାଳ ପଙ୍କରେ ପାପ ଥିଲେ ସେ ତ ପଦାକୁ ନିଶ୍ଚୟ ଫୁଟି ବାହାରିବ ଲୋ ପୋଡ଼ାମୁହିଁ । କଲ୍ୟାଣୀ ଗର୍ଜୁଥିଲେ । ଡାକ୍ତରଖାନାରୁ ଫେରି ରାନୁ ପ୍ରାୟ ଯାହା ସଦସ୍ଥ ହୋଇ ଉଠିଥିଲେ, କିନ୍ତୁ ଏଇ ମାସେ ହେଲା ସେ ରାନୁ ଉପରେ ଭୀଷଣ ବିରକ୍ତ । ରାନୁକୁ ଦେଖିଲେ ମାରିବେ କି ମରିବେ ।

ମୁଁ ଜାଣେ, ସେଇ ସୁବୋଧ ଟୋକାର ଏତେ ଗୁଣ ! ସେଇ ସୁବୋଧ ତ ତତେ ଏମିତି କରିଛି । ତୋ ବାପ ତ ତା ମୁହଁ ବଢ଼େଇଛି । ଘର ଢିଙ୍କି କୁମ୍ଭୀର ନ ହବ ତ କିଏ ହବ ?

ତାଙ୍କ ନାଁ କାହିଁକି ଟାଣୁଛ ବୋଉ ? ସେ ତ ସଂପୂର୍ଣ୍ଣ ନିରୀହ ।

ଆହା...ନିରୀହ ! ସତେ ଯେମିତି ମେଣ୍ଢା ଛୁଆଟାଏ, ନୁହେଁ ?

ମତେ ବିଶ୍ୱାସ କର ବୋଉ !

ହାଃ...ହୁଃ, ! ତତେ ପୁଣି ବିଶ୍ୱାସ କରିବ ? ମରି ଯଉଥାଏ ଲୋ...! କି ଅଲମ୍ଭ କଥା !

ସେ ସଂପୂର୍ଣ୍ଣ ନିର୍ଦ୍ଦୋଷ । କାହିଁକି ମିଛରେ ପରପୁଅ ନାଁରେ ଦୋଷ ଦଉଚ ?

ତେବେ ସେ ଲଫଙ୍ଗାଟା କିଏ ?

ସନ୍ତୁ କିଛି ଉତ୍ତର ଦେଲାନି । କଅଣ କହିବ ସେ, କହିବ ତୁମର ଅତି ସ୍ନେହର, ଆଦରର ପୋଇଁ ?

ଅଲେ…କହୁନୁ କାହିଁକି ?

ସନ୍ତୁ କିଛି କହିଲାନି । ନୀରବ ରହିଲା ।

ସେବ ବନଦେଲେ ସେବି ଅଧରେ ଡାଆଣୀ ଚତୁର୍ଗୁଣୀଙ୍କୁ ନ ଡର ମାତ ବାଡ଼ ତେଇଁ ମନ ଉଚାଟ ହେଉଥିଲା । ଆଜ ଏଇନା ତା'ଠା କହିବାକୁ ପାନି ଫିଟୁନାଇଁ ?

ମୁଁ ତ ତା ନାଁ କହିବନି ବୋଉ !

କାହିଁକି ? ଗର୍ଜି ଉଠିଲେ କଲ୍ୟାଣୀ ।

ସେ କାହିଁକିର ଉତ୍ତର ମୁଁ ଦେଇ ପାରିବନି । ଅନାହତ ସ୍ୱରରେ ସନ୍ତୁ କହିଲା ।

ହଁ, ତୋର ଏଡ଼େ ବଢ଼ପ ? ମୋ ମୁହଁରେ ପୁଣି ଜବାବ ! କଲ୍ୟାଣୀଙ୍କର ସାରା ଶରୀରର ରକ୍ତ ତାଳୁକୁ ଉଠିଗଲା । ସେ ନିଆଁ ହୋଇ-ଗଲେ । ସନ୍ତୁର ଫିଟିପଡ଼ିଥିବା ନୂଆଁର କେଶ ଗୋଛାକୁ ଟାଣି ଟାଣି ଘରକୁ ନେଇଗଲେ ।

ବାରଣ୍ଡାରେ ବୁଡ଼ା ଖେଳୁଥିଲା । ସନ୍ତୁର ଏପରି ଅବସ୍ଥା ଦେଖି ଉଚ୍ଚ ସ୍ୱରରେ ଚିତ୍କାର କରି କାନ୍ଦଉଠିଲା—ଅପା ଲୋ !

ସନ୍ତୁ ବାରଣ୍ଡାରେ ଗୋଟାଏ ପାଖରେ ଥକ୍କା ମାରି ବସି ପଡ଼ିଥିଲା । ମୁଣ୍ଡର ସାରା ଖପୁଗଟା କଲ୍ୟାଣୀଙ୍କର ଏ ବାଳ ଟଣାରେ ବନ୍ଧ ଉଠୁଛି ।

ଏତିକି ଯାତନା !

ବାପା ନାହାନ୍ତି । ଯାଇଛନ୍ତି ଅଫିସକୁ । ଅମା ନାହିଁ, ସେ ଯାଇଛି ସ୍କୁଲକୁ । କେବଳ ଅପା ଅଛନ୍ତି ।

ସନ୍ତୁ !

ସନ୍ତୁ ଭୟରେ ଥର ଉଠିଲା । ଦେଖିଲା, ଅପା ତାର ସମ୍ମୁଖରେ ଠିଆ ହୋଇଛନ୍ତି ଉଗ୍ର ଭାବେ ଆଖି ନାଲ୍ ନାଲ୍ କରି । ସନ୍ତୁ କାକୁସ୍ତ, ଅସହାୟ ହୋଇଉଠିଲା ।

ନମିତା କହିଲା—ବାପା ସିନା ଏ ଘରେ ତାଙ୍କୁ ସ୍ଥାନ ଦେଇଛନ୍ତି କିନ୍ତୁ ତାଙ୍କୁ ତ ଏ ଘରୁ ବାହାର କରି ଦେବା ଦରକାର ।

ଗନୁ ଚମକି ଉଠି କହିଲା—ମତେ ଘରୁ ବାହାର କରିଦେବ ଅପା ? ତୁମମାନଙ୍କ ଛଡ଼ା ମୋର ଆଉ କିଏ ଏ ଦୁନିଆରେ ଅଛି ? ତୁମ ଛଡ଼ା ଏ ସାରା ଦୁନିଆ ତ ମୋତେ ଅନ୍ଧାର ।

କିନ୍ତୁ ତୁ ଚରିତ୍ରହୀନା !

ମୋ ଘରର ଇଜ୍ଜତ ବୁଡ଼ାଇଲୁ ।

ତୁ ବ୍ୟଭିଚାରିଣୀ !

ମୋର ପିଲାମାନଙ୍କୁ କୁବୁଦ୍ଧି ଦେଲୁ ।

ତୁ ପତିତା !

ମୋର ପୂର୍ବପୁରୁଷଙ୍କୁ ନର୍କକୁ ନେଲୁ ।

ଗନୁ ବଧିର ହୋଇଯାଇଥିଲା । କଲ୍ୟାଣୀ ଓ ନମିତାଙ୍କ ଗାଳିକୁ ସେ ପଥର ପରି ସହି ଯାଉଥିଲା । ସେ ତ ଆଜି ମର୍ମି ଯନ୍ତ୍ରଣାରେ, ଅଣ୍ଟା ଭାଙ୍ଗି ପଡ଼ିଛି । ଧୂଳି ଧୂସର, ଲହୁଲୁହାଣ ହୋଇ ଘୁଷୁରୁଛି । ଗୁରୁଆଡ଼ୁ ଟେକାମାଡ଼, ଗୁରୁଆଡ଼ୁ ଚାଳିମାଡ଼, ଗୁରୁଆଡ଼ୁ ନାକଟେକା । କି ଆଉ ତାର ଅଛି ଯେ, କଥାର ଉତ୍ତର ଦେବ ?

ନମିତା ଚିତ୍କାର କରି ଉଠିଲା—କହ, ସେ ଲୋକଟା କିଏ ?

କହୁଛନ୍ତି ।

ମୁଁ ପଚାରୁଛି କହ ।

ନା, କହିବନି ।

କ'ଣ କହିଲୁ ? କହିବୁନି ? ଆଖି ତରାଟି ନମିତା ପାଟି କରି ଉଠିଲା ।

ତୁ କାହିଁ ବୁଝିପାରିବୁ ଅପା ? ତୋ' ପାଇଁ ତ ଆଜି ଗନୁ ବଧିର, ପାଷାଣ । ତୋ' ପାଇଁ ତ ଆଜି ସକଳ ଗନ୍ଧ, ଯାତନା ତା ପାଇଁ ଶୀତଳ ସୁବାସିତ ଚନ୍ଦନ । ତୋ' ଭବିଷ୍ୟତର ଚଲାବାଟରେ କଣ୍ଟକ ଫୁଲଶେଯ ଫୁଟିଉଠିବ ବୋଲି, ସେ ତ ଆଜି ତା ଜୀବନରେ କଣ୍ଟା

ବିଛାଇ ଦେଇଛି । ମୋର ଅଶ୍ରୁକୁ ନେଇଯା ଅପା, ସେ ତ ଫୁଲ ହୋଇଯିବ, ସେଇ ଫୁଲ ପାଖୁଡ଼ା ଭିତରେ ମୋର ସବୁତକ ବେଦନା ପରାଗ ହୋଇ ତୋର ଜୀବନକୁ ଭରି ଗନ୍ଧରେ ମହକାଇ ଦେଉ ! ଉପାଶିତ ହଉ ।

ରାନୁ ନୀରବ ନିଶ୍ଚଳ ଭାବେ ଠିଆ ହୋଇଥିଲା ।

ଆଲୋ କହ, କିଏ ସେ ଛତରା ?

ସେ ଛତରା ତ ମନସୁଖ । ସେ ଛତରା ତ ତୋରି ବରି ନେଲା ଅପା, ଯାହାକୁ ତୁ ଶୟନେ, ସ୍ୱପନେ, ଜାଗରଣେ ପୂଜା କରୁଛୁ, ପବିତ୍ର ଚରିତ୍ରବାନ ବୋଲି ; କିନ୍ତୁ ତା ନାଁ ତଳେ କଣ୍ଢବନ ନେଲି ଅପା—ସେଇ ମନସୁଖ ମଦୁଆଟାର ନାଁ ତଳେ କଣ୍ଢଦନ । ସେ ଯୋଉ ଅବସ୍ଥାରେ ମତେ ଉଲଗ୍ନ କରି ମୋର ସବୁ ଲୁଟି ନେଇଗଲା, ତୁ ଶୁଣିଲେ ତ ଧୈର୍ଯ୍ୟଧରି ରହି ପାରିବୁନି । ତୋର ରାନୁକୁ ସେ ଧାନମାନୀ କରିଛି ତାକୁ ତୁ ସତେ କଣ ଝିଅ ହେବାକୁ ମନ ବଳାଇବୁ ? ନା — ନା, ମୁଁ ତୋର ପାଇଁ ତା ନାଁ ଧରିବିନି । ତୁ ସୁଖରେ ରହି ସଂସାର କର ।

ହଠାତ୍ ନମିତା ରାନୁର କାନଟାକୁ ଧରି ପଚାରିଲା—କାହାକୁ ଶୁଭୁନି ? କହ ସେ କିଏ ?

ନା···।

ଠାଏ କରି ଚାପୁଡ଼ାଟାଏ ରାନୁର ଗାଲରେ ବସାଇ ଦେଇ ନମିତା କହିଲା—ସେଇ ସୁବୋଧଟାକୁ ଏ ଘରକୁ ଆଉ ଆସିବାକୁ ଦେବୁନି । ସେଇଟା ସମସ୍ତଙ୍କଠାରୁ ପାଜି ।

କୋଉଥିରେ ବିପ୍ରଚରଣଙ୍କର ମନ ଲାଗୁନି । ତାଙ୍କର ଯେପରି କିଛି କହିବାର ନାହିଁ, ସେ ଆଜି ତାଙ୍କ ରାନୁ ପରି ମୂକ । ବଧିର ।

ଦ୍ୱାରରେ ନିଶ୍ଚଳ ହୋଇ ଠିଆ ହୋଇଥିଲେ ବିପ୍ରଚରଣ । ମୁଣ୍ଡରେ ଅସମ୍ଭବ ଚିନ୍ତା—ଘୋର ଚିନ୍ତା, ଆହା ରାନୁର ଏପରି କ'ଣ ହେଲା ? ତାଙ୍କର ଝିଅ ହେଇ ଶେଷରେ ସେ ଏପରି କାମ କରିବାକୁ ସାହସ କଲା ।

ରାନୁ ନିକଟକୁ ଯିବାକୁ ବିପ୍ରଚରଣଙ୍କୁ ଏବେ କାହିଁକି ଭାରି ସଂକୋଚ ଲାଗୁଛି । ସେ ରାନୁକୁ ପ୍ରାଣଠାରୁ ଅଧିକ ଭଲ ପାଆନ୍ତି । ରାନୁର କାତର ଆଖିର ଚାହାଣୀକୁ ସେ ସହିବେ କିପରି ? ରାନୁର ଦୁଃଖକୁ ସହିବେ କିପରି ?

ସୁବୋଧ ଯେ ଏପରି ତାଙ୍କୁ ଉଷାଇ ଦେବ, ସେ ଆଶଙ୍କା କରି ନ ଥିଲେ । ସୁବୋଧଟା କି ସାଙ୍ଘାତିକ ଭାବେ ଚରିତ୍ରହୀନ ! ସୁବୋଧ ପ୍ରତି ଯେଉଁ ଉଚ୍ଚଆଶା ସେ ପୋଷଣ କରିଥିଲେ, ତାହାର ଯେପରି କୌଣସି ମାନେ ନାହିଁ । ସୁବୋଧକୁ ଡାକିଥିଲେ ସେ, କିନ୍ତୁ ସୁବୋଧ ଯେଉଁ ଉତ୍ତର ଦେଇଥିଲା, ସେଥିରେ ସେ ଆଉ ଅଧିକ କିଛି କହି ପାରିନଥିଲେ, କାରଣ ଏ ବିଷୟରେ ଚୁପ୍ ହେବା ହିଁ ଭଲ ।

ସୁବୋଧ ପ୍ରଥମେ କହିଥିଲା ସେ ରାନୁର ଶରୀର ମଧ୍ୟ ସ୍ପର୍ଶ କରିନି ।

କିନ୍ତୁ ତୁମେ ତାକୁ ବିଭା ହୁଅ ସୁବୋଧ ।

ମତେ କ୍ଷମା କରନ୍ତୁ ଆଜ୍ଞା, ମୁଁ ବିଭା ହୋଇପାରିବିନି ।

ସୁବୋଧ !

ମୁଁ ରାନୁ ପରି ଗୋଟିଏ ଚରିତ୍ରହୀନାକୁ କେବେ ବିଭା ହୋଇ-ପାରିବିନି । ତା ଛଡ଼ା କୋଉ ବୁଦ୍ଧି-ବୃତ୍ତିସଂପନ୍ନ ଲୋକ ଗୋଟାଏ ଜାରଜ ସନ୍ତାନର ଜନକ ହେବାକୁ ଇଚ୍ଛା କରେ ?

କିନ୍ତୁ ତମେ ତାକୁ ବିଭା ହେବାକୁ କ'ଣ କେବେ ହେଲେ ଚାହିଁ ନଥିଲ ?

ହଁ ଚାହିଁଥିଲି, କିନ୍ତୁ ଅନ୍ତଃସତ୍ତ୍ୱା କୁମାରୀକୁ ଆଉ ବିଭା ହେବାକୁ ଚାହେଁନା ।

ତୁମର ପ୍ରେମ ?

ପ୍ରେମ ଗୋଟାଏ ଦୁର୍ବଳ ହୃଦୟର ଆବେଗ ଆଜ୍ଞା ! ବାସ୍ତବ ଜୀବନରେ ତାର ମୂଲ୍ୟ କିଛି ଥାଏନା ।

ବିପ୍ରଚରଣ ଆଶ୍ଚର୍ଯ୍ୟ ହୋଇ କହିଲେ—ସୁବୋଧ !

ଆଉ କିଛି କହିବେ ଆଜ୍ଞା ?

ନା । ତମେ ଯାଇପାର ।

ବିପ୍ରଚରଣଙ୍କର ସେତେବେଳର ମନର ଅବସ୍ଥା ଯାହା, ତାହା ହୁଏତ ସଠିକ ଭାବେ ବୁଝାଇ କହି ହବନି ।

କିନ୍ତୁ ମୁହଁକୁ ଦେଖିଲେ ଜଣାଯାଉଥିଲା ଗୁଡ଼ାଏ ଯନ୍ତ୍ରଣାର ଚିହ୍ନ ସୁସ୍ପଷ୍ଟ । ସେ କେବଳ ଅସ୍ଥିର ଭାବେ ହାତ ମୁଠା ମୁଠା କରି ପଦଚାଳନା କରୁଥିଲେ । ଦୀର୍ଘଶ୍ୱାସ ଛାଡ଼ୁଥିଲେ ।

ଏଇ ସୁବୋଧଟାକୁ ସେ କ'ଣ କହିବେ ? ଏଇ ସୁବୋଧ ତାଙ୍କୁ ତାର ପ୍ରେମର ସଂଜ୍ଞା ବୁଝାଉଛି । ଅନ୍‌ଗ୍ରେଟଫୁଲ୍ !

ସୁବୋଧ ଆଜି ନାହିଁ ।

ଓ. ଏ. ଏସ୍‌ରେ ଷଷ୍ଠ ସ୍ଥାନ ଅଧିକାର କରି ଟ୍ରେନିଂ ପାଇଁ ମାସେ ହେଲା ସେ ହାଇଦ୍ରାବାଦ ଚାଲିଗଲାଣି । ସେ ଆଜି ଡେପୁଟି । ତା ପାଖରେ ରାନୁ ଚକ୍ରବର୍ତ୍ତୀର ମୂଲ୍ୟ ବା କାହିଁ ? ରାନୁ ଚକ୍ରବର୍ତ୍ତୀର ହୃଦୟର ଭାଷା, ଆଖିର ଲୁହର ମୂଲ୍ୟ ବା କାହିଁ ?

ଝିଅଟାର ଜୀବନ ଜୁଆର ଗୋଟିଗୁଡ଼ା ତାର ଶୈଶବରୁ ଆଜି ଯାଏ ତା ସାଥିରେ ପ୍ରବଞ୍ଚନାର ଖେଳ ଖେଳିଛନ୍ତି । କୋଉ ଅଶୁଭ ଲଗ୍ନରେ ଦି'ହାତର ଦି'ମୁଠାରେ ତା ମା ତାକୁ ଜନ୍ମ କରି ଦୁଃଖର ଆଞ୍ଜୁଳା ଭରିଦେଲା କେଜାଣି, ଦୁଃଖ ତାକୁ ସେଇପରି ଗୋଡ଼ାଉଛି । ଛାଡ଼ୁ ନାହିଁ ! ଛାଡ଼ୁ ନାହିଁ ।

କିଏ ? କିଏ ? କିଏ ?

ସୌଦାମିନୀ ?

ବିପ୍ରଚରଣ ଯାବରା ହୋଇ ଚାହିଁରହିଲେ ତାଙ୍କର ପଛପଟେ ଠିଆ ହୋଇଛି ଗୋଟାଏ ନାରୀମୂର୍ତ୍ତି । ଝର୍ ଝର୍ କାନ୍ଦୁଛି । ଆଖିର ଲୁହରେ ଭିଜିଯାଇଛି ବକ୍ଷର ଅଞ୍ଚଳ ।

ସେ ହାତ ପାତି କହୁଛି—ଏଇଥି ପାଇଁ, ଏୟା କରିବାକୁ ମୁଁ ସେଦିନ ମୋ ଝିଅକୁ ତୁମ ହାତକୁ କ'ଣ ବଢ଼େଇ ଦେଇଥିଲି ବିପ୍ରଭାଇ ? ତମେ ମୋ ଝିଅକୁ ତ ଜୀଅନ୍ତା ମାରିଦେଲ । ତାର ଏ ଜୀବନଟାକୁ ଛାର-ଖାର କରିଦେଲ ।

ସୌଦାମିନୀ ! ଏଥିରେ ମୋର କିଛି କହିବାର ନଥିଲା । ମୁଁ ସମ୍ପୂର୍ଣ୍ଣ ନାଚାର ।

ଯଦି ନାଚାର, ତେବେ କେଉଁ ସାହସରେ ମୋ ଝିଅକୁ ସେଦିନ ନେଇ ଆସିଥିଲ କୁହ ? ସେ ଝିଅକୁ ନିଜର ଝିଅ ପରି ପାଳିବ ବୋଲି କହିଥିଲ । କିନ୍ତୁ କଲ କ'ଣ ? ଶେଷରେ ଡାଏନମଣୀ କୁଣ୍ଡ ପାଖକୁ ଠେଲି ଦେଲ ? ତୁମରି ପାଇଁ ସେ ତାର ଖୁସି, ସଭିଙ୍କୁ ବଳି ଦେଇ ଦିନ ରାତି ଖଟି, ରକ୍ତ ପାଣି କଲା; ଝାଳ ନାଳ ହେଲା; କିନ୍ତୁ ସବା ଶେଷରେ ତୁମେ ତାକୁ ବାସି ଫୁଲଟା ପରି ନର୍ଦ୍ଦମା କଡ଼କୁ ଫିଙ୍ଗିଦେଲ ?

ଏକଥା ତୁ ମତେ କହି ଲଜ୍ଜା ଦେ'ନା; ସୌଦାମିନୀ ! ମୁଁ କଣ କରିବି କହ ? କଲ୍ୟାଣୀର ଦୁର୍ବ୍ୟବହାର ଯେଉଁଠି ସୀମା ଲଙ୍ଘନ କରେ, ସେଠି ମୁଁ ଯେତେ ବାରଣ କଲେ ମଧ୍ୟ ଆମ ସଂସାରରେ ସିନା ପାଟିତୁଣ୍ଡର, ସ୍ୱାମୀ ସ୍ତ୍ରୀ କଳି କଜିଆର ଝଡ଼ ଉଠିଛି, କିନ୍ତୁ ପରିଣାମରେ କିଛି ହେଇନି । ମୁଁ ଧନୁର କିଛି କରି ପାରିନି ସୌଦାମିନୀ, ବରୁଷ ଧନୁଟାର କିଛି ହିଁ କରିପାରିନି ।

ବିପ୍ରଚରଣ କଥାକୁ ଚାପି ଚଉକିଟାରେ ବସିପଡ଼ିଲେ ।

ସେଇ ହରିପୁର ଗାଁ ।

ସୌଦାମିନୀର ଶାଶୁଘର ।

ସୌଦାମିନୀର ସଂସାରଟା ହିଁ ଅତ୍ୟନ୍ତ ଛୋଟ ଥିଲା । ଶାଶୁ ଓ ସ୍ୱାମୀ ଆଉ ଛୋଟ ଧନୁଟା । ସ୍ୱାମୀ ଗାଁରେ ଗୋଟାଏ ଗୋଦାମ କରିଥିଲା— ଡାଲି, ଚାଉଳ ଗୋଦାମ । ବିଶେଷ ବଡ଼ ନୁହେଁ କି ଛୋଟ ନୁହେଁ । ସାରା ଗାଁଟାର ଲୋକ ସେଇ ଗୋଦାମଟା ଉପରେ ନିର୍ଭର କରି ଚଳୁଥିଲେ । ଏଣୁ ସେମାନଙ୍କର ବେଶ ଦି' ପଇସା ରୋଜଗାର ହଉଥିଲା, ସେମାନଙ୍କର ଅଭାବ ନଥିଲା । ଖାଇ ପିଇ, ପିନ୍ଧି ଖୁସିରେ ଚଳିଯାଉଥିଲେ !

ସୌଦାମିନୀ ତାଙ୍କର ଗାଁ ଝିଅ । ଏଇ ବନୂଟାପରେ ସେ ମଧ୍ୟ ତା'ର ପିଲାବେଳୁ ବାପା-ମାଙ୍କୁ ହରାଇଥିଲା, ଏବଂ ଲେଖାପୋଷା ପିଉସୀ ଘରେ ରହିଥିଲା । ତା'ର ପିଉସା ଏଇ ହରିପୁରରେ ତା'ର ବାହାଘର କରିଥିଲେ । ବାହାଘରର ପାଞ୍ଚଟା ବର୍ଷ ନ ପୂରୁଣୁ, ଭାଗ୍ୟର କି ବିପର୍ଯ୍ୟୟ, ସ୍ୱାମୀଙ୍କୁ ଖାଇଦେଲା । ବିଧବା ସଂସାରରେ ତା'ର ଆଉ କେହି ନାହାନ୍ତି ତାକୁ ସାହା ଭରସା ଦେବାପାଇଁ । ତା'ପରେ ତା'ର ସେଇ ଗୋଦାମଟା ଭାଙ୍ଗିଗଲା । ଗୋଦାମ ଚଳାଇବାକୁ ତା'ର ସାହସ ନଥିଲା କି ବୁଦ୍ଧି ନ ଥିଲା । ତା'ଛଡ଼ା ମାସ ଦି'ଗୁରିଟା ଯେଉଁ ଟୋକାଟାକୁ ଦୋକାନରେ ବସାଇଥିଲା, ସେ ଟୋକା ପରଶିଷାରେ ସବୁ ନଗଦ କରି ଚାଲିଗଲା । ଏ ବିପଦରେ ସୌଦାମିନୀ ଦେଖିଲା ପ୍ରାରମ୍ଭ ବେଳେ ଯେଉଁ ଗାଁ ଲୋକମାନେ ଟଙ୍କାଏ, ମଣାଏ, ବାକି ଉଧାର ପାଇଁ ତା' ଘର ପିଣ୍ଡାରେ ଧାରଣା ଦେଉଥିଲେ, ସେମାନେ ଆଜି ଆଉ ଆସୁ ନାହାନ୍ତି, ବରଂ ତା' ବିପଦରେ ଖୁସି, ବହୁତ ହସୁଛନ୍ତି । ସତେ ଯେପରି ସେମାନେ ତାହା ହିଁ ଚାହୁଁଥିଲେ ।

ସେତେବେଳେ ବିପ୍ରଚରଣ ରେଭିନ୍ୟୁ ସୁପରଭାଇଜର୍ । ସରକାରୀ କାମର ତାଗିଦାରେ ସେ ଯାଇଥିଲେ ହରିପୁରକୁ । ହରିପୁରରେ ଯାଇ ଯାହା ଦେଖିଲେ, ତାଙ୍କର ଦେହଟା ଭୟରେ ଥରି ଉଠିଲା । ପୁରା ଗାଁଟା ଯାକରେ ଯବଦଣ୍ଡ କଲେରା ଲାଗିଛି, କଲେରାଟା ଆରମ୍ଭ ହୋଇଛି ସୌଦାମିନୀର ଘରୁ । ସୌଦାମିନୀର ଶାଶୁ ସେତେବେଳକୁ ମରି-ସାରିଲେଣି । ଆଜି କେବଳ ଅଛି ସେ ନିଜେ ଆଉ ତା'ର ଝିଅ ।

ବିପ୍ରଚରଣ ସୌଦାମିନୀର ଘରକୁ ପଶିଯାଇଥିଲେ । ଅନ୍ଧାର ଘର । ଘରପାଖ ମୂତ, ଝାଡ଼ା, ଧାନ ଉଳଟା ଧୂଳରୁ ଶିକାମାନ ଲଟକି ଝୁଲୁଛି । ସେଇ ଅନ୍ଧାର ଘରଟା ଭିତରେ ସୌଦାମିନୀ ମୋଟାଏ ମସିଣା ଉପରେ ପଡ଼ି ମୃତ୍ୟୁକୁ ଅପେକ୍ଷା କରିଛି । ତା'ର ବାଳ ଲୋଟିଯାଇଛି ଭୂଇଁ ଉପରେ । ଦେହରେ ମୁଣ୍ଡରେ ଲୁଗା ନାହିଁ, ଆଖି ପଶିଯାଇଛି, ଗାଲ ପଶିଯାଇଛି, ଅଉ ଘରଟା ସାରା କେବଳ ବାନ୍ତି ଓ ଝାଡ଼ା । ମେଞ୍ଚା ମେଞ୍ଚା ମାଛି । ଭୂତଆଡ଼େ ଅସ୍ୱସ୍ତିକର ଦୁର୍ଗନ୍ଧ ।

ସେଇ ଝାଡ଼ା ବାନ୍ତ ଓ ମାଛିମାନଙ୍କ ମଧ୍ୟରେ ଗୋଟାଏ ଲଙ୍ଗଳା ଛୁଆ ଗନୁ । ଗୋଟାଏ ଟୋପିରେ ମୁଢ଼ି ଧରି ଖାଇବାରେ ଲାଗିଛି । ଆଉ ତା'ର ସ୍ନେହମୟୀ ବୋଉର ମୁହଁକୁ ନିର୍ନିମେଷ ନୟନରେ ଚାହିଁ ରହିଛି । କେହି ଜଣେ ନାହାଁନ୍ତି ଟିକେ ପାଣି ଦବାପାଇଁ, କେହି ନାଇଁ ଗୋଡ଼ଟାକୁ ଆଉଁସି ଦବାପାଇଁ । ସେଇ ମସିଣାଟା ଉପରେ ସୌଦାମିନୀ ଯନ୍ତ୍ରଣାରେ କୁନ୍ଥେଇବାରେ ଲାଗିଛି ।

ଏଇ ସୌଦାମିନୀ ତାଙ୍କର ଗାଆଁ ଝିଅ ।

ବିପ୍ରଚରଣଙ୍କୁ ଦେଖି ସୌଦାମିନୀ କେବଳ ଚାହିଁ ରହିଥିଲା ତାଙ୍କର ମୁହଁକୁ । ସେ ଆଖିର କାତର ଗୁହାରୀ, ସେ ଆଖିର କରୁଣ ଭାଷା ଆଜଯାଏ ଭୁଲି ହେବ ନାହିଁ । ସୌଦାମିନୀର ସିନା ଦୁର୍ବଳତା ହେତୁ କିଛି କହିପାରୁ ନଥିଲା, କିନ୍ତୁ ବିପ୍ରଚରଣ ଠିକ୍ ଲକ୍ଷ୍ୟ କରିଥିଲେ ତା'ର ଆଖି ଦୁଇଟି ଯେପରି ବହୁତ କିଛି କହୁଛି ।

ବିପ୍ରଚରଣ ତାକୁ ସେହିପରି ଚାହିଁ ରହିଥିଲେ ।

ସୌଦାମିନୀ ଗନୁକୁ ପାଖକୁ ଆଣିବା ପାଇଁ ତାଙ୍କୁ ଠାରିଲା । ବିପ୍ରଚରଣ ଗନୁକୁ କୁଣ୍ଢେଇ ସୌଦାମିନୀକୁ ଦେଲେ । ଗନୁ କିନ୍ତୁ ସେତେବେଳେ ସେହିପରି ନିର୍ବିକାର । ମୁଢ଼ି ଖୁଣ୍ଟିବାରେ ଲାଗିଥିଲା ସେ ।

ସୌଦାମିନୀ ଗନୁର ଗୋଡ଼ଠୁ ମୁଣ୍ଡଯାଏ ଆଉଁସି ପକାଇଲା । ସତେ ଯେପରି ତା'ର ଝିଅର ସାରା ଦେହରେ ତା'ର ଆଜ ଜୀବନର ଶେଷ ସ୍ନେହ, ଶେଷ ବାତ୍ସଲ୍ୟକୁ ବୋଳି ଦଉଛି ।

ଥରିଲା ଗଳାରେ ବହୁତ କଷ୍ଟରେ ସେ କହିଲା—ବିପ୍ର ଭାଇ, ଏଇ ଝିଅଟାକୁ ଆଡ଼େଇ ଦବନି । ସେ ଅନାଥିନୀ । ତା'ର କେହି ନାହାନ୍ତି ।

ତା'ର ଆଖିରୁ ଦୁଇଟି ବିନ୍ଦୁ ମୁକ୍ତା ସେତେବେଳେ ଝରି ପଡ଼ିଥିଲା ଗନୁ ପାଇଁ ।

ତା'ପରେ ସେଇ ସୌଦାମିନୀ ନିଶ୍ଚଳ ହୋଇଗଲା । ଏକଦମ୍ ନିଶ୍ଚଳ ।

ବିପ୍ରଚରଣ ସେତେବେଳେ ବସ୍‌ରେ ରିନୁକୁ ଧରି ଫେରି ଆସୁଥିଲେ ଘରକୁ, ସେତେବେଳେ ସେ ଦେଖିଲେ ହରିପୁର ଗାଁ'ର ମଶାଣୀ ଭିତରୁ ଜଳୁଛି ଗୋଟାଏ କରୁଣତମ ଯୁଇ । ସେଇ ଯୁଇର ନିଆଁ ଭିତରୁ ସତେ ଯେପରି ଗୋଟାଏ ମା' କାନ୍ଦି କହୁଛି— ତୁମେ ତା'ର ବାପ-ମା' ବିପ୍ର ଭାଇ ! ତୁମେ ତା'ର ବାପ ମା' । ତା'ର ଦୁଃଖ ତୁମରି । ତା'ର ସୁଖ ତୁମରି । ତା'ର ସବୁ ତୁମରି । ମୁଁ ତୁମକୁ କିଛି ମାଗୁନି ବିପ୍ର ଭାଇ, ତୁମର କଣିକାଏ ସ୍ନେହ ତା' ପାଇଁ ଢାଳି ଦେଲେ, ତୁମର ସ୍ନେହର ଗନ୍ତାଘର ସରିଯିବନି । ତୁମେ ତାକୁ କଣିକାଏ ସ୍ନେହ ଦବ ।

କଣିକାଏ ସ୍ନେହ !

କି କଣିକାଏ ସ୍ନେହ ସେ ଦେଲେ ?

ରିନୁଗଟା ପରୀକ୍ଷାରେ ଫାଷ୍ଟ ହେଉଥିଲା । ଗଣିତ, ସାହିତ୍ୟରେ ଆଶାତୀତ ନମ୍ବର ରଖୁଥିଲା । କି ସୁନ୍ଦର ଅକ୍ଷର ତା'ର ! ଅକ୍ଷର ତ ନୁହେଁ, ଗୁଡ଼ାଏ ମୁକ୍ତାକୁ କିଏ ଖାତା ଭିତରେ ସଜେଇ ରଖିଛି । ସ୍କୁଲରେ ଏତେ ଝିଅ ତା' କ୍ଲାସରେ ପଢୁଥିଲେ, କିନ୍ତୁ ପ୍ରତ୍ୟେକ ଶିକ୍ଷୟିତ୍ରୀଙ୍କର ତା'ଠାରେ ଅଧିକ ଦୃଷ୍ଟି । କାରଣ ନିରୀହତା, ସରଳତା ସହିତ ତା'ର ତୀକ୍ଷ୍ଣ ବୁଦ୍ଧି ଏବଂ ଉଜ୍ଜ୍ୱଳ ଫର୍ସା ରୂପ ତାକୁ ସବୁ ଛାତ୍ରୀଙ୍କଠାରୁ ସ୍ୱତନ୍ତ୍ର କରି ଗଢ଼ିଥିଲା ।

ବିଶେଷ କରି ତା'ର ମଥାରେ ସେଇ ଯେଉଁ ଗହଳ କେଶ ସମୁଦ୍ର !

ଆଜି ସେ ସବୁର ମୂଲ୍ୟ କିଛିଇ ନାହିଁ ।

ପାଞ୍ଚ ଛଅ ଦିନ ତଳର କଥା । ବିପ୍ରଚରଣ ଅଫିସରୁ ଫେରିଛନ୍ତି । ଶୁଣିଲେ କଲ୍ୟାଣୀ, ନମିତା ଦି'ଜଣଙ୍କର ପାଟି । ବିପ୍ରଚରଣ ଚୁପ୍‌କରି ଡ୍ରଇଂରୁମ୍‌ରେ ଠିଆ ହେଇ ଘର ଭିତରର କଥା ଶୁଣୁଥିଲେ ।

କଲ୍ୟାଣୀ କହୁଥିଲେ—ଆଲୋ ହେ ସତୀକନ୍ୟା, ଆଲୋ ସତି ସମସ୍ତଙ୍କ ଆଗରେ ମୁହଁ ଦେଖାଇବାକୁ ସ୍ୱହୁଁକୁ ନିମି ଯାହା କହୁଛି ସେ କଥା ମାନ ସା'··· ! ନିଜର ମାନ ରହିବ ଆଉ ଆମର ବି ମାନ ରହିବ ।

ରିନୁକୁ ସେମାନେ କହୁଥିଲେ ବୋଧହୁଏ, କିନ୍ତୁ ରିନୁର ପାଟି ଶୁଭୁନି । ରିନୁ ନୀରବ ରହିଛି । ନମିତା କହିଲା—ଯେତେ ଯାହା କହିଲେ ବି ତ ପଥର ! ଆମ କଥା ତା' କାନରେ କ'ଣ ପଶୁଛି ?

କଲ୍ୟାଣୀ କହିଲେ—ସେମିତି ଯଦି ହବୁ, ଜବରଦସ୍ତି ତୋ' ପାଟି ମେଲା କରି ଚଟେ ଖୁଆଇ ଦବୁ ।

ନମିତା କହିଲା—ତୋ'ର ସିନା ଇଜ୍ଜତ ନାହିଁ, ବାହା ନହୋଇ ମା' ହେବାକୁ ମନ ହେଲା, ଆମର ତ ମାନସମ୍ମାନ ଅଛି ! ହୁଁ...ଏଇ ଔଷଧଟା ଖାଆ... । ଏମିତି ହଜାର—ହଜାର ଆବରସନ୍ ହଉଛି । ଏଇଟା କିଛି ନୂଆ କଥା ନୁହେଁ ।

ସେଇ ଘରଟା ଭିତରେ ହପ୍ରଚରଣ ଠିଆ ହେଇ ଭାବିଲେ—ହଜାର ହଜାର ଆବରସନ୍ ଭିତରେ ସେଇ ଅନାଗତ ଶିଶୁଗୁଡ଼ାକ କ ପାପ କରିଥିଲେ ନମି ? ନିଜର ଶିଶୁକୁ ନିଜ ସନ୍ତାନ ବୋଲି ଦାବୀ କରିବାପାଇଁ ଯଦି ସତ୍‌ସାହସ ନାହିଁ, ତେବେ ମା' ହଉଥିଲ କାହିଁକି ? ଆଜି ଯଦି ବା ମା' ହେଲ ତେବେ ଭ୍ରୂଣହତ୍ୟା କରି ନିଜକୁ କୁମାରୀ କହିବାକୁ ଲଜ୍ଜା ଆସୁନି ବା କେମିତି ?

ସେମାନେ ବୋଧହୁଏ ଜବରଦସ୍ତି ରନୁ ଉପରେ ଏକ ଔଷଧ ଖୋଇବା ପାଇଁ ଆକ୍ରମଣ କରିବାକୁ ଆରମ୍ଭ କଲେ ।

ରନୁ ଚିତ୍କାର କରି ଉଠିଲା—ନା...ନା, ସେ ଔଷଧ ଖାଇବିନି ଦେଈ, ମୋ'ର ଯାହା ହଉ ପଛେ ମୁଁ ମୋ ସନ୍ତାନର ହତ୍ୟାର କାରଣ ହେଇପାରିବିନି ।

ଆଲୋ ଖାଇବୁନି କ'ଣ ? ତୋ' ବାପା ଖାଇବ । ଖାଇବୁନି ?

ତା'ପରେ ଶୁଭିଲା ଗୁଡ଼ାଏ ବିଧା ଗୋଇଠାର ଶବ୍ଦ ।

ହପ୍ରଚରଣ ସହିପାରିଲେନି । ସେମାନଙ୍କ ପାଖକୁ ଯାଇ ଦେଖିଲେ ରନୁ ତଳେ ପଡ଼ିଛି, ଆଉ ବିଧା ଗୋଇଠା ମାରି ଚାଲିଛନ୍ତି କଲ୍ୟାଣୀ । ନମି ଗୋଟାଏ ଔଷଧ ଶିଶି ଧରି ଗର୍ଜୁଛି ।

ହପ୍ରଚରଣ ପାଟିକରି କହିଲେ—କଲ୍ୟାଣି ! ଏ କ'ଣ କରୁଛ ? ଗୋଟାଏ ବଢ଼ିଲା ଝିଅ ଦେହରେ ହାତ ଦେବାକୁ ତୁମର ମନ ବଳୁଛି କେମିତି ?

କ'ଣ କହିଲ ?

ରନୁର ଏ ଅବସ୍ଥାରେ ତୁମେ ତାକୁ ମାରିବା ଅନ୍ୟାୟ କଲ୍ୟାଣୀ । ତା'ଛଡ଼ା ପ୍ରତ୍ୟେକର ଗୋଟାଏ ନିର୍ଦ୍ଦିଷ୍ଟ ସୀମା ଅଛି ।

ବାପା, ଆପଣ ତା'ର ମୁଣ୍ଡଟାକୁ ଘୋଡ଼ାଖାଇଛନ୍ତି । ଆପଣଙ୍କ ଯୋଗୁଁ ତା'ର ଏ ସାହସ । ନଇଲେ—

ନଇଲେ, ତୁମେ ମା' ଝିଅ ତ କୋଉଦିନଠୁ ମାରି ସାରନ୍ତିଣି ।

ବାପା ! ନମିତା ଆହତ ଗଳାରେ କହିଲା—ରାନୁ ମୋର ସାନ ଭଉଣୀ । ସେ ତ କେବଳ ଆପଣଙ୍କର ନୁହେଁ ବାପା, ସେ ମୋର ବି । ଆପଣ ଯେପରି ତା'ର ହିତାକାଂକ୍ଷୀ ମୁଁ ବି ସେହିପରି । ସେଇଥିପାଇଁ ତ ମୁଁ କହୁଛି, ବାପା ସେ ମୋ' କଥା ମାନଯାଉ । କୋଉ ବଡ଼ ଭଉଣୀ ଚାହେଁ ତା'ର ସାନ ଭଉଣୀର ଏପରି କଳଙ୍କମୟ ଜୀବନ ! ସବୁ କଳଙ୍କକୁ ଲିଭାଇ ଦେଇ, ସବୁ ଅପକର୍ମକୁ ପୋଛି ଦେଇ ମୁଁ ଚାହେଁ ସେ କାହାକୁ ବିଭା ହୋଇ ସୁଖରେ ସଂସାର କରୁ ।

କାନ୍ଦି କାନ୍ଦି ରାନୁ କହିଲା—ମୋର ସୁଖ ସଂସାର ପୋଡ଼ି ପାଉଁଶ ହୋଇଯାଇଛି ଅପା । ଏ ପୋଡ଼ା ଜୀବନରେ ସେ ସୁଖ ସଂସାର କରିବାର ଆଶା ମୁଁ ଆଉ କରୁନି । ନିଜର ପେଟରେ ଛୁଆର ଜୀବନ ବିନିମୟରେ ଆଉ କି ସଂସାର ହବ ଅପା ? ତା'ର ମୁହଁକୁ ତ ଚାହିଁ ଚାହିଁ ମୁଁ ମୋର ସାରା ଜୀବନ କଟାଇ ଦେବି !

ବିପ୍ରଚରଣ ରାନୁକୁ ଟେକି କୋଳ ଧରିଲେ । ସେ କାନ୍ଦୁଥିଲା । ବିପ୍ରଚରଣଙ୍କ ଛାତିରେ ତା' ମୁହଁ ଗୁଞ୍ଜି ଭୁହାକୁ ଭୁହା କାନ୍ଦୁଥିଲା । ସେ ରାନୁକୁ ଧରି ତା' ଘରକୁ ନେଇ ଆସିଲେ । ତାକୁ ଭୁଲାଇବା ପାଇଁ ତା'ର ଆଖିର ଲୁହ ପୋଛି କହିଲେ—ମା' ପିଜୁଳି ଗଛରେ ସେଇ ଯୋଉ ପିଜୁଳିଗୁଡ଼ାକ ବଡ଼ ବଡ଼ ଫଳିଥିଲା, ସେଗୁଡ଼ା କ'ଣ ଆଜି ତମେ ସବୁ ଖାଇ ଦେଇଛ ?

ନା...ମନସୁଖ ଭାଇଙ୍କ ଘରକୁ ବୋଉ ପିଅନ ହାତରେ ଆଜି ପଠାଇ ଦେଇଛନ୍ତି । ଏଇ ପିଜୁଳିକୁ ମନସୁଖ ଭାଇଙ୍କର ଖାଇବାକୁ ଭାରି ମନ ।

ମନସୁଖ ଯେତେ ବଡ଼ ହଉପଛେ, ପିଲାଟା । ପିଲା ବୁଦ୍ଧି ଛାଡ଼ିନି ନଇଲେ ଏ ପିଜୁଳି ଉପରେ ତା'ର କାହିଁକି ଏତେ ଲୋଭ ? କହିଲୁ ମା', ମନସୁଖ ପିଲାଟା ଭଲ ନୁହେଁ ?

ବାପା !

ଏଇ ମନସୁଖ କ'ଣ ତୋ'ର ପସନ୍ଦ ହୁଏନା ମା', ନମି ପାଇଁ ।

ଅପା ପାଇଁ ମନଲାଖି ବର ସିଏ ବାପା । ହୁଏତ ତାଙ୍କ ପଦ କୋଳି ପାଇବା ଆମର ବଡ଼ ଭାଗ୍ୟ । ଖୁବ୍ ଭଲ ସେ । ଖୁବ୍ ଭଲ !

ଆମ ବାହାଘରର ମାସ ଦ'ଟା ରହିଲା । ବାହାଘର ସରିଲେ ମଣିଷ ଟିକେ ନିଃଶ୍ୱାସ ମାରିବ । ତୁ ତ ଏଥର ତୋ' ଅପା ପାଇଁ ବଜାର କରିବୁ !

ହଁ ବାପା, ମୋ' ଅପା ପାଇଁ ମୁଁ ଶାଢ଼ୀ କିଣିବି, ମୋ' ଅପା ପାଇଁ ଗହଣା କିଣି ଆଣିବି, ସବୁ ଭଲ ଭଲ ଜିନିଷ ସାରା ଟାଉନ୍‌ଟା ବୁଲି କିଣି ଆଣିବି ?

ଆଉ ତୋ' ଭିଣୋଇ ପାଇଁ ?

ବନୁର ମୁଖ ମଳିନ ପଡ଼ିଗଲା । ଶୁଷ୍କ ମୁହଁରେ ବାଧ୍ୟବାଧକତା'ର ହସରେଖା ଟାଣି କହିଲା —କ'ଣ ବାପା ।

ଅପା ପାଇଁ ତ ଏତେ ଜିନିଷ କିଣିଆଣିବୁ, ତେବେ ତୋ' ଭିଣୋଇ ପାଇଁ ? ବିପ୍ରଚରଣ ହସି ହସି ପଚାରିଲେ ।

ଭିଣୋଇ ପାଇଁ ମୋର ଦରକାର କିଛି ନାହିଁ ବାପା, ସେ ବିଲାତ ଫେରନ୍ତା—ବଡ଼ କଥାରେ ତାଙ୍କର ମନ । ଯୋଉଦିନ ଆସିଥିଲେ ଏଇ ପିଜୁଳି ଗଛର ଫଳ ଖାଇଥିଲେ ଏବଂ ଯେତେଥର ଆସିଛନ୍ତି ଏଇ ପିଜୁଳିକୁ ଖାଇଛନ୍ତି, ଯେଉଁଦିନ ବାହାହୋଇ ଏଠୁ ଯିବେ ଘରେ ପିଜୁଳି ପଠାଇ ଦେବ ।

ବିପ୍ରଚରଣ ଠୋ' ଠୋ' ହସିଲେ । କହିଲେ—ତୁ ବଡ଼ ପାଗଳୀ ।

ଗନୁ ମୁହଁପୋଛି ଠିଆହୋଇଥିଲା ।

ଗଲୁ ମା', ମୋ' ପାଇଁ କ'ଣ ଟିକେ ଖାଇବାକୁ ଆଣିବୁ ।

ଗନୁ କହିଲା—ଯାଉଛି··· ।

ଗନୁ ଚାଲିଯାଇଥିଲା । କିନ୍ତୁ ବିପ୍ରଚରଣ ତାକୁ ସେହିପରି ଚାହିଁ ରହିଥିଲେ । ସତର ଅଠର ବର୍ଷର ଝିଅଟା ଆଜ ଖେଳୁଥା'ନ୍ତା, ବୁଲୁ-ଥା'ନ୍ତା, ଖୁସି ସରାଗରେ ତନ୍ଦ୍ରା ଦକ ହସଇ ନାଚୁଥା'ନ୍ତା—ନାହିଁ ଜଞ୍ଜାଳ, ନାଇଁ କଷ୍ଟ; କିନ୍ତୁ ସେ ସବୁ କୁଆଡ଼େ ତା'ର ଭାଗ୍ୟଲିପିରୁ ଲିଭିଯାଇ ରହିଲା ଗୋଟାଏ ଦାରୁଣ; ଅଥଚ ସ୍ୱାଭାବିକ ଲିପି, ଯାହାକି ନାଲି କାଳିରେ ଅକ୍ଷର ଲାଇନ୍ ଦିଆହୋଇ ଲେଖା ହୋଇଛି—ସେ ମା' ହବାକୁ ଯାଉଛି । ବିଭା ନହୋଇ ମା' ହବାକୁ ଯାଉଛି ।

ବିପ୍ରଚରଣ ଲୁହାର ରେଲିଂ ଧରି ଝରକା ଫାଙ୍କରେ ଆକାଶକୁ ଚାହିଁ ରହି ଭାବିଲେ—ଓଃ ... ଏଇ ଘରେ ସେଇ ଯେଉଁ ଜାରଜ ସନ୍ତାନ ପ୍ରଥମେ କୁଆଁ ସ୍ୱର ତୋଳିବ, ସେଇ ହତଭାଗାଟାକୁ ସେ ସ୍ୱାଗତ କରିବେ କେମିତି ? ଯେତେ ରଘୁର ସନ୍ତାନ ହେଲେ ମଧ୍ୟ ସେଇ ଅଜ୍ଞାତ କୁଳଶୀଳ ପିତାର ରକ୍ତରେ ଯେଉଁ ଫୁଲ ଫୁଟିଛି—ସେ ଫୁଲକୁ ତୋଳି ଧରି ଚୁମ୍ବନ ଢାଳିବେ କେମିତି ?

ଆଃ...ସେ ଯେ ଏକ ନିର୍ଜୀବ; ଅଥଚ ଅସହାୟ ସାମାଜିକ ପ୍ରାଣୀ । ସମାଜ ତାଙ୍କ ଦି'ଗୋଡ଼ରେ ଗୋଟାଏ ଓଜନିଆ ଟଙ୍କ୍ରେ ଲୁହାର ଶିକୁଳି ବାନ୍ଧି ଦେଇଛି । ସମାଜ ନିନ୍ଦା ଅପମାନର ଗୋଟାଏ ମେଘଛୁଆଁ ମେଘ-ନାଦ ପାଚେଶ୍ୱ ତାଙ୍କ ପାଇଁ ଗଢ଼ି ଦେଇଛି । ସେ ସେଷ୍ଟ ଲୁହା ବେଢ଼ି, ସେଇ ମେଘନାଦ ପାଚେଶ୍ୱକୁ ଭାଙ୍ଗିବେ କପରି ?

କିନ୍ତୁ ସବୋପରି ସେ ଯେ ବାପା ! ସନ୍ତାନ ପାଇଁ ତାଙ୍କ ରକ୍ତରେ ଯେ ବାତ୍ସଲ୍ୟର ଗଙ୍ଗା ଯମୁନା ଖେଳେ ! ସନ୍ତାନ ପାଇଁ ଯେ ତାଙ୍କ ହୃଦୟରେ ଲକ୍ଷ ମଣି ମାଣିକ୍ୟର ସ୍ନେହ ଉଜଳି ଉଠେ । ସେ ବାପା । ନିଜ ସନ୍ତାନ ପାଇଁ ସେ ଜୀବନ ଦେବେ । ରଘୁର ସନ୍ତାନକୁ ସେ ଏଇ ନିଷ୍ଠୁର ସମାଜର କଠୋର ନିଷ୍ପେଷଣ ଭିତରେ, ନିଜ କନ୍ୟାର ରକ୍ତ ମାଂସର ସନ୍ତାନକୁ କିଅଣ ପେଲି ଦେବେ ?

ନାଃ ... ।

ତେବେ ସେ କିଅଣ ସେଇ ଜାରଜ ସନ୍ତାନଟାକୁ ନିଜର ପିଲା କରି ଛାତି ଉପରକୁ ଟେକି ନେବେ ?

ତାଙ୍କର ଜାତି କୁଟୁମ୍ବ ? ତାଙ୍କର ସାମାଜିକ ସ୍ଥାନ ? ତାଙ୍କର ଆତ୍ମମର୍ଯ୍ୟାଦା ?

କି ଆତ୍ମମର୍ଯ୍ୟାଦା ?

ବିପ୍ରଚରଣ ଅସ୍ଥିର ଭାବରେ ନିସ୍ତବ୍ଧ ନିଶୀଥର ନିଥର ବାତା-ବରଣକୁ ଭାଙ୍ଗି ଚୁନ, ଅଗାଇ ଦୃଢ଼ଭାବରେ କହି ଉଠିଲେ—ଯେତେ ବାଧା ବିଘ୍ନ ଆସୁପଛେ ଗାନ୍, ଯେତେ ଝଡ଼ ଝଞ୍ଜା ଆସୁ, ତୁ ନିଶ୍ଚିନ୍ତ—ନିଶ୍ଚିନ୍ତ ମା' ହବୁ । ତୋର ଆଖିର ଲୁହ ପୋଛି, ତୋର ଶିଶୁ ସନ୍ତାନକୁ କୋଳରେ ଧରି ମୁଁ—ଏଇ ବୁଢ଼ାଟା ଅଜା ହେଇ ତା'ର ସାଥିରେ ଖେଳିବ । କେଉଁ

ଦିନଠାରୁ ଗୋଟିଏ ନଷ୍ଟ ଛୁଆ ସାର୍ଥୀରେ ଖେଳନ୍ତି ରାନୁ, ଚୋ'ର ପିଲା କେବେ ଏଘରକୁ ଆସିବ, ମୁଁ ତାର ଦିନ ଗଣୁଛି, ତାର ସାଥୀରେ ଖେଳିବ । ମୋର ଜୀବନର ସମସ୍ତ ଦୁଃଖ, ସମସ୍ତ ଜଞ୍ଜାଳ, ସମସ୍ତ କର୍ମବ୍ୟସ୍ତତାର କ୍ଳାନ୍ତିକୁ ତାର ଦବେଷ୍ଟି କଥାରେ, ତାର ମଧୁର ହସରେ ଭୁଲିଯିବ ।

ମୁଁ ଅଜା ହେବ ରାନୁ । ମୁଁ ଅଜା ହେବି । ବାସ୍ତବିକ ମୁଁ ଅଜା ହେଲେ କି ଯେ ଖୁସି ହେବ !

ଏକ ଅଜ୍ଞାତ ଶିଶୁର ହସ, ତାର କୁଆଁ କୁଆଁ କଅଁଳ କାନ୍ଦ ବିପ୍ରଚରଣଙ୍କର କାନରେ ଲହଡ଼ି ଖାଇ ଖେଳି ଉଠିଲା । ସେ ଶୂନ୍ୟକୁ ଚାହିଁ, ସେଇ ଅନ୍ଧାର ଭିତରେ ଶିଶୁଟିର ମୁହଁକୁ ଦେଖିବାକୁ ଚେଷ୍ଟା କରୁଥିଲେ ।

ସେଇ ଘରଟା—ସେଇ ଚୂନଘରଟା, ଯାହାର ଆଗରେ ସିଜୁ ବୁଦା ବାଡ଼, ଦ'ଶନଟା ଅମୃତଭଣ୍ଡା—ସଜନା ଗଛ, ଯେଉଁ ଘରେ ଦିନବେଳା ଓଳ ଚଳ ଦେଖାଇ ଘରୁ ଧୂଆଁର କୁଣ୍ଡଳୀ ଉପରକୁ ଉଠେ, ରାତି ଦ'ଟା ଯାଏ ଯେଉଁ ଘରେ ଲଣ୍ଠନ ଆଲୁଅର କ୍ଷୀଣରେଖା ଝୁର୍ ଝାପ୍ ଅଥଚ ନିମ୍ନ ଛୁଆଟିଏ ହେଇ ରାନୁର ଗୁଣ୍ଡରେ ଲାଗି କମ୍ପନ ଖେଳାଏ ସେଇ ଘରଟାରେ ଯେମିତି ଯେ କି ଏକ ଆକର୍ଷଣୀ ଶକ୍ତି ଅଛି, ଯେତେ ଆଖି ଫେରାଇବାକୁ ଚେଷ୍ଟା କଲେ ମଧ୍ୟ ଆଖି ଚାଲିଯାଉଛି ହେଇ ଘର ଉପରକୁ ।

ସେଇ ଘରେ ତାର ମନର ମଣିଷ ବାସ କରୁଥିଲା !

ସେଇ ଘରେ ତାର ନାଶ ଜୀବନର ସବୁ ଆଶା, ସବୁ କଳ୍ପନା, ସବୁ କାମନା ପୂରି ରହିଥିଲା ।

ସେଇ ଘରେ ରହିଥିଲା ତାର ଭବିଷ୍ୟତ ଜୀବନର ଚଲାବାଟକୁ ବତାଇ ଦେବା ପାଇଁ ସମସ୍ତ ପାଥେୟ ।

ସେଇ ଘର ଅଛି । ସେଇ ଘରର ସେଇ ରୂପ ଅଛି । ଅଛି ସେଠାକୁ ଯିବାକୁ ସେଇ ସରୁ ଚଲାବାଟ । ସଜନା ଗଛ ଅଛି । ଅମୃତଭଣ୍ଡା ଗଛ ଅଛି । ସ୍ବଚ୍ଛ ଜଳପରେ ସେଇ କଖାରୁ, ଲାଉ ଗଛ ଅଛି । କିନ୍ତୁ ନାହିଁ ସେଇ ଜଣକ, ଯେ କି ତାର ଜୀବନର ସବୁ ସପନ ଛେଚିକରି ମରୁ-ଭୂମିରେ ପକାଇ ଦେଲା । ତାର ହୃଦପିଣ୍ଡ ଛେଚି କରି ଅମୁହାଁ ଗୋହିରୀ ଭିତରେ ପକାଇଦେଲା ।

ଆକାଶରୁ ଝରିପଡ଼ୁଥିଲା ଜଳ । ଟୋପି ଟୋପି ଜଳ । ଧାରି ଧାରି ଜଳ । ସବୁ ଜଳ ଏକାଠି ହେଲା । ଚାରିଆଡ଼ର ଜଳ ମିଶି ସରୁ ଧାରଟିଏ ହେଲା । ଧାରରୁ ନାଳ । ନାଳରୁ ନଈ । ମାଡ଼ି ଚାଲିଲା । ବହି ଚାଲିଲା । ଆଗକୁ ଆଗକୁ । ସେ ଯିବ । ହଁ, ସେ ଯିବ । କେତେ ବନ ଟପିଛି । କେତେ ଉର୍ବର ମୃତ୍ତିକା ଉଦ୍ୟାନ ଟପିଛି । ଟପିଛି ପ୍ରାନ୍ତର, କ୍ଷେତ । ଟାଙ୍ଗର ପଥର କାଟି ଆଗକୁ ଗତି କରିଛି । ସେ ସମୁଦ୍ରରେ ମିଶିବ । ସମୁଦ୍ର ତ ତାର ପ୍ରାଣଜୀବନ । ସମୁଦ୍ରର ଉଚ୍ଛଳ ତରଙ୍ଗମାଳାରେ, ଅତଳ ଜଳ ରାଶିରେ ନିଜର ସମସ୍ତସତ୍ତ୍ୱା ସ୍ମୃତିକୁ ଭୁଲି ଯାଇ ଆତ୍ମବିସର୍ଜନ କରିବ । ଆତ୍ମ ସମର୍ପଣ କରିବ । ଆତ୍ମ ନିବେଦନ କରିବ । ଏକରୁ ହେବ ଅନେକ । ଅନେକରୁ ହେବ ଏକ । ମହାସତ୍ତ୍ୱରେ ନିଜର କ୍ଷୁଦ୍ରାତିକ୍ଷୁଦ୍ର ପ୍ରାଣକୁ ଲୀନ କରି ନିଜର ଏତେ ଦିନର ଆଶାକୁ, ଏତେ ଦିନର ପଥ ଶ୍ରାନ୍ତିକୁ, ପ୍ରିୟ ସାଥୀରେ ମିଶିବା ପାଇଁ ଏତେ ଦିନର ସେଇ ଆକୁଳ ଆବେଗକୁ ମେଣ୍ଟାଇ କରିବ । ସେ ଫୁଲଉଠି ମାଡ଼ିଚାଲିଛି । ନାଚି କୁଦି ମାଡ଼ିଚାଲିଛି । ହସି କାନ୍ଦି ମାଡ଼ି ଚାଲିଛି । ସମୁଦ୍ରର ଆହ୍ୱାନ, ସମୁଦ୍ରର ଆଶ୍ଳେଷର ମହା ବନ୍ଧନ ତାକୁ ଅସ୍ଥିର କରିଛି । ସେ ବହିଯାଉଛି ।

ଆଃ ••• ଶେଷରେ କ'ଣ ହେଲା ?

ଶେଷରେ ସତେ କ'ଣ ହେଲା ?

ଯେଉଁ ନଈ ବହିଚାଲିଥିଲା ଆଗକୁ, ଶେଷରେ କ'ଣ ହେଲା ଯେ, ତାର ମୁହାଣରେ ଠିଆହେଲା ଏକ ନିଦାରୁଣ, ନିର୍ମମ ପର୍ବତ, ଯେ କି ତାର ମୁହାଁଣକୁ ବନ୍ଦ କରିଦେଲା ?

ବନ୍ଦ ମୁହାଁଣ !

ତା ପାଇଁ କ'ଣ ଶେଷରେ ନାଇଁ ମହାସମୁଦ୍ରର ଅନନ୍ତ—ଅନନ୍ତ ଜାଲ ବାଣ୍ଟିଯିବ ? ଅଛି ଗୋଟାଏ ରୁକ୍ଷ, ନିଷ୍ପ୍ରାଣ ତପ୍ତ, ଅଗ୍ନିମୟ ଜଳି ଜଳି ମରୁଭୂମି ।

ଆହା, ସେ ସେ ନାହିଁ ନଥିବା କଠୋର ବନ୍ଦ ମୁହାଣ ।

କେତେ ହା' ହା' କାର ! କେତେ ହତାଶା !

ସବୁ ଯେପରି ମୁଣ୍ଡଉପରେ ଆଜ ଅଜାଡ଼ି ପଡ଼ୁଛି ।

କୋଉଠି ଭଗ୍ନ ସୂର୍ଯ୍ୟର କୋଟି କୋଟି ତାର ଫୁଲପ୍ରବ ମାରୁଛି । କୋଉଠି ଅମା ରଜନୀର ନକ୍ଷତ୍ର ବିଭିପ୍ରଭା ।

ଯେଉଁଠି ନମିତା ତାର ସେଇ ଶୁଭଦିନର ମଙ୍ଗଳ ମୁହୂର୍ତ୍ତକୁ ଉଜାଗର ହୋଇ ବସିଛି ରହିଛି, ସେଇଠି ସବୁ ମା' ହୋଇପଡ଼ି ପ୍ରତ୍ୟେକ ମୁହୂର୍ତ୍ତକୁ ବିଷମୟ କରୁଛି ।

ଆଃ···ସୁବୋଧ !

ତମେ ହୁଏତ ବର୍ତ୍ତମାନ ସୁବୋଧ, ତମର ସେଇ ଅଭାଗିନୀ ସାନୁକୁ ଭୁଲି ଆଉ କୌଣସି ବାଳିକାର ସ୍ୱପ୍ନ ଦେଖୁଥିବ ! କେତେ ତ ବଡ଼ଘରୁ ତୁମକୁ ଜୋଇଁ କରିବାକୁ ଲୋକ ପ୍ରସ୍ତାବ ବାଡ଼ିବେ ସୁବୋଧ । ହୁଏତ ତୁମେ ସେଇମାନଙ୍କ ଭିତରୁ କାହାକୁ ଜୀବନସାଥୀ କରି ବାଛିନେବ । କିନ୍ତୁ ତୁମ ସାନୁ···? ତୁମ ସାନୁ ତୁମକୁ ତ ଭୁଲିପାରେନା ସୁବୋଧ ! ତୁମର ନାଁ ତ ତାର ହୃଦୟ ପର୍ଦ୍ଦାରେ ଉଜ୍ଜ୍ୱଳ ଅକ୍ଷରରେ ଲିପିବଦ୍ଧ ହୋଇ ରହିଛି—ତାକୁ ସେ ଭୁଲିବ କିପରି ?

ଏ ଦୁନିଆରେ ଯାହାକୁ ଭାବୁଛି ମୋର, ଯାହାକୁ ଦେଖି ଭାବୁଛି ଏଇ ହେଉଛି ପ୍ରକୃତ ଲୋକ ଯେ କି ମୋର ଦୁଃଖରେ ପଦେ ଆହା କରିବ, ସହାନୁଭୂତି ଦେବ, ସେ ମତେ ପାଦରେ ଦୂରକୁ ଠେଲି ଦେଉଛି, ପର କରୁଛି । ମୁଁ ସତେ କ'ଣ କାହାର ନୁହେଁ ? କି ବେଳାରେ ମୋ ମା' ମତେ ଏ ପୃଥିବୀକୁ ଆଣି ଜନ୍ମଦେଲା କେଜାଣି, ସମସ୍ତଙ୍କୁ ନିଜର ଭାବିଲି; ଅଥଚ କାହାର ହୋଇପାରିଲି ନାହିଁ ।

ଏଇଥିପାଇଁ ମୁଁ କେତେ କାନ୍ଦିବି ? କେତେ କାନ୍ଦିବ ବୁଝ ସୁବୋଧ । କାନ୍ଦ କ'ଣ ମୋ ଜୀବନର ଚିର ସାଥୀ ?

ତୁମେ ନା ବନେ କହୁଥିଲ ସୁବୋଧ—ଶତ୍ରୁ, ମୁଁ ତୁମକୁ ହରାଇ ପାଗଳ ହୋଇଯିବି ? ତୁମେ ନା ବନେ ମତେ ତୁମର ବାହୁ ବନ୍ଧନରେ ଆବଦ୍ଧ ରଖି କହୁଥିଲ ସୁବୋଧ—ଶତ୍ରୁ, ତୁମର ଏଇ ରକ୍ତ, ମାଂସ, ହାଡ଼ ଭେଦକରି ମୁଁ ତୁମର ମନକୁ ଖୋଜୁଛି । ମତେ ସେଇ ମନକୁ ଦିଅ । କିନ୍ତୁ ସେଇ ମନକୁ ତ ମୁଁ ଅଞ୍ଜଳୀ ଦେଇ—ଶରଣଗତ ଭାବେ ତୁମର ପାଦ ଧୂଳି ତଳେ ଲୁଚାଇ ଦେଇଛି ସୁବୋଧ, କିନ୍ତୁ ଶେଷରେ—ଶେଷରେ ତୁମର ସତେ ମନ ବଦଳିଲା, ଏଇ ତୁମର ଶତ୍ରୁଟାକୁ ଅସତୀ କହି ଧକ୍କା ମାରି ଘରୁ ତଡ଼ିଦେଲ ?

ସେଇ ଘରେ ମୁଁ ତୁମକୁ ଗୋଟିଏ ହାର ମାଗିଥିଲି—ମୋର ଅତୃପ୍ତ ନାରୀ ଜୀବନର କାମନା ନା ? କିନ୍ତୁ ତୁମେ ମତେ ତଣ୍ଟିଆ ଦେଲ । ହାୟ...ନିଜର ପ୍ରିୟଜନ ମୁହଁରୁ ଏ ଇତର ବାକ୍ୟ ଶୁଣି ମୁଁ ଦେହ ଧରି ରହିବି ବା କାହିଁକି ? କେବଳ ଏଇ ପେଟର ଛୁଆଟା ପାଇଁ ସିନା !

ସେ ତ ମୋର ଦୁଃଖୀ ଧନ !

ଧନରେ ! ତୋ'ରି ଉପରେ ତ ସମସ୍ତଙ୍କର ଅବହେଳା । ସମସ୍ତଙ୍କର କୋପଦୃଷ୍ଟି । ସମସ୍ତଙ୍କର କ୍ରୋଧ । ସମସ୍ତେ ମୋ ଆଡ଼କୁ ମାଡ଼ିଆସୁଛନ୍ତି । କଠୋର ଶକ୍ତ ହାତ ବଢ଼ାଇ ତୋର ସରୁ ତଣ୍ଟିଟାକୁ ଚିପି ଧରିବା ପାଇଁ ମତେ ଯମ ଯନ୍ତ୍ରଣା ଦେଉଛନ୍ତି ; କିନ୍ତୁ ମୁଁ ତତେ ତାଙ୍କୁ ଦେଇ ଦେବି କିପରି ?

ମୁଁ ତ ମା' । ମା' ମୁଁ

ମା' ହୋଇ, ତତେ ମୋ ପେଟରେ ବଢ଼ାଇ, ମୋର ରକ୍ତ ମାଂସ ଦେଇ, ମୋର ସ୍ନେହ, ମମତା ଦେଇ, ମୋର ଜୀବନର ଆୟୁ ଦେଇ, ମୁଁ ପାଷାଣୀ କିପରି ତତେ ମାରିଦେବି ? ମୁଁ ବ୍ୟଭିଚାରିଣୀ ହୋଇପାରେ । କିନ୍ତୁ ମୁଁ ଯେ ତୋର ମା' । ତୋ'ରି ପାଇଁ ତ ବକ୍ଷ ମୋର ସ୍ତନ୍ୟଭରା । ସ୍ତନରେ ଅମୃତ ରଖି ହାତରେ ବିଷ ଦେବି କେମିତି କହିଲୁ ?

ବୋଉ ଆସିଛନ୍ତି, ପିଟିଛନ୍ତି । ବାପା ଆସିଥିଲେ ପିଟିଛନ୍ତି—ମାରିଛନ୍ତି । ଅମାତା ଚାବୁକ ଚଳାଉଛି । ଦିନ ରାତି ଗଞ୍ଜଣା । ଦିନ ରାତି ଗାଳିର ବର୍ଷା । ଦେହରେ ତ ବଳ ନାହିଁ ମୋର, ପାଦରେ ଶକ୍ତି ନାହିଁ, ମୁଣ୍ଡ ଘୂରୁଛି, ପଡ଼ିଉଠି କେତେ କାମ କରିବି ? କିନ୍ତୁ ନ କରିବି ଯେ କେମିତି ? ବୋଉ କଣ

ସେଷେଇ କରନ୍ତ ? ଡାକ୍ତରଖାନାରୁ ଫେରି ତ ସେ ପୂର୍ବ ସ୍ୱାସ୍ଥ୍ୟ ଫେରି ପାଇନାହାନ୍ତି । ଅପା କ'ଣ ଘର ଝାଡ଼ୁ କରନ୍ତା ? ଆହା···ଅପା ହାତରେ ପୁଣି ଝାଡ଼ୁ ? ମୁଁ ତ ଅଛି । ମୁଁ କାମିକା ଲୋକ । ମୋ ଅପା···ହିଁ, ମୋର ତ ଅପା ! ତା ହାତରେ ଝାଡ଼ୁ ଦେଇ ମୁଁ କଣ ଶୋଇରହନ୍ତି । ଆଉ ଅମା, ସେଇଟା ତ ପିଲା ! ପିଲାଟାକୁ ଦରଗଞ୍ଜା କରି ମୁଁ ତାର ବଡ଼ ଭଉଣୀ ହେଇ କ ସେ ବଡ଼ କାମଟା କଲି ?

ନା, ମୁଁ ତ ତୁମର ପାଇଁ ନଲି ବୋଉ, ଅପା । ଯାହାର ଯେତେ କାମ ଅଛି କୁହ, ମୁଁ କରିବ !

ପେଟଟା ଭିତରେ ଚୁଆଟା ଖାଲି ବୁଲୁଛି ।

ଏଇ ଚୁଆଟା ପାଇଁ ସେ କେତେ ସାଦ ଖାଇଥା'ନ୍ତା । କେତେ ବନ୍ଧୁ-ବାନ୍ଧବ, କେତେ ଜନଷ ଆଣି ତାକୁ ଖାଇବାକୁ ଦେଇଥା'ନ୍ତେ । ତାର ପାଟିର ଅରୁଚ ପାଇଁ ବାପା ବୋଉ କେତେ ସୁସ୍ୱାଦୁ ଖାଦ୍ୟର ବନ୍ଦୋବସ୍ତ କରିଥା'ନ୍ତେ । କନ୍ତୁ ଆଜ ସେ ସବୁ କିଛି ନାଇଁ । ମାତୃତ୍ୱର ଯେଉଁ ଗର୍ବ, ତାର ଆଜ ନାଇଁ । ନଜେ ମା' ହେଇଛି ବୋଲି ସେ କାହାକୁ ଗ୍ରତ ଫୁଲାଇ କହି ପାରୁନ । ମା' ହେବାଟା ତା ପାଇଁ ଭଗବାନ-ଙ୍କର ଆଶୀର୍ବାଦ ପରିବର୍ତ୍ତେ ହେଇପଡ଼ିଛି ଅଭିଶାପ । ସେଇ ଅଭିଶାପର ବିଷ ଜ୍ୱାଳାରେ ସେ ଘାରି ହେଇ ଆଜ ନଜର ହୀନ କପାଳକୁ ନନ୍ଦୁଛି ।

ଅପାର ଶ୍ୱଶୁରଘର ଆଉ କୋଡ଼ିଏ ଦନ ଅଛି । ଘରର ସ୍ୱରିଆଡ଼େ ପରିଷ୍କାର । ଘରର କାନ୍ଥ ବାଡ଼ ଚୂନ ଧଉଳା ହଉଛି, କୁଲି ମଜୁରିଆ ସମସ୍ତେ ଆସୁଛନ୍ତି । ସମସ୍ତେ ତାଙ୍କୁ ଜବ ଜବ ଆଖିରେ ଘଡ଼ିଏ ଯାଏ ଚାହିଁ ରହି କ'ଣ ଫୁସ୍ ଫୁସ୍ ହଉଛନ୍ତି । କେବଳ ସେମାନେ ତ ଏକା ନୁହେଁ, ଏ ଘରର ଆଖ ପାଖ ସାଇର ଲୋକ ସମସ୍ତେ ତା'ରି ବିଷୟରେ ଆଲୋଚନା କରୁଛନ୍ତି ।

ରକ୍ଷା ହେଇଛି ଏ ମଫସଲ ନୁହେଁ—କଟକ ସହର, ନଇଲେ ନଆଁ ପାଣି ବାସନ୍ଦ କେବେଠାରୁ ଜାରି ହେଇ ସାରନ୍ତାଣି ।

ରନୁ କନ୍ତୁ ଏସବୁକୁ ଶୁଣି ପଥର ହେଇଯାଏ । ଲୋକମାନେ ତ ସଦାବେଳେ କଳା ଅନ୍ଧାରଟାକୁ ଦେଖିବାକୁ ଭଲପାଆନ୍ତି, ଉଜ୍ଜ୍ୱଳ

ଆଲୁଅକୁ ଦେଖିବାକୁ ତାଙ୍କର ସାହସ ନଥାଏ, କି ଆଖିର ଶକ୍ତି ନଥାଏ। ପଥର ସନୁର ଗ୍ଧଡରେ ଏ ଲୋକ ଗୁଡ଼ାଙ୍କର କଥା ବାଜ ଗ୍ଧଡକୁ କ୍ଷତ ବିକ୍ଷତ କରେନା—ଫେରିଆସେ।

ଦ'ଦିନ ହେଲା ମାମୁଁ ଆସିଛନ୍ତି। ବୈଷ୍ଣବ। ରାଧା କୃଷ୍ଣ ଭକ୍ତ। ବେକରେ ତୁଳସୀ ମାଳ। କପାଳରେ ଚିତା। ପ୍ରତି କଥାରେ କୃଷ୍ଣ କୃଷ୍ଣ। ତାଙ୍କ ଅନଳ ଦୃଷ୍ଟି ଏଇ ସନୁ ଉପରେ ବେଶୀ ପଡ଼ୁଛି। ଏ ଘରକୁ ଅପା ବାହାଘର ପାଇଁ କେତେ ବନ୍ଧୁ-ବାନ୍ଧବ, କୁଣିଆ-ମୈତ୍ର ଆସିବେ, ସେମାନେ ଏଇ ସନୁକୁ ଦେଖି କହିବେ କଣ ? ଏଇ ସନୁର ପେଟକୁ ଦେଖି କହିବେ କଅଣ ?

ମାମୁଁ ବୋଉ ସାଥୀରେ ଲଗାଇଛନ୍ତି—ଏହାର ଗୋଟାଏ ମୀମାଂସା କରିବାକୁ ହେବ।

କିନ୍ତୁ କି ମୀମାଂସା ?

ବାରଣ୍ଡା ଉପରୁ କୁକୁରର ବାନ୍ତିଗୁଡ଼ାକ ଯେତେବେଳେ ସନୁ ପୋଛୁଥିଲା, ସନୁ ଦେଖିଲା – ମାମୁଁ ଆଉ ବୋଉ କ'ଣ କଥାବାର୍ତ୍ତା ହଉଛନ୍ତି। ଗୁଡ଼ାଏ ଚିନ୍ତା ଯେପରି ତାଙ୍କର ମୁଖମଣ୍ଡଳରେ ପୂରି ରହିଛି। ସନୁକୁ ପାଖକୁ ଆସିବାର ଦେଖି, ସେମାନେ ନୀରବ ହେଇଯାଇଥିଲେ।

ସନୁ କିନ୍ତୁ ତାଙ୍କ କଥା ଶୁଣିବାକୁ ଆଦୌ କାନ ଦେଇ ନଥିଲା। ଅପା, ବୋଉ, ଅଜା ସାଥୀରେ ବର୍ତ୍ତମାନ ମାମୁଁ ଯୋଗ ଦେଇଛନ୍ତି। ତାପରେ ଯୋଗ ଦେବେ କକା, ମଉସା, ପିଇସୀ ସମସ୍ତେ ହୁଏତ ଏକଜୁଟ୍ ହେଇ ଚୁପ୍‌ଚାପ କ'ଣ ମନ୍ତ୍ରଣା କରିବେ। ସନୁକୁ କଟମଟ୍ କରି ଚାହିଁବେ। ସନୁକୁ ଦେଖି ହଠାତ୍ କଥାର ଶିଅ ବଦଳାଇ ଅନ୍ୟ କଥା ଆଲୋଚନା କରିବେ।

କିନ୍ତୁ ଏତେ ଗୁପ୍‌ଚୁପର ଏ ମନ୍ତ୍ରଣା କାହିଁକି ?

ସନୁର ପେଟରେ ଚୁଆଁଟା ବୁଲିବାକୁ ଲାଗିଲା। ଚୁଆଁଟା ସତେ ଯେପରି ପେଟଟାକୁ ମନ୍ଥି ଦଉଛି। ଚୁଣ୍ଡାଇ ଦଉଛି। ସନୁ ପେଟଟାକୁ ଚିପିଧରି ତା' ଘରର ଖଟଟା ଉପରେ ଶୋଇପଡ଼ିଲା।

ବାପା କାଲି ଟୁର୍‌ରେ ଯାଇଛନ୍ତି । ବର୍ତ୍ତମାନ ଫେରୁଥିବେ । ବାପାଙ୍କୁ ଖାଇବାକୁ ନ ଦେଇ ସେ ଶୋଇବ କେମିତି ? ବାପାଙ୍କର ଶୋଇଲା ବେଳେ ତାଙ୍କ ଗୋଡ଼ ନ ଘଷି ସେ ଶୋଇବ କେମିତି ? ତାଙ୍କଶମାନଙ୍କ ପାଇଁ ତ ଖରା ନାହିଁ—ବର୍ଷା ନାହିଁ, ଦିନ ନାହିଁ—ରାତି ନାହିଁ, ବାପା ବାହାରେ ଯାଇ ଟୁର୍ କରୁଛନ୍ତି । ତାଙ୍କର ଭଲ-ମନ୍ଦ ନବୁଝି ସେ ନିଦକରେ ଶୋଇବ କେମିତି ?

ମୁଣ୍ଡର ଲୋଟିପଡ଼ିଥିବା ଲୁଖୁରା ବାଳରେ ଗୋଟାଏ ଗଣ୍ଠି ପକାଇ ରାନୁ ତାର ଘରର ଝରକାବାଟେ ଦେଖିଲା - ମାମୁଁ, ବୋଉ ଓ ଅପା କଣ ଚୁପ୍‌ଚାପ୍ କଥାବାର୍ତ୍ତା ହେଉଛନ୍ତି । ଏଇ ଚୁପ୍‌ଚାପ୍ କଥା ବାର୍ତ୍ତାକୁ ରାନୁର ଭାରି ଡର । ସବୁ ଚୁପ୍‌ଚାପ୍ ଭିତରେ ଯେତେ ଯେପରି ଗୁଡ଼ାଏ ଖରାପ ମତଲବ ପୂରି ରହିଛି !

ରାନୁ ଭାବିଲା - ଆରେ ମୁଁ ଏସବୁ କାହିଁକି ଚିନ୍ତା କରୁଛି ? ସେମାନେ ବା କଅଣ ଖରାପ କଥାବାର୍ତ୍ତା ହେଉଥିବେ ?

କିନ୍ତୁ ସେମାନେ କଣେଇ କଣେଇ ରାନୁର ଘରକୁ ଚାହୁଁଥିଲେ । ତାଙ୍କର ଆଖିଗୁଡ଼ାକୁ ଚାହିଁବାକୁ ରାନୁକୁ କେଜାଣି କାହିଁକି ଭାରି ଡର ଲାଗିଲା । ଜୀବନରେ ସେ ସବୁଦିନ ଏ ଆଖିମାନଙ୍କୁ ମନ ପୂରାଇ ଦେଖିଛି ; କିନ୍ତୁ ଆଜି ଏ ଆଖିରେ ଯେତେ ଯେପରି ଗୁଡ଼ାଏ ରହସ୍ୟ, ଗୁଡ଼ାଏ ଅଭିସନ୍ଧି ; କିନ୍ତୁ କାହିଁକି ଏ ରହସ୍ୟ କାହିଁକି ଏ ଅଭିସନ୍ଧି ?

ବାପା !

ଓଃ ··· ସେ ଯେ କେତେବେଳେ ଆସିବେ ?

ସମସ୍ତେ ଖାଇସାରିଲେଣି ! କିନ୍ତୁ ରାନୁ ଖାଇନି ! ବାପାଙ୍କର ଅଇଁଠା ଥାଳି ତ ତା' ପାଇଁ ମହାପ୍ରସାଦ । ବାପା ପିନା ଆସିଲେ ସେ ଖାଇବ । ବାପା କହିଥିଲେ ସନ୍ଧ୍ୟା ବେଳକୁ ଆସିବେ, କିନ୍ତୁ ରାତି ଆସି ଏଗାର ବାଜିବାକୁ ବସିଲାଣି, ଅଥଚ ସେ ଏତେବେଳେ ଯାଏ ଆସି ନାହାନ୍ତି, ହେଲେ ତାଙ୍କୁ ସେଇପରି ଚାହିଁ ରହିଛି ଏଇ ରାନୁ । ତୁମେ ତାକୁ ଥରେ କେବେ କୋଳକୁ ଟେକି ଆଣିଥିଲ ନା ବିପ୍ରଚରଣ, ସେ କଥା ଆଜଯାଏ ତୁମର ଝିଅ ରାନୁ ଭୁଲିନି । ସେ କୋଳରେ ଉଷ୍ଣତା, ସେ କୋଳର ଆଶ୍ରୟମଧୁ ଅଭୟତା ଆଜଯାଏ ବି ତାର ପ୍ରତି ଲୋମକୂପରେ

ଅନାବଳ ସନ୍ତାନ ବାତ୍ସଲ୍ୟର ମହାର୍ଘ ସୁବର୍ଣ୍ଣ ରେଣୁ ରୂପେ ଲାଗି ରହିଛି, ସେ ତାକୁ ଭୁଲିପାରିବ ନାହିଁ । ତୁମରି କୋଳରେ ବସି ତୁମ ହୃଦୟର ସେଇ ସେଇଁ ସୂକ୍ଷ୍ମ ସ୍ପନ୍ଦନର ସନ୍ଧାନ ସେ ପାଇଛି, ତାଙ୍କୁ କ'ଣ କେବେ ତାର ଏ ଜନ୍ମରେ ଭୁଲିପାରେ ?

ସେଇ ବନ୍ଧୁ ଏଇ ଅଧଘଣ୍ଟାରେ ତୁମର ଅସିଲା ବାଟକୁ ଚାହିଁବ ନାହିଁ ? ପେଟରେ ନ ବୁଝିବ ତ, ବୁଝିବ ଆଉ କଏ ?

ବନ୍ଧୁ ସେଇପରି ଘରଟା ଭିତରେ କେତେ କ'ଣ ଭାବ ଗୁଳିଥିଲା ।

କିନ୍ତୁ ମାମୁଁ, ବୋଉଦେବୀଙ୍କର କଥା ସବୁନ । ସେମାନେ ଗୋଟିଏ ଗୁରୁତର ବିଷୟରେ କ'ଣ ଆଲୋଚନା କରୁଛନ୍ତି ।

ବନ୍ଧୁ ଦେଖିଲା—ଆକାଶରେ ଆଜି ଅନ୍ଧକାର ମେଘ । ଏଇପରି ଏକ ମେଘଘଣ୍ଟାରେ ସେ ତାର ଜୀବନର ଅମୂଲ୍ୟ ଧନକୁ ଜଣକ ପାଦ ତଳେ ଥୋଇ ଦେଇଥିଲା ।

ବନ୍ଧୁର ଦେହଟା ହଠାତ୍ ପୋଡ଼ି ଉଠିଲା—ଓଃ ··· ! ତାର ଦେହରେ—ସାରା ଦେହରେ ସେ କେତେ ଦନ୍ତକ୍ଷତ ! କେତେ ନଖକ୍ଷତ ! ବନ୍ଧୁର ମନେହେଲା ଗୋଟାଏ ପ୍ରାଗୈତିହାସିକ ରାକ୍ଷସ ଯୁଗ ଯୁଗ ଧରି ଖୋଜିଲା ପରି, ତାକୁ ପାଇ ତାର ଦାନ୍ତରେ ତାର ନଖରେ ତାର ସାରା ଦେହର ମାଂସକୁ ପୂଳା ପୂଳା କରି ଖାଇଯାଉଛି । ତାକୁ ବିବସ୍ତ୍ର କରି, ତାକୁ ଉଲଗ୍ନ କରି ତାର ଫୁଙ୍ଗୁଳା ଦେହର ଯାବତୀୟ ଉଷ୍ଣତା ନେଇ ତାକୁ ହିମ ଶୀତଳ କରି ଫୋପାଡ଼ି ଦେଇଛି । କିନ୍ତୁ ସେ ରାକ୍ଷସଟା ଏତେ କାଣ୍ଡ କରି ସୁଦ୍ଧା ଅନୁତପ୍ତ ନୁହେଁ । ସେ ଯେପରି ଏ ବିଷୟରେ କିଛି ଜାଣେନା । ସେ ବନ୍ଧୁ ସାଥୀରେ ଉପରେ ଚଢ଼ି ସେହିପରି କଥାବାର୍ତ୍ତା କରେ ।

ଆକାଶରେ ମେଘ ଗୁଡ଼ିଆଡ଼୍ ଘୋଟିଆସୁଛି । ପ୍ରତ୍ୟେକ ତାରା ଲୁଚିବାରେ ଲାଗିଛନ୍ତି ।

ବାପା ଆସିନାହାନ୍ତି ।

କିନ୍ତୁ ସେମାନେ ଫୁସ୍‌ଫାସ୍ ହେଉଛନ୍ତି ।

ଗୁଡ଼ୁଆଡ଼୍ ସୁ···ସୁ···ପବନ । ତୋଫାନ୍ । ଭୀଷଣ ଘଡ଼ଘଡ଼ି ।

ଅବକା ହୁଏତ ବର୍ଷା ହେବ । ଭୀଷଣ ବର୍ଷା ହେବ । ବରକୋଳିଆ ଟୋପା ବର୍ଷା  ଛେଚିକୁଟି ଘରର ଝରକା ଅଜାଡ଼ି ପଡ଼ିବ ।

ସନୁକୁ ଜଣାଗଲା ଘରର କାନ୍ଥ ବାଡ଼, ଚଉକି ଖଟ, ଅଲଗୁଣି, ଲୁଗାପଟା ସବୁ ଫୁସ୍ ଫୁସ୍ ହେଉଛନ୍ତି ।

କ'ଣ ଯେ ଏ ଫୁସ୍ ଫୁସ୍ ! କ'ଣ ଏ କଥାବାର୍ତ୍ତା !

ଆକାଶରେ ଅଦିନିଆ ଝଡ଼ । ପାଗଳ ଝଡ଼ । କ୍ରୋଧୀ ଝଡ଼ । ସତେ ଯେମିତି ସାରା ସୃଷ୍ଟିକୁ ସେ ଉଡ଼ାଇ ନେଇଯିବ ।

ଓଃ, କି ରହସ୍ୟମୟ ଏ ରାତି !

ବାପା କୁଆଡ଼େ ଗଲେ ?

ସନୁକୁ ଡର ମାଡ଼ିଲା ।

ଗୁଡ଼ାଏ ଫୁସ୍ ଫୁସ୍ ପରେ ନିଶ୍ଚୟ ଗୋଟାଏ ବୋମା ଫୁଟିବ ।

ସେମାନେ କ'ଣ ତାକୁ ପୁଣି ଆସି ମାରିବେ ? ସେମାନେ କ'ଣ ତାକୁ ତଳେ ପକେଇ ମାଡ଼ିବସି ଔଷଧଗୁଡ଼ାକୁ ଜବରଦସ୍ତି ତା'ର ତଣ୍ଟି ପାଖରେ ଅଜାଡ଼ି ଦେବେ ?

ସେଇ ଆଖି । ସେଇ ନିଅଁଟା ଆଖି । ଶାଣଦିଆ ଆଖି । ସତେ ଯେପରି ସନୁର ଛାତି ଭିତରେ ପଶିଯାଇ ତାର କଲିଜାକୁ ଟୁକୁରା ଟୁକୁରା କରି ଚିରି ପକାଉଛନ୍ତି ।

ବର୍ଷା ଆରମ୍ଭ ହେଇଗଲାଣି ।

ମାମୁଁ, ବୋଉ ଓ ନମି ଅପା ତାର ଘର ଭିତରକୁ ଆସିଲେ ।

ବାପା କୁଆଡ଼େ ଗଲେ ? ସନୁ ମନେ ମନେ ଡାକିଲା—ବାପା ! ବାପା ··· !

ସନୁ ଠିଆ ହେଇ ପଡ଼ିଲା । ସମସ୍ତଙ୍କ ମୁହଁକୁ ଚାହିଁଲା—ସେମାନେ ଅସମ୍ଭବ ଭାବେ ଗମ୍ଭୀର । ସେମାନେ ଆଜି ଆତତାୟୀପରି ଠିଆହେଇଛନ୍ତି ।

ସନୁର ଆଖି  ବୁଜିହେଇ ଆସିଲା ।

ପେଟ ଭିତର ଛୁଆଟା ଦଉଡ଼ି ହଉଛି ।

ଗୋଟାଏ ଟକ୍ରା ଚଡ଼ଚଡ଼ ନିର୍ଘାତ ଶବ୍ଦ କରି ଗର୍ଜି ଉଠିଲା ।

ସନୁ ଭୟରେ ଚିତ୍କାର କରି ଉଠିଲା – ବୋଉଲୋ··· !

କିନ୍ତୁ ସେମାନେ ତାକୁ କଟମଟ କରି ଚାହିଁ ରହିଛନ୍ତି ।

ଗନ୍ନୁ !

ବୋଉ ?

ଆରେ ହେ ହତଭାଗ୍ୟ, କୋଉବାଟରୁ ମନାକରୁଚ ବୋଉ ଡାକେନା ବୋଲି । ସେଇ ବୋଉ ? ଅହାରେ ମୋ' ଝିଅ ! ମୋ' ଅଗ୍ନି-ସୁଲକ୍ଷଣୀ ଝିଅ !

ଦେଖ ଗନ୍ନୁ, ଗୋଟାଏ କଥା ମାନିବୁ ?

କ'ଣ ମାମୁଁ ? ଆତଙ୍କିତ ହୋଇ ଗନ୍ନୁ କହି ଉଠିଲା ।

ବର୍ତ୍ତମାନ କେହି ଜାଣିବେ ନାହିଁ, ବର୍ଷା ହଉଚି । ଆରେ, ଏତକ ବେଳେ ସମସ୍ତେ ତ କୂଅ ପୋଖରୀକୁ ଡେଇଁ ପଡ଼ନ୍ତି । କିନ୍ତୁ କୃଷ୍ଣ-କୃଷ୍ଣ, ମୁଁ ଧାର୍ମିକ, ଦୟାବନ୍ତ ଲୋକ । ମୁଁ ଏକଥା କହି ଗୋଟାଏ ମହା-ପ୍ରାଣୀର ମୃତ୍ୟୁ କାମନା କରିବିନି । ତୁ ଗୋଟାଏ କାମ କର, ଏ ଘରୁ ବର୍ତ୍ତମାନ ବାହାରି ଯା'···

ମାମୁଁ !

ହଁ··· ହଁ, ଏ ଘରୁ ତୁ ଚାଲିଯା··· ।

ଅପା— !

ଆରେ କେତେ ମାମୁଁ, ଅପା ହଉଚୁ ? ମୁଁ ତୋ' ଭଲପାଇଁ କହୁଛି । ତୋ' ପାଇଁ ଅନାଥାଶ୍ରମ ଅଛି । ତୋ' ପାଇଁ ବାଳାଶ୍ରମ ଅଛି । ନଇଲେ ନାଇଁ ଅଛି ବେଶ୍ୟାପଡ଼ା । କେତେ ନାଗର ଯୁଟିବେ ।

ବୋଉ··· !

ହଁ···ଭଲରେ ଭଲରେ କହୁଚି ଚାଲିଯା'··· ।

ଏ ଘର ଛାଡ଼ି କୁଆଡ଼େ ମୁଁ ଯିବି ବୋଉ ? ଏ ଘର ତ ମୋର । ଏ ମୋର ଆଶ୍ରୟସ୍ଥଳ । ଏହାକୁ ଛାଡ଼ି ମୁଁ କୁଆଡ଼େ ଯିବି ?

ଆରେ, ଏଇଟା କ ଘରଲୋ ତୋ'ର ? ଆସିଥିଲୁ ଯେମିତି; ଯିବୁ ତ ସେଇମିତି ।

କିନ୍ତୁ ତୁମମାନଙ୍କୁ ଛାଡ଼ି ମୁଁ କୁଆଡ଼େ ଯିବି ବୋଉ ?

କାହିଁକି, ସେଇ ସୁବୋଧ ପାଖକୁ !

ଅପା··· !

ଆଲୋ, ଯେତେ କହିଲୁ ଔଷଧ ଖାଇ ତୁଆଟାକୁ ମାରିଦେବା ପାଇଁ, ଶୁଣିଲୁ ନାହିଁ । ଏଇଟା କ'ଣ ଦାଣ୍ଡଘର ହୋଇଛି, ଯେ ଏଠି ପିଲା କାଖେଇ ନାଚ କରିବୁ ?

ମୁଁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବୋଉ । ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ।

ଚୁପ୍……, ସେ ଭଲେଇ ଶୁଣିବାକୁ ଆମର ଆଉ ବେଳ ନାହିଁ । ଯା……ବାହାରି ଯା…… । ନମିତା ଗର୍ଜି ଉଠିଲା ।

ରାନୁ ଅକ୍କା ମାରି ସମସ୍ତଙ୍କୁ ଚାହିଁ ରହିଲା । ଇସ୍……ସମସ୍ତେ ତା'ର ଆଡ଼କୁ ଝାମ୍ପି ପଡ଼ିବାକୁ ତିଆର । ସମସ୍ତେ ତାକୁ କାଟି କେଳେଇ ମାରି ଦବାକୁ ତିଆର । ସମସ୍ତେ ଆଜ ତାକୁ ଅଦରକାରୀ ଭାବି ଘରୁ ବାହାର କରିଦେବାକୁ ତିଆର । ଆହା…ତା'ର ବୋଉ, ମାମୁଁ ଭଉଣୀ ସେମାନେ ! ତା'ର ନିଜର ମଣିଷ ସେମାନେ । ଏକା ରକ୍ତ ନୁହେଁ ବୋଲି ସେମାନେ କହୁଛନ୍ତି, କିନ୍ତୁ ଏ ଚିନ୍ତା ତ କେବେ ରାନୁ ମୁଣ୍ଡରେ ପଶିନି । ସେମାନଙ୍କ ସାଥିରେ ଖାଇଛି, ଶୋଇଛି, ଖେଳିଛି, ହସିଛି, କାନ୍ଦିଛି, ସବୁ କରିଛି, ଏ ଘରର ସବୁଥିରେ ଭାଗୀଦାର ହୋଇଛି; କିନ୍ତୁ ଆଜ ସବୁ ବନ୍ଧନ ସବୁ ମମତା ଡୋରୀକୁ ସେମାନେ ଛିଣ୍ଡାଇ ଫୋପାଡ଼ି ଦବାକୁ ତିଆର ।

ରାନୁ ଭେଁ ଭେଁ କରି କାନ୍ଦି ଉଠିଲା— ମୁଁ ତୁମର ରାନୁ…ରାନୁ ମୁଁ । ଏଇ ରାନୁଟାକୁ ଶେଷରେ ତୁମେ ଏ ଘରୁ ତଡ଼ିଦେବା ପାଇଁ ମନ ବଳାଉଛ ?

ଆହା…କୃଷ୍ଣ—କୃଷ୍ଣ, ତୁ କିରେ ଏପରି କାନ୍ଦୁଛୁ କାହିଁକି ? ମୁଁ ଧାର୍ମିକ ଦୟାବନ୍ତ ଲୋକ । ତୋ'ର ଏ କାନ୍ଦ ଦେଖି ନିଷ୍ଠୁର ତରଳି ଯାଆନ୍ତି, କିନ୍ତୁ ଝିଅ ତୁ ତ କରିଦେଇଛୁ ଗୋଟାଏ ପାତାଳଫୁଟା ମସ୍ତ ପାପ । ସେ ପାପର ପ୍ରାୟଶ୍ଚିତ ନ କରିବୁ କେମିତି କହିଲୁ ?

ଜାଣି ଜାଣି ଏ ଘରେ ତୋ'ପରି କାଳସାପଟାକୁ ରଖିବି କେମିତି କହ ? ଝିଅ ମୋର ବାସନ୍ଦ ଚଢ଼ିବନି ? ତା' ଶାଶୁଘର ଭାଙ୍ଗିଯିବନି ?

ରାନୁ ମନେ ମନେ କହିଲା—ବାହାଘର ତ କୋଉ ଦିନରୁ ଭାଙ୍ଗି ସାରିଲାଣି ବୋଉ । ତୁମେମାନେ ଯଦି ଏ କଥା ଜାଣିପାରିଥା'ନ୍ତ, କେଉଁ ଦିନରୁ ସେ ବାହାଘର ନିଜେ ଭାଙ୍ଗି ସାରନ୍ତିଣି !

ବାହାରେ ବର୍ଷା-କନ୍ୟା କାନ୍ଦିବାରେ ଲାଗିଛି, ମୁଣ୍ଡ ପିଟିବାରେ ଲାଗିଛି । ଘରର ଅଗଣାରେ, ଘରର ବାହାରେ, ବଗିଚାରେ, ଗଛପତ୍ରରେ ବର୍ଷା ଖାଲି କାନ୍ଦୁଛି – ଆଉ କାନ୍ଦୁଛି । ଅସହାୟା ସେ ବର୍ଷା-କନ୍ୟା ।

କଲ୍ୟାଣୀ ଚିତ୍କାର କରି କହି ଉଠିଲେ—ଆହା···କ'ଣ ଦେଖୁଛ ତମେ ହରି ? ଡେରି ହଉଛି ଯେ ! ତା' ବାପା ଏଇନା ଆସି ପହଞ୍ଚିବେ । କ'ଣ ରାନୁ, ଏଥର ଯିବୁ ନା ନାହିଁ ?

ରାନୁ ଚିତ୍କାର କରି ଉଠିଲା—ନା—ନା, ମୁଁ ଯିବିନି । ଏ ଘର ଛାଡ଼ି ମୁଁ କୁଆଡ଼େ ଯିବିନି ।

କିନ୍ତୁ ତତେ ନିଶ୍ଚୟ ଯିବାକୁ ପଡ଼ିବ । କର୍କଶ ଗଳାରେ କହିଲା ନମିତା ।

ମୁଁ ତୁମ ଗୋଡ଼ ଧରୁଛି ଅପା, ମତେ ତୁମେ ବାହାର କରି ଦିଅନି । ତମମାନଙ୍କୁ ଛାଡ଼ି ତ ମୁଁ ମରିଯିବି ।

ଆଃ···ଖାସ୍‌ସା କଥାଟାଏ କହିଲୁ ଝିଅ । କୃଷ୍ଣ—କୃଷ୍ଣ, ଏ ପରିସ୍ଥିତିରେ ତ ତାହା ହିଁ କରିବା ଦରକାର । ଛାଡ଼—ଆମେ ଧାର୍ମିକ ଦୟାବନ୍ତ ଲୋକ—

କଲ୍ୟାଣୀ ରାନୁର ହାତକୁ ଧରି ଟାଣି କହିଲେ—ଆସୁଚୁ ନା ଦେଖିବୁ ? ଭଲରେ ଭଲରେ ଚାଲି ଯାଆ କହୁଛି । ନହେଲେ ମାରି ମାରି ବାହାର କରି ଦେବି ।

ରାନୁ କଲ୍ୟାଣୀଙ୍କୁ ଚାହିଁଲା—ନାଗୁଣୀ ପରି ଗର୍ଜନ ଛାଡ଼ୁଛନ୍ତି ସେ ।

କିନ୍ତୁ ବୋଉ, ତୋ'ରି ପାଇଁ ତ ଏ ରାନୁର ଆଜି ଏ ଦଶା ହେଲା । ତୁ ଜାଣିପାରୁନୁ ବୋଉ, ସେଦିନ ଯଦି ଏ ରାନୁ ସେଇ ରାକ୍ଷସଟାକୁ ତା' ଦେହ ନ ଦେଇଥା'ନ୍ତା, ତେବେ ତୁ କ'ଣ ସତେ ବଞ୍ଚିଥାନ୍ତୁ ବୋଉ, ଯେ ଆଜି ରାନୁକୁ ଏପରି ବ୍ୟବହାର କରୁଥା'ନ୍ତୁ ? ନିଜେ ଜଳିପୋଡ଼ି, ତୁମ-ମାନଙ୍କ ମୁହଁରେ ଟିକେ ହସ ଦେଖିବ ବୋଲି ସେ ଏତେ ବଳି ହେଲା, ହେଲେ ତା' ପାଇଁ ଏତେ ବଡ଼ ଘରେ ଟିକେ ଜାଗା ବି ହେଲନି ? ଏ ଘରେ ପୁଷି ଅଛି ବୋଉ, କୁକୁର ଅଛି, ଶାରୀ ଅଛି, ଗାଈ-ଗୋରୁ ଅଛନ୍ତି— ସମସ୍ତେ ତ ଅଛନ୍ତି, ରାନୁଠାରୁ ଜାତ ସାନ ହେଇ ସେମାନେ ଏ ଘରେ

ଖୁସିରେ ଆତ୍ମହରା ହେଉଛନ୍ତି, କିନ୍ତୁ ସେମାନଙ୍କଠାରୁ ସତେ କ'ଣ ଏତେ ଶ୍ରେଷ୍ଠ ଏଇ ଘନୁ ବୋଉ, ଶେଷରେ ତୁମେମାନେ ମିଳିମିଶି ତାକୁ ଜୋର୍ କରି ଘରୁ ତଡ଼ି ଦେଉଛ ?

ଘନୁ ଘୁଷୁରୁଥିଲା।

କଲ୍ୟାଣୀ ତା'ର ହାତଟା ଧରି ଘୋଷାଡ଼ୁଥିଲେ ।

ତା'ର ସେଇ ବହଳ ବାଳ ଗୋଛାଟା ଖସି ପଡ଼ି ଏପାଖ ସେପାଖ ଦୋହଲି ଦେଉଥିଲା । ତା' ଲୁଗାର କାନି ତଳେ ପଡ଼ି ଲୋଟୁଥିଲା । ସେ ଚିତ୍କାର କରି କହୁଥିଲା—ମତେ ବାହାର କରିଦିଅନା ବୋଉ, ମୁଁ ତୁମର ଗୋଡ଼ ତଳେ ପଡ଼ୁଛି, ବାହାର କରି ଦିଅନା ।

କିନ୍ତୁ ସେମାନେ ତାକୁ ସେଇପରି ଘୋଷାଡ଼ୁଥିଲେ । ତିନିଟା ଲୋକଙ୍କର ମିଳିତ ଶକ୍ତିକୁ ପ୍ରତିରୋଧ କରିବାପାଇଁ ତା'ର ଶକ୍ତି ବା କେତେ ? ସେମାନେ ତାକୁ ଟାଣି ଟାଣି ବାହାରକୁ ନେବାପାଇଁ ଉଦ୍ୟମ କରୁଥିଲେ ? ଘନୁ ଗୁଟିପିଟି ହେଉଥିଲା । ବିକଳ ହୋଇ କାନ୍ଦୁଥିଲା ।

ବାପା··· !

କାହିଁକି ସେ ବାପା—ବାପା ହେଉଛୁ ?

ବାପା ଆସନ୍ତୁ ବୋଉ, ମୁଁ ବାପାଙ୍କୁ ଦେଖି ଚାଲିଯିବି ।

କ'ଣ ବୁଦ୍ଧି ଶିଖେଉଛୁ ? ବାପା ଆସିଲେ ସେ ତତେ ଛାଡ଼ିବେ ଯେ ତୁ ଯିବୁ ?

ଅମ୍ମା !

ନା—ନା, ତୁ ଏଠୁ ବାହାର । ବାହାର ! ଏଠି ଦଣ୍ଡେ ରହିବା ବି ତୋ' ପକ୍ଷେ ଉଚିତ୍ ନୁହେଁ । କଲ୍ୟାଣୀ ସେହିପରି ଘୋଷାଡ଼ୁଥିଲେ ।

ଏତେ ବର୍ଷର ମାୟା-ବନ୍ଧନକୁ ଏତେ ସହଜରେ ତୁଟାଇଦବାକୁ କାହାର ଯେପରି ଆଜି ଟିକେ ହେଲେ ବି ଦ୍ୱିଧା ନାହିଁ । କାହାର ଟିକେ ହେଲେ ବି ଦୟା ନାହିଁ । ବାହାରେ ଭୀଷଣ ବର୍ଷା—ଅନ୍ଧାର ରାତି । ଏଇ ରାତିଟାରେ ଗୋଟାଏ ଅସହାୟ ମଣିଷକୁ ବାହାରକୁ ପେଲିଦବାକୁ ତାଙ୍କର ଟିକେ ବି ଚିନ୍ତା ନାହିଁ । ଘନୁଆ କ'ଣ ଖାଇଛି ନା ନାହିଁ ସେ କଥା ବୁଝିବାକୁ ସେମାନେ ହଲ୍‌କୁଲ ନାରାଜ ।

ଏଇ ଘର !

ଏଇ ଘରର ପ୍ରତି ଧୂଳି ମାଟି ଯାହା ପାଇଁ ଏତେ ପବିତ୍ର, ଯେଉଁ ଧୂଳି ମାଟିରେ ବାପାଙ୍କର, ବୋଉର, ଅପାର, ଅମାର ପାଦଧୂଳି ପଡ଼ିଛି— ସ୍ନେହ ମମତାର ଶକ୍ତ ଶିକୁଳି, ତାକୁ ଛିନ୍ନକରି ବାପୁର ରାନୁ ଯିବ କିପରି ?

ଆହା ବୁଢ଼ାରେ ! ରନୁ ବିକଳ ଆଖିରେ ଭୋ' ଭୋ' କାନ୍ଦି ବୁଢ଼ାର ଶୋଇବା ଘରକୁ ଚାହିଁଲା । ଏଇ ତୋ' ରନୁ ଅପା, ଆଜି ଶୋଷଣ୍ଡା ହୋଇ, ଠେଲାଖାଇ, ଘରୁ ବାହାରି ଯାଉଛି ଦେଖ୍, ଉଠି ଦେଖ୍‌ରେ !

ରାନୁକୁ ସେମାନେ ଘୋଷାଡ଼ି ଦାଣ୍ଡ ଘର ଆଡ଼େ ଟାଣି ନେଉଥିଲେ । କାନ୍ଥ ଘଡ଼ିରେ ରାତି ସାଢ଼େ ଏଗାରଟା !

ସେଇ ଚିତ୍କାର, ସେହି ଚିତ୍କାର ଯେତେ ଉଚ୍ଚ ଓ ବେଦନାଭରା ହେଉଥିଲେ ସୁଦ୍ଧା ସେମାନଙ୍କର ହୃଦୟକୁ ତାହା ଆଦୌ ପ୍ରତିଧ୍ୱନିତ କରିପାରିଲା ନାହିଁ । ସେମାନେ ଅଜ ତା'ପାଇଁ ଯେପରି ନିହାତି ବଧିର ହୋଇପଡ଼ିଛନ୍ତି ।

ହଠାତ୍ ରାନୁର ହାତରେ ଦାଣ୍ଡଘରର ଗୋଟାଏ ଖୁଣ୍ଟ ପଡ଼ିଗଲା । ସେ ଖୁଣ୍ଟଟାକୁ ଜାବୁଡ଼ି ଧରି ପ୍ରାଣବିକଳରେ କହି ଉଠିଲା — ଭିମ ଛଡ଼ା ଏ ଦୁନିଆରେ ମୋର ଆଉ କେହି ନାହିଁ ବୋଉ, ମତେ ତଡ଼ନା ! ମତେ ତଡ଼ନା··· !

କିନ୍ତୁ କଲ୍ୟାଣୀ, ନମିତା ଓ ମାମୁଁ ତା'ର ହାତକୁ ଛଡ଼ାଇ ନେଲେ । ତଥାପି ସେ ଯାଉନାହିଁ । ତଳେ ଘୁଷୁରୁଛି, ମାତ୍ର ସେମାନେ ତାକୁ ତଳୁ ଶୂନ୍ୟେ ଶୂନ୍ୟେ ଟେକି ଧରିଲେ ।

ସେ କିନ୍ତୁ ନାଇଁ ନାଇଁ— ଚିତ୍କାର କରୁଥିଲା ।

ବାହାରେ ଛେଚୁକୁଟା ବର୍ଷା । ଭୀଷଣ ବର୍ଷା । ତୋଫାନ ଗର୍ଜୁଛି । ପୃଥିବୀ ଉପରେ ଥରି ଉଠୁଛି । ମାମୁଁ ଦାଣ୍ଡ କବାଟ ଖୋଲିଲେ । ଦମ୍‌କା ଶୀତୁଆ ପବନ ଘର ଭିତରେ ପଶିଗଲା । ସେମାନେ ଏଇ ଭୟାବହ ରାତିରେ ନିଷ୍କରୁଣ ଝଡ଼, ତୋଫାନ, ଘଡ଼ଘଡ଼ ଗର୍ଜ୍ଜନରେ ଶିହରି ଉଠିଲେ ।

କିନ୍ତୁ ସେମାନେ ତ ନିଶ୍ଚୟ ରାନୁକୁ ବାହାର କରି ଦେବେ ।

ରଜୁର ପିଠି ଉପରେ ଗୋଟାଏ ଶକ୍ତ ଧକ୍କା ଦେଇ କଲ୍ୟାଣୀ ଚିତ୍କାର କରି ଉଠିଲେ—ଯାଃ ଛତରା, ଏଥର କୋଉ ଛତରରେ ପଶିବୁ ଯା···!

ବାହାରେ ରଜୁ ଅସାଡ଼ ହୋଇ ପାଣି କାଦୁଅରେ ପଡ଼ି ଡାକ ଉଠିଲା, ବୋଉ !

ବୋଉ ! ବୋଉ ! ବୋଉ !

କିନ୍ତୁ ବୃଷ୍ଟିଆଚ୍ଛନ୍ନ ବର୍ଷିକାମୟୀ ଘନ, ଅଶ୍ଳୀଳ, ଦାରୁଣ ଅନ୍ଧକାର । ନାହିଁ ବାଟ । ନାହିଁ ଦ୍ୱାର । ନାହିଁ କୋଉଠି ମୁଣ୍ଡ ଗୁଞ୍ଜିବା ପାଇଁ ଟିକେ ହେଲେ ଆଶ୍ରା ।

କଲ୍ୟାଣୀ, ନମିତା ଓ ମାମୁଁ ଧଡ଼କର କବାଟ ଦେଇ ଦେଲେ । ସବୁଦିନ ପାଇଁ ଆଜି ଏ ଘରର କବାଟ ବନ୍ଦ ହୋଇ ଯାଇଛି, ଆଜି ଏ ଘରର ସବୁ ଲୋକଙ୍କର ହୃଦୟ କବାଟ ସବୁଦିନ ପାଇଁ ତା' ପାଇଁ ରୁଦ୍ଧ ହୋଇଯାଇଛି ।

ରଜୁ ପାଣି କାଦୁଅରେ ସାଉଁଟି ହୋଇ ଅସ୍ପଷ୍ଟ ସ୍ୱରରେ ଡାକ ଉଠିଲା—ବାପା···! ବାପା···ହେ!

ଭୋର ସାଢ଼େ ଚାରିଟା ବେଳେ ବିପ୍ରଚରଣଙ୍କର ନିଦ ଭାଙ୍ଗିଗଲା । ତାଙ୍କର ସବୁଦିନ ଏତିକବେଳେ ନିଦ ଭାଙ୍ଗି ଯିବାର ଅଭ୍ୟାସ । ଯେତେ ରାତିରେ ଶୁଅନ୍ତୁ ପଛେ, ସେ ଠିକ୍ ଏତିକିବେଳେ ଉଠିବେ ।

ବର୍ଷା ଛାଡ଼ିଲାଣି । ଆଜି ସେ ଟ୍ରେନରେ ସନ୍ଧ୍ୟାବେଳକୁ ଆସି ଘରେ ପହଞ୍ଚି ଥା'ନ୍ତେ, କିନ୍ତୁ ବାଟରେ ଏତେ ବର୍ଷା ଯେ ସେ ବାଧ୍ୟହୋଇ ଗୋଟାଏ ଡାକବଙ୍ଗଳାରେ ରହିଗଲେ । ଘରେ ପହଞ୍ଚୁ ପହଞ୍ଚୁ ରାତି ବାରଟା ପାଖାପାଖି ।

ଘରେ ପହଞ୍ଚି ସେ ଦେଖିଲେ ଯେ ସମସ୍ତେ ଚୁପଚାପ୍ । ବୋଧହୁଏ ବିପ୍ରଚରଣଙ୍କର ଏତେ ଡେରିରେ ଫେରିବାର ଦେଖି ସମସ୍ତେ ବ୍ୟସ୍ତ ହୋଇଉଠିଛନ୍ତି ।

ବିପ୍ରଚରଣ ଲୁଗା ବଦଳି ଯେତେବେଳେ ଖାଇବାକୁ ବସିଲେ, ଦେଖିଲେ ଆଜକୁ ପନ୍ଦର ବର୍ଷ ପରେ କଲ୍ୟାଣୀ ତାଙ୍କର ଖାଇବା ଥାଳି ପାଖରେ ପରଷୁଛନ୍ତି ।

ରାନୁ କ'ଣ ନାହିଁ ?

ବିଚରା ଶୋଇପଡ଼ିଥିବ । ସେ ଦୁର୍ବଳ । ଶୋଉ ସେ ! କାମ କରି କରି ହାଲିଆ ହୋଇ ଥକ୍କା ମେଣ୍ଟାଉ ସେ !

ବିପ୍ରଚରଣ ଖାଇବା ଶେଷ କରି ଶୋଇପଡ଼ିଥିଲେ ମୋ ବର୍ତ୍ତମାନ ନିଦ ଭାଙ୍ଗିଛି ।

ବିପ୍ରଚରଣ ଅଳସ ଭାଙ୍ଗିଲେ ।

ତାଙ୍କ ଶୋଇବା ଘରର ପଲଙ୍କ ଉପରେ ଶୋଇ ଦେଖିଲେ, ନଜର ପଡ଼େ ରୋଷାଇ ଘର ଭିତରଟା । ସବୁଦିନ ଠିକ୍ ଏତିକବେଳେ— ଏଇ ଭୋର ଚାରିଟା ବେଳେ ରୋଷାଇ ଘରୁ କୋଇଲା ଚୁଲିର ଆଞ୍ଚ ଧକ୍ ଧକ୍ କରି ଉଠେ । ରାନୁ ଠିକ୍ ଏତିକବେଳେ ତାଙ୍କପାଇଁ ଚା' କରିବସେ ।

ବିପ୍ରଚରଣ ଶୋଇରହି ରୋଷାଇ ଘର ଆଡ଼କୁ ଦୃଷ୍ଟିପକାଇଲେ । କିନ୍ତୁ ଏ କି କଥା ! ରୋଷାଇ ଘରେ ଆଜି ଆଲୁଅ ଜଳୁନି ।

ରାନୁ କ'ଣ ଶୋଇପଡ଼ିଛି ? ତାଙ୍କପାଇଁ ଚା' ଆଣିବନି ? ଏମିତି ବିଶୃଙ୍ଖଳା ତ କେବେ ହୋଇ ନଥିଲା ?

ବିପ୍ରଚରଣ ଆଲାର୍ମ ଘଡ଼ିକୁ ଚାହିଁଲେ, ପାଞ୍ଚଟା ବାଜିବାକୁ ପନ୍ଦର ମିନିଟ ବାକି ରହିଛି । ବିଚରା ଦେହର ଭାରରେ ବୋଧହୁଏ ଉଠିପାରିନି । ହଉ, ଶୋଇଥାଉ । ସେ ଯଦି ତାଙ୍କ ଝିଅର ଦେହ ଦୁଃଖ ନ ବୁଝିବେ ତେବେ ବୁଝିବ କିଏ ?

ରାତି ଆହୁରି ବାକି ଅଛି । କିନ୍ତୁ ଗଛ ଗହଳରେ କାଉମାନେ କା' କା' କଲେଣି । ଗଞ୍ଜାମାନେ ଡାକ ଦେଲେଣି । ଝେଞ୍ଚୁଲିଆ ବର୍ଷା ପରେ ପୃଥିବୀ କିନ୍ତୁ ବର୍ତ୍ତମାନ ଶୋଇରହିଛି । ଦେହରେ ଶୀତୁଆ ପବନ ।

ବିପ୍ରଚରଣ ସୁଇଚ୍ ଅନ୍ କରି ଫାଇଲ୍ ଦେଖିଲେ ।

ସବୁଦିନ ଶୁଣନ୍ତି ପାଇପ୍‌ର ପାଣି ପଡ଼ିବାର ଶବ୍ଦ । ବାସନ ମାଜିବାର ଝଣ ଝାଣ ଶବ୍ଦ । କେତୋଟି ଚୁଡ଼ିର ନିସ୍ୱଦ ରୁଣୁ ଝୁଣୁ ଶବ୍ଦ ।

ସ୍ୱ' ପରେ ସନ୍ତୁ ତ ଏ କାମ କରେ । ଆଜି ସନ୍ତୁ ଦେହ କ'ଣ ଖରାପ ? ବାସନ କ'ଣ ସଫା ହବନି ?

ହଉ ! ବସ୍ତୁସ୍ଥ ଶୋଉ ।

ବିପ୍ରଚରଣ ଫାଇଲ୍ ପରେ ଫାଇଲ୍ ଦେଖିବାରେ ଲାଗିଛନ୍ତି ।

ରାତି କମିବାରେ ଲାଗିଛି । ଯେଉଁଠି କଳା ଅନ୍ଧାରର କାଳି ଅଜାଡ଼ି ପଡ଼ିଥିଲା ବର୍ତ୍ତମାନ ତାହା ଫିକା ହେବାରେ ଲାଗିଛି । ପ୍ରତ୍ୟେକ ଗଛ ପତ୍ରରେ ବର୍ତ୍ତମାନ ପାହାନ୍ତି ଫିକା ଆଲୁଅ । ତାଙ୍କ ଘରର ଝରକା ଫାଙ୍କ ଦେଇ ଯେଉଁ ବଗିଚ୍ଚ ଫାଳକରେ ଫୁଲ ଗଛ ସବୁ ଫୁଟି ଉଠିଥିଲା, ବିପ୍ରଚରଣଙ୍କର ସ୍ୱତଃ ଆଖି ସେ ବାଗକୁ ଟାଣିହେଇଗଲା ।

ଯେତେ ଶୀତ ହେଉ ପଛେ ବର୍ଷା ହେଉ ପଛେ ଭୋରରୁ ଗାଧୋଇ ପାଧୋଇ ସନ୍ତୁ ଠାକୁରଙ୍କୁ ପୂଜା କରିବ ବୋଲି ଏଠୁ ଫୁଲ ତୋଳେ । ଫୁଲ ପତ୍ରଇ ଗଛ ମେଳରେ ପିଠି ଉପରେ ଓଦା କେଶ ଗୋଛକୁ ପକେଇ ସନ୍ତୁ ଯେତେବେଳେ ଏଠି ଝୁଙ୍କୁଡ଼ା ଭରି ଫୁଲ ତୋଳେ, ବିପ୍ରଚରଣ ତାକୁ ଚାହିଁ ରହନ୍ତି ।

ତାଙ୍କର ଝିଅଟା !

ଆଜି କ'ଣ ଠାକୁର ପୂଜା କରିବନି ସେ ?

ସନ୍ତୁ ... !

ବିପ୍ରଚରଣ ଅସ୍ପଷ୍ଟ ସ୍ୱରରେ ଡାକି ଉଠିଲେ - ସନ୍ତୁ ! ତୁ ଆଜି କ'ଣ ଭୋର ନିଦ ତେଜିବୁନି ?

ଆଉ ଅଳ୍ପ ସମୟ ଗଲେ ସୂର୍ଯ୍ୟ ଉଠିବ । ପ୍ରଭାତ ସୂର୍ଯ୍ୟ । କେତେ ଆଶା ନେଇ ଏ ସୂର୍ଯ୍ୟ ଉଠିବ । ତୁ କ'ଣ ଏ ସୂର୍ଯ୍ୟକୁ ସ୍ୱାଗତ ଜଣାଇବୁନି ମା ? ତୋର ଶଙ୍ଖ, ଘଣ୍ଟି, ଆଳଟିରେ ଠାକୁର ପୂଜା କରି ସମସ୍ତଙ୍କର ନିଦ ଭାଙ୍ଗି ଏ ଘରକୁ କ'ଣ ଆନନ୍ଦମୟ କରିବୁନି ମା... ?

ସନ୍ତୁ ... !

ତୋର ଆଜି ନିଶ୍ଚୟ କଷ୍ଟ ହେଉଛି । ତୋର କ'ଣ ଦେହ ଭଲ ନାହିଁ ମା ? ଏତେ କାମ କରୁଚୁ । ଯେତେ ମନାକଲେ ବି କରୁଛୁ । ଏ ଘରଟା ଏମିତି ଯେ, ଯେତେ କାମ କଲେ ବି ସୁଧା, କାମଗୁଡ଼ା କାହା

ଆଖିରେ ଯାଉନ। ମୁଁ ଜାଣେନେ, ଉପରେ ସିନା ହସୁଛୁ କିନ୍ତୁ ଭିତରେ ତ ଜଳି ଜଳି ତୁ ପୋଡ଼ା ଅଙ୍ଗାର ପାଲଟିଗଲୁଣି । ତୋ ଜୀବନଟା ତ ଛାରଖାର ହୋଇଗଲା ମା...। ତୁ କ'ଣ ଆଜ ଉଠି ତୋ ବାପା ପାଖକୁ ଆସି ପଦେ କଥା କହୁବୁନ ମା ?

ବିପ୍ରଚରଣ ବାରଣ୍ଡା ପାଖକୁ ଆସିଲେ। ସବୁ ଘରେ ନିଦ୍ରୁଜ୍ । କେହି ଉଠି ନାହାନ୍ତି । ସମସ୍ତେ ତ ଏତେବେଳକୁ ପ୍ରାୟ ଉଠନ୍ତି ନାହିଁ । ସେ ଏତିକ ବେଳେ କପେ ଚା' ଖାଇ ନିଜର ସକାଳୁଆ ନିତ୍ୟକର୍ମ ସାରନ୍ତି।

ଚା' ସିନା ନାହିଁ କିନ୍ତୁ ସେ ତ ତାଙ୍କର ନିତ୍ୟକର୍ମ ସାରିବେ । ବାଥ୍‌ରୁମ୍ ଭିତରକୁ ପଶିଗଲେ ବିପ୍ରଚରଣ ।

ସକାଳର ସୂର୍ଯ୍ୟ ଉଠିନି । କିନ୍ତୁ ଉଠିବାକୁ ସଜବାଜ ହେଇ-ଗଲାଣି । ସବୁ ଦିଗ ଆଲୋକମୟ ହେଇଗଲାଣି । ପକ୍ଷୀମାନେ ଗୀତ ଗାଇ ଆକାଶରେ ପହଁରିବାକୁ ଲାଗିଲେଣି ।

ବିପ୍ରଚରଣ ବାଥ୍ ରୁମ୍‌ରୁ ଫେରିଲେ ।

ଆସିଲାବେଳେ ଦେଖିଲେ ସନ୍ଧ୍ୟାର ଘରଟା ମୁକୁଳା ହୋଇ ପଡ଼ିଛି। ବିପ୍ରଚରଣ ତାଙ୍କର ଝିଅକୁ ଦେଖିବା ପାଇଁ ଘର ଭିତରକୁ ପଶିଗଲେ ।

ମା ... !

ଆରେ, ତୁ କେତେବେଳୁ ନିଦରୁ ଉଠି ବାର ପାଖକୁ ଗ୍ଲାଲ ଗଲୁଣି ? କିନ୍ତୁ ଏ ଘର ଏମିତି କାହିଁକି ପଡ଼ିଛି ମା ! ତୋର ଲୁଗା ସବୁ ତଳେ ପଡ଼ିଛି ଯେ ! ବିଛଣା ଗୁଡ଼ା ତଳେ ପଡ଼ିଛି । ସବୁ ଘର ସଜାଡ଼, ଏ ତୋର ନିଜ ଘରକୁ ତୁ ଏମିତି ପକେଇ ଦେଇଛୁ ମା ?

ତୁ ସବୁଦିନ ମୋ କାମ କରୁନା ? ମୁଁ କିନ୍ତୁ ଆଜ ସକାଳୁ ଗାଧୋଇ ଏକ ଉଦା ଲୁଗାରେ ତୋର ଘର ସଜାଡ଼ିବି । ଏଇ ଘର ସଜାଡ଼ିବା ବେଳେ ମତେ ଜଣାପଡ଼ୁଛି ମା..., ମୁଁ ମୋର ମନର ସବୁ ପାପକୁ ଯେମିତି ଝାଡ଼ି ସଜାଡ଼ି ଦେଉଛି ।

ଅତି ସନ୍ତର୍ପଣରେ ତଳେ ପଡ଼ି ଯାଇଥିବା ଶାଢ଼ୀଗୁଡ଼ାକୁ କୁଣ୍ଡେଇ ସଜାଡ଼ିବାକୁ ବିପ୍ରଚରଣ ହାତ ବଢ଼ାଇଲେ । ଏତିକିବେଳେ ସେ ସନ୍ଧ୍ୟାର

ଘର ସଜାଡ଼ି ପାରୁଛନ୍ତି ଏବଂ ଏ ସୁଯୋଗଟାକୁ ସେ ବହୁଦିନରୁ ଖୋଜି ରହିଛନ୍ତି, ଏକଥା ତାଙ୍କର ହାବଭାବରୁ ଜଣାପାଉଥିଲା ।

ଝନୁ ଏ କ'ଣ ? ଏ କ'ଣ ଝିଅ, ତୋର ସବୁ ଲୁଗାରେ ଯେ ବଡ଼ ବଡ଼ ଛିଦ୍ର । ତୁ ଏଇ ଚିରା ଲୁଗା ପିନ୍ଧି ତୋର ଦେହ ଢାଙ୍କୁଛୁ ? ଝନୁ କେବେ ତ କହେନି, ମତେ କହନ୍ତୁ —ବାପା, ମୋର ଶାଢ଼ୀଟିଏ ଦରକାର ।

ହରପ୍ରଚରଣ ଝନୁର ଶାଢ଼ୀକୁ ହାତରେ ଜାକ ଧରିଲେ । ଶାଢ଼ୀକୁ ହାତରେ ଜାକ ଧରି କହିଲେ—ତୋ ଭଳି ଝିଅର ମୁଁ ବାପା ଯେ କାହିଁକି ହେଲି, ମୁଁ ଆଜି ବୁଝିପାରୁନି ମା ! ଏତେଦିନଯାଏ ଏ ଚିରା ଲୁଗା ଦେଖିବା ପାଇଁ କ'ଣ ମୋ ଆଖି ଫୁଟିଯାଇଥିଲା ?

ହରପ୍ରଚରଣ ଝନୁର ଶାଢ଼ୀ, ବିଛଣା ସଜାଡ଼ି ସାରି ଓଳେଇବାରେ ଲାଗିଲେ ।

ଝନୁ ଜନ୍ମ ବାଡ଼ପାଖରୁ ଆସୁନି । ନ ଆସୁ । ମୁ ଆଗେ ଓଳେଇ ଦିଏ । ଆସିଲେ ତ ମୋ ହାତରୁ ଝାଡ଼ୁ ଛଡ଼ାଇ ନବ । ଆସି ଯେତେବେଳେ ଦେଖିବ, ଦେଖିବ ଯେ ତା ଘରକୁ କିଏ ସମ୍ପୂର୍ଣ୍ଣ ପରିଷ୍କାର କରି ଝାଡ଼ୁଝୁଣ୍ଡି ସଫା କରି ଦେଇଛି, ସେତେବେଳେ ସେ ଭାବିବ କଅଣ ?

ହରପ୍ରଚରଣଙ୍କର ଓଠରେ ହସ ଖେଳି ଉଠିଲା । ଭାରି ମଜା ହବ । ଝନୁଟା ଆଶ୍ଚର୍ଯ୍ୟ ହୋଇଯିବ ।

ଘର ପରିଷ୍କାର କରି ସେ ତୃପ୍ତିରେ ଘରକୁ ଚାହିଁଲେ । ଘରୁ ବାହାରି ଦେଖିଲେ କଲ୍ୟାଣୀ ଖଟରୁ ଉଠି ବାରଣ୍ଡା ଚଉକିଟା ଉପରେ ବସିଛନ୍ତି । ସକାଳ ପୂରା ହୋଇଗଲାଣି ।

ହରପ୍ରଚରଣ କଲ୍ୟାଣୀଙ୍କ ସାଥିରେ କିଛି କଥାବାର୍ତ୍ତା ନକରି ଝନୁକୁ ମନେ ମନେ ଖୋଜି ବାଡ଼ି ପାଖକୁ ଗଲେ ।

ଏଇ ବାଡ଼ିରେ ଝନୁ ସୁନାହାତର ପରଶ ଯେପରି ପ୍ରତି ଗଛରେ । ପ୍ରତି ଗଛ ଯେପରି ତାର ଯତ୍ନରେ, ତା'ର ଚେଷ୍ଟାରେ ବଢ଼ି ଉଠିଛନ୍ତି । ଧାଡ଼ି ଧାଡ଼ି ଫୁଲଗଛ । ଧାଡ଼ି ଧାଡ଼ି ପନପରିବା ଫଳଗଛ ।

ଗ୍ରେଟ ଗ୍ରେଟ ମଲ୍ଲୀଫୁଲ ଗଛରେ ଆଟ ଲାଗିଛି । ଟଗର ଢଗଟର ଅଜସ୍ର ଫୁଲ ସଖ । ଗୋଲାପ କୁଞ୍ଜ ମଣ୍ଡନ କରୁଛି । ଅଛି ଅମୃତଭଣ୍ଡା ଗଛ, ଅଛି ସଜନା ଗଛ, ଅଛି ବାଇଗଣ ଗଛ ।

ସବୁତ ଅଛି, ହେଲେ— ?

ଆରେ ! ଏ କଅଣ ? ଏ କଅଣ ?

କଲ୍ୟାଣୀ ! ଗନ୍ନୁ ! ନମିତା ! ଆରେ ଦୌଡ଼ି ଆସରେ ।

କଲ୍ୟାଣୀ ବାଉ ପାଖକୁ ଦୌଡ଼ି ଆସିଲେ ।

ପିଜୁଳି ଗଛଟାର ଏ କଅଣ ହେଲା କଲ୍ୟାଣୀ ? କାଲିର ତୋଫାନରେ ଏତେ ବଡ଼ ପିଜୁଳି ଗଛଟା ଭାଙ୍ଗିଗଲା ? ବିପ୍ରଚରଣ ବିକଳ ଭାବରେ ଚିତ୍କାର କରି ଉଠିଲେ ।

କଲ୍ୟାଣୀ ଦେଖିଲେ ଏତେ ବଡ଼ ପିଜୁଳି ଗଛଟା, ବାରମାସୀ ଫଳନ୍ତା ପିଜୁଳି ଗଛଟା, ଯେ କି ସଦାବେଳେ ଅକାତରେ ଅଯାଚିତ ଭାବେ କୁଡ଼ କୁଡ଼ ଫଳ ବର୍ଷ ବର୍ଷ ଧରି ବିତରଣ କରୁଥିଲା । ଝିଙ୍କା ହୋଇ, ଲକ୍ଷେ ନାଲି ଟହ ଟହ ଫଳ, କୋଟିଏ କଳା ସବୁଜ ପତ୍ର ନେଇ ଗର୍ବ ଭାବରେ ବଢ଼ି ଉଠିଥିଲା, ସେ ଆଜ ଓଲଟି ପଡ଼ିଛି । କାଲିର ପ୍ରଚଣ୍ଡ ତୋଫାନରେ ତା'ର ଚେର ମାଟିରୁ ଉପୁଡ଼ି ଯାଇ ସେ ମୁହଁମାଡ଼ି ପଡ଼ିଛି ।

ବିପ୍ରଚରଣ ତଳେ ପଡ଼ିଯାଇଥିବା ପିଜୁଳି ଗଛର ମୂଳ ପାଖେ ବୁଲି ଚିତ୍କାର କରୁଥିଲେ—କାହାର କିଛି ହୋଇନି, ଏତେ ତୋଫାନ ଆସିଲା ଅନାବନା ଗଛ ସବୁ ସେହିପରି ଅକ୍ଷତ ଅବସ୍ଥାରେ ରହିଲେ । ସଜନା, ଅମୃତଭଣ୍ଡା ଗଛରୁ ଡାଳଟିଏ ବି ଯୁଦ୍ଧା ଭାଙ୍ଗିଗଲାନି । ହେଲେ ପିଜୁଳି ଗଛଟା କି ଦୋଷ କରିଥିଲା ଯେ, ମୂଳରୁ ଉପୁଡ଼ି ଗଲା ? କଲ୍ୟାଣୀ, ନମି, ଅମା ! ଆରେ ତୁମେ ସବୁ ହାଁ'ମାରି ଠିଆହୋଇ ଦେଖୁଛ କ'ଣରେ ? ଯାଅ, କୋଦାଳ ଆଣ—କାଙ୍କ ଆଣ, ପିଜୁଳି ଗଛଟାକୁ ଟେକି ପୋତିଦବା—ମାଟିରେ ପୋତି ଦବା ।

ସେ ସେହିପରି ପିଜୁଳି ଗଛଟାର ମୂଳପାଖେ ଚକର ମାରି ବୁଲୁଥିଲେ, ଆଉ ପାଟି କରି ଡାକୁଥିଲେ—ଆଣରେ···ଆଣରେ··· ।

ଏଇ ପିଜୁଳି ଗଛଟାକୁ ଏଇଠି ସେ ପୋତିଥିଲେ, ଯେଉଁଦିନ ଏ ଘରକୁ ସେ ଗୋଟିଏ କାଖରେ ଗନ୍ଧୁକୁ ଧରି ଆସିଥିଲେ··· ।

ଗନ୍ଧୁ···?

ବିପ୍ରଚରଣ ସମସ୍ତଙ୍କୁ ପଚାରିଲେ—ଗନ୍ଧୁ ? ଗନ୍ଧୁ କୁଆଡ଼େ ଗଲା ?

ଆରେ, ମୋ ମୁହଁକୁ ଚାହିଁ ଚୁପ୍ ହୋଇ ଠିଆ ହୋଇଛ କାହିଁକି ? ମୁଁ ପଚାରୁଛି ଗନ୍ଧୁ କୁଆଡ଼େ ଗଲା ?

ସମସ୍ତେ ସେଇପରି ଠିଆ ହୋଇଥିଲେ ।

ବିପ୍ରଚରଣ ତାଙ୍କର ସମସ୍ତ ଶକ୍ତି ଖଟାଇ ଉଚ୍ଚ ସ୍ୱରରେ—ଖୁବ୍ ଉଚ୍ଚ ସ୍ୱରରେ—ଖୁବ୍ ଉଚ୍ଚ ସ୍ୱରରେ ଚିତ୍କାର କରି ଡାକି ଉଠିଲେ— ଗନ୍ଧୁ··· ! ମା ଲୋ··· !

ଗନ୍ଧୁ କିନ୍ତୁ ଆସିଲା ନାହିଁ । ଗନ୍ଧୁ ତାଙ୍କର ଡାକର ଉତ୍ତର ଦେଲାନି । ସେ ଡାକ ଘର ଟପି, ପାଚେରୀ ଟପି ସେପରି ଦିଗ ବିଦିଗକୁ ଚହଟିଗଲା ।

ବିପ୍ରଚରଣ ଅନୁନୟ କରି କହି ଉଠିଲେ—ଆରେ ଭଲ ଲୋକ ତମେମାନେ, ମୋ ଗନ୍ଧୁ କାହିଁ ? ମୋ ଝିଅ କାହିଁ ?

ଆମେ ତଡ଼ି ଦେଇଛୁ ।

କଲ୍ୟାଣୀ··· !

ହଁ···ଆମେ ତା'କୁ ଘରୁ ବାହାର କରି ଦେଇଛୁ ।

କଲ୍ୟାଣୀ··· ! ଏ ତୁମେ କ'ଣ କଲ କଲ୍ୟାଣୀ—ଏ ତୁମେ କ'ଣ କଲ ? ମୋ ନଥିବା ଅବସ୍ଥାରେ ମୋ ଝିଅଟାକୁ ସାତପର କରି ଘରୁ ବାହାର କରିଦେଲ ! ତୁମର ମା' ମନ ଏକଥା କରିବାକୁ କିପରି ସତ ବଳାଇଲା କଲ୍ୟାଣୀ । କୁହ, ଜବାବ ଦିଅ । ବିପ୍ରଚରଣ କଲ୍ୟାଣୀଙ୍କର କାନ୍ଧକୁ ଧରି ଝିଙ୍କାଇବାରେ ଲାଗିଲେ ।

ସମସ୍ତେ ସେହିପରି ନୀରବ ଭାବେ ଠିଆ ହୋଇଥା'ନ୍ତି ଏବଂ ପରସ୍ପରକୁ ଚାହିଁ ରହିଥାନ୍ତି । ବିପ୍ରଚରଣ ଉଦ୍‌ଭ୍ରାନ୍ତ ପରି ଚିତ୍କାର କରି ଉଠିଲେ—ଆରେ, ଖୁଣ୍ଟ ପରି ତମେମାନେ କାହିଁକି ଠିଆ ହୋଇଛ ? ଯାଅ···ତାକୁ ଖୋଜିଆଣ । ଖୋଜିଆଣି ତାକୁ ମୋ କୋଳକୁ ଦେଇଦିଅ । ସେଇ ତ ମୋର ସବୁ । ତାକୁ ପାଇ ମୁଁ ବାପା ବୋଲି କହି ଶୁଣିବି ଫୁଲାଇବି ।

ଉଃ···ଏଇ ବୁଢ଼ା ବିପ୍ରଚରଣଙ୍କର ଆଖିରେ କେତେ ଯେ କାକୁତି, କେତେ ଯେ ବିକଳ, କେତେ ଯେ ଅନୁନୟ ! କେବଳ ବେଦନା, ଅବିଶ୍ୱାସ ଘୃଣା ! ସେ ତାଙ୍କର ପାଉଁଶିଆ ବାଳଗୁଡ଼ାକୁ ମେଞ୍ଚା ମେଞ୍ଚା କରି କୁଣ୍ଢୁକୁଣ୍ଢ କରୁଥିଲେ । ହାତକୁ ମୁଠା ମୁଠା କରି ପକାଉଥିଲେ । ଆଉ ତାଙ୍କର ସେଇ ଧୂଆଁଳିଆ ଆଖିରେ ଖୋଜୁଥିଲେ ଗୋଟାଏ ସଜ ସତେଜ ମୁହଁକୁ ଥରେ ଦେଖିବାକୁ ।

ସେଇ ମୁହଁଟି ଏ ଘରେ ଫୁଟି ଉଠିଥିଲା ନିହାତି ଆକସ୍ମିକ ଭାବରେ ଏବଂ ସେଇ ମୁହଁଟି ତ କୁଆଡ଼େ ଲୁଚିଗଲା ନିହାତି ଅପ୍ରତ୍ୟାଶିତ ଭାବେ ।

କେବଳ ସେଇ ମୁହଁଟିର ଛବି ବିପ୍ରଚରଣଙ୍କର ଆଖିର ତାରାରେ ସେପରି ଲାଗିରହିଛି ।

ରାନୁ···!

ବିପ୍ରଚରଣ ତଳେ ଭାଙ୍ଗିପଡ଼ିଥିବା ପିଜୁଳି ଗଛଟାକୁ ଚାହିଁଲେ । ଆଖି ତାଙ୍କର ଛଳ ଛଳ । ଏ ପିଜୁଳି ଗଛଟା ତାଙ୍କୁ ବହୁତ ଫଳ ଦେଇଥିଲା, ଆଉ ଆଜି ତା' ଉପରେ ବିପ୍ରଚରଣ ଢାଳି ଦେଲେ ଦୁଇ ବିନ୍ଦୁ ଲୁହ ।

ବିପ୍ରଚରଣଙ୍କର ମନେହେଲା—ଆଜି ଯେଉଁ ପିଜୁଳି ଗଛଟା ଭୂଇଁରେ ଅସାଡ଼ ହୋଇ ଭାଙ୍ଗିପଡ଼ିଛି, ସେ ଭାଙ୍ଗିପଡ଼ ପାରେନା । ସେ ଭାଙ୍ଗିବ ବା କେମିତି ? ସେ ତ ତାଙ୍କ ରାନୁର ଗଛ । ସେ ଗଛ ଯେପରି ତାଙ୍କ ହୃଦୟର ଅତଳତମ— ନିଭୃତତମ ପ୍ରଦେଶରେ ଚେର ମାଡ଼ି, ଶାଖା ପ୍ରଶାଖା ମେଲି, ପିଜୁଳି ନୁହେଁ କୋଟି ଇନ୍ଦ୍ରନୀଳ, ମରକତ, ବୈଦୁର୍ଯ୍ୟର ଫଳରେ ହସି ଉଜ୍ଜଳ ଉଠୁଛି ।

ରାନୁ···!

ବାପା···!

ତୁ କୋଉଠି ଅଛୁ ଲୋ ଝିଅ ?

ମୁଁ ଏଇଠି ବାପା—ଏଇଠି ।

ଇସ୍···ସେ ତ ଛ ଯେପରି ପିଜୁଳି ଗଛ ନୁହେଁ—ସେ ହଉଛି ତାଙ୍କର ସେଇ ସ୍ନେହମୟୀ ମା'ରାନୁ, ଯେ ଆସିଥିଲା ଏଇ ଘରକୁ ନିହାତି

ନାଟକୀୟ ଭାବେ ଏବଂ ସ୍ୱଳଗଳ୍ପ ନିହାତି ନାଟକୀୟ ଭାବେ, କିନ୍ତୁ ତା'ର ଗଳ୍ପ ଆସିଲା ବାଟରେ ରଖି ଦେଇଗଲା ଗୁଡ଼ାଏ ସ୍ମୃତିର ଅଶ୍ରୁଳ ପଦଚିହ୍ନ । ସେ ହାତ ମେଲାଇ—ଫୁରୁ ଫୁରୁ କେଶ ମୁକୁଳା କରି କାନ୍ଦି କାନ୍ଦି କହୁଛି—ବାପା ମୁଁ ଏଇଠି ଅଛି, ବାପା ମୁ ଏଇଠି ଅଛି । ମୁଁ ତୁମର ସାନୁ ଏଇଠି ଅଛି ।

ବିପ୍ରଚରଣ ତାଙ୍କର ମନଶ୍ଚକ୍ଷୁରେ ଦେଖିପାରିଲେ—ଯେଉଁ ପିଜୁଳି ଗଛ ତାଙ୍କ ଅନ୍ତର ଭିତରେ ଫୁଲ ଫଳରେ ଝଲସି ଉଠୁଛି—ସେ ଗଛ ହଠାତ୍ ସାନୁଟିରେ ପରିବର୍ତ୍ତିତ ହୋଇଯାଇଛି । ସେ ଗଛ ନୁହେଁ —ସାନୁ । କେବଳ ସାନୁ । କେବଳ ସାନୁ ଶାପଗ୍ରସ୍ତା ଅହଲ୍ୟା ପରି ସେ ଝର ଝର କାନ୍ଦୁଛି—ଆଉ କାନ୍ଦୁଛି ।

ବିପ୍ରଚରଣ ନିଜର ସ୍ମୃତିକୁ ଅସମ୍ଭବ ଭାବେ କୁଣ୍ଢାଇ ଧରିଲେ । ସେ ଯେପରି ସାନୁକୁ ଧରିଛନ୍ତି ।

ତୋଫାନରେ ଉପୁଡ଼ିପଡ଼ିଥିବା, ଭାଙ୍ଗିରୁଜି ଛିନ୍ନଛତର ହୋଇ ଯାଇଥିବା ପିଜୁଳି ଗଛର ମୂଳରେ ଲାଗିଥିବା ମାଟିକୁ ଦି' ହାତରେ ଆଞ୍ଜୁଳା ଆଞ୍ଜୁଳା କରି ବିପ୍ରଚରଣ ଭରି ଲୁହରେ କହି ଉଠିଲେ—ତତେ ସେମାନେ ଯୁଆଡ଼େ ତଡ଼ି ଦିଅନ୍ତୁ ପଛେ ମା', ତୁ କିନ୍ତୁ ମା' ମୋ ଅନ୍ତରରେ । ମୁଁ ତ ତତେ ତଡ଼ି ଦେଇ ପାରିବିନି ମା' । ଏ ସ୍ମୃତି ଭିତରୁ ତତେ ମୁଁ କେମିତି ବାହାର କରିବି ? ତୁ ଯେ ମା' ଅମୀୟା ଶାଶ୍ୱତୀ —ଆକାଶର ଭାସ୍ୱର ତର ଅରୁନ୍ଧତୀ !

ବିପ୍ରଚରଣଙ୍କର ମନେହେଲା—ଏଡ଼େ ବଡ଼ ଏଇ ଆଖି ପାଉ ନ ଥିବା ଦୁନିଆରେ କେହି ନାହାନ୍ତି —

କେବଳ ସାନୁ ଆଉ ସେ ।

ସାନୁ ଆଉ ସେ । ସେ ଆଉ ସାନୁ ।

ବାପ—ଝିଅ । ବାପ—ଝିଅ ।

ସେମାନେ ପରସ୍ପରକୁ କୁଣ୍ଢାଇ ଧରି କେବଳ କାନ୍ଦୁଛନ୍ତି ଆଉ କାନ୍ଦୁଛନ୍ତି—ଭୋ' ଭୋ' କାନ୍ଦୁଛନ୍ତି ।

